# ବୈଷ୍ଣବ ଲୀଳାମୃତ

ସ୍ୱର୍ଗତ କବି ମାଧବ ପଟ୍ଟନାୟକ

# ବୈଷ୍ଣବ ଲୀଳାମୃତ

କବି ମାଧବ ପଟ୍ଟନାୟକ ବିରଚିତ

( ପ୍ରାଚୀନ ତାଳପତ୍ର ପୋଥିରୁ ସମ୍ପାଦିତ )

ସଂଗ୍ରହ ଓ ସମ୍ପାଦନା :

~~ଡକ୍ଟର [redacted] ରଥ~~

ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

ପ୍ରଫେସର, ସମ୍ବଲପୁର ବିଶ୍ୱବିଦ୍ୟାଳୟ

ପ୍ରଦୀପ ପବ୍ଲିକେଶନ

ଆନନ୍ଦ; ବୁକ୍‌ଷ୍ଟଲ୍

ସମ୍ବଲପୁର

# ବୈଷ୍ଣବ ଲୀଳାମୃତ

କବି **ମାଧବ ପଟ୍ଟନାୟକ** ବିରଚିତ

ପ୍ରାଚୀନ ତାଳପତ୍ର ପୋଥିରୁ ସଂଗୃହୀତ ଓ ପ୍ରକାଶିତ

ସଂଗ୍ରହ ଓ ସମ୍ପାଦନା —
~~ଡକ୍ଟର ଘନଶ୍ୟାମ ରଥ~~
ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

ପ୍ରକାଶକ —
**ପ୍ରଦୀପ ପବ୍ଲିକେଶନ**
ଆନନ୍ଦ, ବ୍ରୁକସହିଲ
ସମ୍ବଲପୁର

ମୁଦ୍ରଣ —
ପୂର୍ଣ୍ଣିମା ପ୍ରିଣ୍ଟର୍ସ, ସମ୍ବଲପୁର
ମୂଲ୍ୟ — ଟ ୨୦-୦୦ (କୋଡ଼ିଏ ଟଙ୍କା ମାତ୍ର)

**Vaishnava Leelamrta**

**Madhab Pattnayak**
Collected and edited from
the old palm-leaf manuscripts

Edited and Compiled by —
~~Dr. Ghanashyam Rath~~
**Dr. B. C. Acharya**

Publishers —
**Pradeep Publications**
Anand, Brooks Hill
Sambalpur

Printed at —
**Purnima Printers**
Sambalpur

Price — **Rs. 20-00**

# 'ବୈଷ୍ଣବ ଲୀଳାମୃତ' ପୋଥି ବିବରଣୀ

ଓଡ଼ିଆ ଓ ସଂସ୍କୃତ ଭାଷାରେ ରଚିତ ବହୁ ପ୍ରାଚୀନ କବିଙ୍କ ଅନେକ ଲେଖା ଅଦ୍ୟାପି ତାଳପତ୍ର ପୋଥି ରୂପରେ ରହିଛି, ପ୍ରକାଶର ସୁଯୋଗ ପାଇନାହିଁ। ପୋଥି ଯାହାଙ୍କ ପାଖରେ ଅଛି, ହସ୍ତାନ୍ତର କରିବାକୁ ସେମାନେ ଆଦୌ ରାଜି ନୁହନ୍ତି — ନାନା କୁସଂସ୍କାର, ଅନ୍ଧବିଶ୍ୱାସ ଏହାର କାରଣ। ଛପା ବହିର ପ୍ରଚଳନ ଯୁଗରେ ପୋଥିର ଯତ୍ନ ନେବା ସମ୍ଭବ ହେଉନାହିଁ — ଲୋକେ ଅନେକ ସମୟରେ ପୋଥି ଗୁଡ଼ାକୁ ଅଦରକାରୀ ମନେକରି ନଈବଢ଼ିରେ ଭସାଇ ଦେଉଛନ୍ତି; ଘରପୋଡ଼ି ଭଳି ପ୍ରାକୃତିକ ବିପଦରେ ଅନେକ ପୋଥି କାଳକ୍ରମେ ଧ୍ୱଂସ ହୋଇଯାଉଛି। ପୋଥିସବୁ ଜୀର୍ଣ୍ଣ ଅବସ୍ଥାକୁ ଆସିଗଲେ ତାକୁ ପାଣିରେ ଭସାଇଦେବା ବା ଗାତଖୋଳି ପୋତିଦେବା ବିଧି। ଏହାକୁ "ଗ୍ରନ୍ଥ ସମାଧି" କୁହାଯାଉଥିଲା। ମାତ୍ର ତା ପୂର୍ବରୁ ସେ ସବୁ ଲେଖନକାରଙ୍କ ସାହାଯ୍ୟରେ ନକଲ କରାଇ ରଖାଯାଉଥିଲା। ମାତ୍ର ମୁଦ୍ରାଯନ୍ତ୍ରର ପ୍ରଚଳନ ପରେ ପୋଥି ନକଲର ପରମ୍ପରା ଭାଙ୍ଗିଗଲା ଓ ଲେଖନକାର-ଗୋଷ୍ଠୀ ହଜିଗଲେ। ପୁଣି ଘରର କେହି ବୟୋବୃଦ୍ଧ ଲୋକ ମଲେ, ତା' ଚିତାଗ୍ନିରେ ଅନେକ ସମୟରେ ଘରର ତାଳପତ୍ର ପୋଥିସବୁ ପକାଇ ଦିଆଯାଉଥିଲା — କେତେକ କ୍ଷେତ୍ରରେ ଏହାକୁ ବୃନ୍ଦାବନର ଟିକଟ ମନେକରାଯାଉଥିଲା, ଏବେ ମଧ୍ୟ କେଉଁଠି କେଉଁଠି ଏହା ଅଛି। ଅସଂଖ୍ୟ ପୋଥି ଯତ୍ନ ଅଭାବରୁ କୀଟଦଂଷ୍ଟ ଅବସ୍ଥାକୁ ଆସିଗଲଣି। ଅନେକ ଘରେ ଶାଳଗ୍ରାମ ଓ ଠାକୁରଙ୍କ ସହିତ ପୋଥି ବି ପ୍ରତ୍ୟହ ପୂଜିତ; ପ୍ରତିଦିନ ପାଣି, ଫୁଲ ପୋଥିଗାଡ଼ି ଉପରେ ଛିଞ୍ଚିବାରୁ ସେ ସବୁ ଆଉ ଫିଟାଇ ଖୋଲି ଦେଖିବା ଅବସ୍ଥାରେ ନାହିଁ, ଧରୁ ଧରୁ ପତ୍ରସବୁ ଝରିପଡ଼ୁଛି। କେଉଁଠି ବା ପୋଥିଗାଡ଼ି ଉଇ-ହୁଙ୍କାରେ ପରିଣତ ହେଲାଣି। ପୋଥି ସାଇତି ରଖିବାରେ ଅଯତ୍ନ ଅଥଚ ପୋଥି ହସ୍ତାନ୍ତର କରିବାରେ ଅନିଚ୍ଛା — ଆମର ପ୍ରାଚୀନ ପୋଥି ସମ୍ପଦକୁ ନଷ୍ଟ କଲାଣି। ଏସବୁ ଯେ ଆମ ଜାତିର ଅକ୍ଷୟ ସମ୍ପଦ ଏବଂ ଜାତିର ଲୁପ୍ତ ଅତୀତକୁ ଓ ବିଶାଳ ଐତିହ୍ୟକୁ ଉଖାରି ଦେଖିବାର ଅନ୍ୟତମ ପ୍ରଧାନ ମାର୍ଗ — ଏହା କେହି ବିଚାରକୁ ନେଉନାହାନ୍ତି। ଏହିପରି ଭାବରେ ଆମର ପ୍ରାଚୀନ ସାହିତ୍ୟରୁ ଅନେକ ଅଂଶ କାଳକ୍ରମେ ଲୁଚିଯାଉଛି। ଏହା ଅତ୍ୟନ୍ତ କ୍ଷୋଭର ବିଷୟ ବୋଲି କହିବାକୁ ହେବ।

'ବୈଷ୍ଣବ ଲୀଳାମୃତ' ପୋଥି ଦୁର୍ଲ୍ଲଭ ଓ ମୂଲ୍ୟବାନ ପୋଥିମାନଙ୍କ ମଧ୍ୟରୁ ଅନ୍ୟତମ। ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ନୀଳାଚଳଧାମରେ ସମବେତ

ବୈଷ୍ଣବମାନଙ୍କର କାର୍ଯ୍ୟକଳାପ ଉପରେ ଏହା ଉଜ୍ଜ୍ୱଳ ଆଲୋକପାତ କରେ । ଏହି ପୋଥିର ତିନୋଟି ନକଲ ମିଳିଛି । ଗ୍ରୀଷ୍ମ ଓ ପୂଜା ଅବକାଶ ବ୍ୟତୀତ ବର୍ଷର ଅନ୍ୟ ସମୟରେ ଗାଁ ଗହଳରେ ବୁଲି ଲୋକଙ୍କ ସହିତ ମିଳାମିଶା କରିବା ସମ୍ଭବ ନୁହେଁ । ଖ୍ରୀ: ୧୯୭୪ର ଗ୍ରୀଷ୍ମାବକାଶରେ ମୋର ଗବେଷଣା କାମ ପାଇଁ ବିଭିନ୍ନ ସ୍ଥାନକୁ ଯିବାବେଳେ ପୁରୀଜିଲ୍ଲାନ୍ତର୍ଗତ ଖଣ୍ଡପଡ଼ାଗଡ଼ରୁ ପୋଥିଟିଏ ମିଳିଲା । ଶରଣକୁଳ ନିବାସୀ ବୟୋବୃଦ୍ଧ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକଙ୍କ ସହାୟତାରୁ ଏହା ସମ୍ଭବ ହେଲା । ଖଣ୍ଡପଡ଼ାରୁ ପ୍ରାପ୍ତ ଏହି ପୋଥିଟି ହିଁ 'ବୈଷ୍ଣବ ଲୀଳାମୃତ'ର ପ୍ରଥମ ପୋଥି । ସମ୍ପାଦନାରେ ଏହାକୁ 'କ' ପୋଥି ଆଖ୍ୟା ଦିଆଗଲା । ଏଥିରେ ୫୧ଟି ପତ୍ର; ପ୍ରତ୍ୟେକ ପତ୍ରର ଉଭୟପଟ ପାଞ୍ଚଧାଡ଼ି ଲେଖାଏ ଲେଖା । ପୋଥିର ଅଧିକାଂଶ ସ୍ଥାନ କୀଟଦଂଷ୍ଟ; ତେଣୁ ଅସ୍ପଷ୍ଟ । ଏଥିରେ ସମ୍ପୂର୍ଣ୍ଣ ନଅଟିଯାକ ଅଧ୍ୟାୟ ଅଛି । ଲେଖକଙ୍କ ନାମ ଏଥିରେ ନାହିଁ ।

ଏହାର ପ୍ରତିଲିପି ଅଛି କି ନାହିଁ ତାହା ଆଖପାଖ ଅଞ୍ଚଳ ଯଥା - ନୟାଗଡ଼, ଘୁମୁସର, ବାଣପୁର, ରଣପୁର, ଦଶପଲ୍ଲା ଅଞ୍ଚଳରେ ବହୁ ଅନୁସନ୍ଧାନ କରାଗଲା । ପ୍ରାୟ ଦୁଇବର୍ଷ ପରେ ଦ୍ୱିତୀୟ ନକଲଟି ମିଳିଲା ଘୁମୁସର ସବଡିଭିଜନ ଅନ୍ତର୍ଗତ ବେଲଗୁଣ୍ଠା ଶ୍ରୀ ରାଧାକାନ୍ତ ମଠରୁ ଷଡ଼ଙ୍ଗୀପଲ୍ଲୀ ନିବାସୀ ଅବସରପ୍ରାପ୍ତ ସ୍କୁଲ ସବ-ଇନସ୍ପେକ୍ଟର ଶ୍ରୀ ମଧୁସୂଦନ ମିଶ୍ରଙ୍କ ସହାୟତାରୁ । ଏହାକୁ ଏଥିରେ 'ଖ' ପୋଥି ରୂପେ ଅଭିହିତ କରାଯାଇଛି । ଏହାର ପତ୍ର ସଂଖ୍ୟା ୮୬ । ପ୍ରତ୍ୟେକ ପତ୍ର ଉଭୟପଟ ଲେଖା, କେଉଁଠି ୭ ଧାଡ଼ି ଲେଖାଏ, ଅନ୍ୟ କେତେକ ପତ୍ରରେ ୬ ଧାଡ଼ି । ଏଥିରେ ମଧ୍ୟ ଲେଖନକାରଙ୍କ ନାମ ବା ଲେଖନକାଳ ସମ୍ପର୍କୀୟ କୌଣସି ଉଲ୍ଲେଖ ନାହିଁ ।

ଯେ କୌଣସି ପ୍ରାଚୀନ ପୋଥିର ସମ୍ପାଦନା ଓ ଆଲୋଚନା ବେଳେ ପୋଥିର କେବଳ ଗୋଟିଏ ମାତ୍ର ନକଲ ଉପରେ ଆଦୌ ନିର୍ଭର କରାଯାଇ ନ ପାରେ । ଆଲୋଚ୍ୟ ପୋଥିର ଦ୍ୱିତୀୟ ନକଲଟି ମିଳିଲା ପରେ ଏହା ଉପରେ ଆଲୋଚନା କରିବା ପ୍ରାମାଣିକ ଓ ନିରାପଦ ମନେହୋଇଛି । ପୋଥିର ତୃତୀୟ ନକଲ ୧୯୭୯-୮୦ର ଗ୍ରୀଷ୍ମାବକାଶରେ ମିଳିଲା ନୟାଗଡ଼ ନିକଟବର୍ତ୍ତୀ ମାଳପଡ଼ା ମୃତ୍ୟୁଞ୍ଜୟପୁର ଶାସନ ନିବାସୀ ଶ୍ରୀ ଖଗେଶ୍ୱର ମିଶ୍ରଙ୍କଠାରୁ । ଏହା 'ଗ' ପୋଥି ରୂପେ ନାମିତ । ଏହାର ପତ୍ର ସଂଖ୍ୟା ୭୭ । ପ୍ରତ୍ୟେକ ପତ୍ର ଉଭୟପଟେ ୪ ଧାଡ଼ି ଲେଖାଏ ଲେଖା । ଏହି 'ଗ' ପୋଥିର ନକଲକାର କୃଷ୍ଣ ଦାସ ("କୌଶିକ ଗୋତ୍ରୋଦ୍ଭବ କୃଷ୍ଣ ଦାସ ଦ୍ୱିଜବରେଣ ଲିଖିତମିଦଂ ପୁସ୍ତକଂ") । ଲେଖନର ସମୟ ସୂଚିତ ହୋଇନାହିଁ । 'ଭୀମସ୍ୟାପି ରଣେଭଙ୍ଗୋ' ଇତ୍ୟାଦି ସହିତ 'କ' ଓ 'ଖ' ପୋଥି ଏଥିରେ ମଧ୍ୟ ଅଛି—"ଏଥେ ବାରତା ଅଛଇ ବିଶେଷ । ଲେଖନକାରର ନ ଧରିବ ଦୋଷ ।" ବାରତାର ଅର୍ଥ ମନ୍ଦ ଖବର ।

ବହୁ ଅଞ୍ଚଳରେ ମୃତ୍ୟୁ ସମ୍ବାଦ ଅର୍ଥରେ ଏବେ ମଧ୍ୟ 'ବାର୍ତ୍ତା' ଶବ୍ଦ ପ୍ରଯୁକ୍ତ । ଉପେନ୍ଦ୍ର ଭଞ୍ଜ ତାଙ୍କ 'ବୈଦେହୀଶ ବିଳାସ' କାବ୍ୟରେ 'ବାର୍ତ୍ତା' ଶବ୍ଦକୁ ଉକ୍ତ ଅର୍ଥରେ ହିଁ ବ୍ୟବହାର କରିଥିବା ଦେଖାଯାଏ ("ବାର୍ତ୍ତାବହ୍ନି ହୋଇ ନ ଦେଲ୍ କପାଳେ ଶବଦ ହେବାକୁ"--ମାରୀଚ ମୃତ୍ୟୁ ସମ୍ବାଦର ଉକ୍ତି) । ଆଲୋଚ୍ୟ ପୋଥିରେ ବହୁ ବୈଷ୍ଣବ ସନ୍ଥମାନଙ୍କର ମୃତ୍ୟୁ ସମ୍ବାଦ ଉଲ୍ଲିଖିତ ଥିବାରୁ ଲେଖନକାରମାନେ ପୋଥି ସମ୍ପର୍କରେ ଉକ୍ତ ମନ୍ତବ୍ୟ ଦେଇଥିବା ମନେହୁଏ ଏବଂ 'କ' ଓ 'ଖ' ପୋଥିର ନକଲକାର ନିଜ ନାମ ପ୍ରକାଶ କରିବାକୁ କୁଣ୍ଠାବୋଧ କରିଥିବା ଅନୁମିତ ହୁଏ । 'ଗ' ପୋଥିର ନକଲକାର କୌଶିକ ଗୋତ୍ରୀୟ କଣ୍ଠ ଦାସ ନିଜ ନାମ ପ୍ରକାଶ କରିଥିଲେ ମଧ୍ୟ ନିଜ ଜନ୍ମସ୍ଥାନ ଓ ଲେଖାର ସମସ୍ତ ଉଲ୍ଲେଖ କରିବାକୁ ଏହି କାରଣରୁ ବୋଧହୁଏ କୁଣ୍ଠିତ ହୋଇଛନ୍ତି ।

'ବୈଷ୍ଣବ ଲୀଳାମୃତ'ର ଉକ୍ତ ତିନୋଟି ନକଲ ମିଳିବାରୁ ସମ୍ପାଦନା କାର୍ଯ୍ୟରେ ବିଶେଷ ଅସୁବିଧା ରହିନାହିଁ । ଅବଶ୍ୟ ତିନୋଟି ପୋଥି ମଧ୍ୟରେ ଠାଏ ଠାଏ କିଛି କିଛି ପାର୍ଥକ୍ୟ ଅଛି । ସେ ସବୁ ଗ୍ରନ୍ଥ ସମ୍ପାଦନା କାଳରେ ଯଥାଯଥ ଭାବରେ ପ୍ରଦର୍ଶିତ ହୋଇଛି । ମାତ୍ର ତିନୋଟିଯାକ ପୋଥି ମଧ୍ୟରେ କୌଣସି ଗୁରୁତର ପାର୍ଥକ୍ୟ ଲକ୍ଷ୍ୟ କରାଯାଇନାହିଁ । ଅତଏବ ଏହା ପ୍ରାମାଣିକ ଓ ଏକାନ୍ତ ନିର୍ଭରଯୋଗ୍ୟ ବିବେଚିତ ହୋଇଅଛି । ଆମର ପୂଜ୍ୟ ଗୁରୁଦେବ ଅବସରପ୍ରାପ୍ତ ପ୍ରଫେସର ଡ: କାହ୍ନୁଚରଣ ମିଶ୍ର, ଡ: କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ଡ: କୃଷ୍ଣଚନ୍ଦ୍ର ଦାଶ ଉକ୍ତ ପୋଥିର ଆଶୁ ସମ୍ପାଦନା ଲାଗି ଆମକୁ ବାରମ୍ବାର ଉତ୍ସାହିତ କରିଥିବା ହେତୁରୁ ଆମେ ସେମାନଙ୍କ ନିକଟରେ କୃତଜ୍ଞ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗ ମୁଖ୍ୟ ସ୍ୱର୍ଗତ ପ୍ରଫେସର ଡ: ଶରତଚନ୍ଦ୍ର ବେହେରା ଓ କୁଳପତି ୰ ଡ: ନବୀନ କୁମାର ସାହୁ ଉକ୍ତ ପୋଥି ଓ ସେଥିରେ ଉଲ୍ଲିଖିତ ବହୁ ପ୍ରସଙ୍ଗରେ ସେମାନଙ୍କ ସହିତ ଆଳାପ ଆଲୋଚନା କରିବାର ଅବାରିତ ସୁଯୋଗ ଆମକୁ ଦେଇଥିଲେ । ଉକ୍ତ ପୋଥିର ପ୍ରାମାଣିକତା ଓ ବହୁ ଐତିହାସିକ ବିଷୟର ଅବତାରଣା ସମ୍ପର୍କରେ ଏହି ଦୁଇଜଣ ପ୍ରଖ୍ୟାତ ଐତିହାସିକଙ୍କ ପରିଶୁଦ୍ଧ ପର୍ଯ୍ୟାଲୋଚନା ଓ ଏହାର ଆଶୁ ପ୍ରକାଶନ ଲାଗି ନିର୍ଦ୍ଦେଶ ଆମକୁ ଏ ଦିଗରେ କମ୍ ଉତ୍ସାହିତ କରିନାହିଁ । ଈଶ୍ୱର ଏ ଦୁଇ ବରିଷ୍ଠ ଐତିହାସିକଙ୍କୁ ଆମଠାରୁ ଅକାଳରେ ଛଡ଼ାଇ ନେଲେ । ଆଜି ଏ ପୋଥି ସମ୍ପାଦିତ ହୋଇ ପ୍ରକାଶ ପାଉଥିବାର ଜାଣି ସେମାନେ ପରମ ଆନନ୍ଦିତ ହୋଇଥାନ୍ତେ ।

ପୋଥିର ତିନୋଟିଯାକ ନକଲରେ ନଅଟି ଅଧ୍ୟାୟ ସ୍ୱୀକୃତିଃ ରହିଅଛି । ଏଥିରେ ନୀଳାଚଳରେ ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜତ୍ୱ କାଳରେ (ଖ୍ରୀ: ୧୪୯୭-୧୫୩୮) ସମବେତ ବୈଷ୍ଣବମାନଙ୍କର କାର୍ଯ୍ୟକଳାପ ବର୍ଣ୍ଣିତ । ଏହା ପୁରାଣ ରୀତିରେ ନବାକ୍ଷରୀ ଭାଗବତ ବୃତ୍ତରେ ଲେଖା । ଅଳ୍ପ କେତେକ ସ୍ଥାନରେ

ନଅ ଅକ୍ଷର ସ୍ଥଳେ ଦଶ ବା ଆଠ ଅକ୍ଷର ଥିବା ଦେଖାଯାଉଛି । ମାତ୍ର ଏହା ଲେଖନ-କାରଙ୍କ ପ୍ରମାଦ ହୋଇପାରେ । ଏ ସବୁ ସ୍ଥଳରେ ପୋଥିର ପାଠ ଅବିକଳ ପ୍ରଦତ୍ତ ।

ଆମର ଦୃଢ଼ ବିଶ୍ୱାସ ଯେ 'ବୈଷ୍ଣବ ଲୀଳାମୃତ' ପ୍ରକାଶିତ ହେବା ଫଳରେ ଅନେକ ନୂତନ ତଥ୍ୟ ଆଲୋକକୁ ଆସିପାରିବ ଏବଂ ଅନେକ ଭ୍ରାନ୍ତି ଦୂର ହୋଇ-ପାରିବ । ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଓ ପରିଣାମ ସମ୍ପର୍କରେ ବହୁ ବିଶୃତ ତଥ୍ୟ ଆମେ ଏଥିରୁ ପାଉ । ଅତୀତର କୀର୍ତ୍ତିଶାଳୀ ପୁରୁଷମାନଙ୍କର ଓ ସାଧୁସନ୍ଥମାନଙ୍କର ଗୁଣରାଶି ଅନୁଶୀଳନ କରିବାର ଯଥାର୍ଥ ମାର୍ଗ ଏଥିରୁ ଦେଖାଇ ଦିଆଯାଇପାରିବ ବୋଲି ଆମର ବିଶ୍ୱାସ ।

ଡ଼ଃ ଘନଶ୍ୟାମ ରଥ
ଏମ୍ ଏ. ଏଲ୍.ଏଲ୍. ବି., ପିଏଚ୍ ଡ଼ି
ଆଡ଼ଭୋକେଟ
ସମ୍ବଲପୁର

ବିଜୟାଦଶମୀ
ତା ୧୨-୧୦-୮୬

# ମୁଖବନ୍ଧ

## କବି ମାଧବ ପଟ୍ଟନାୟକଙ୍କ ପରିଚୟ :

'ବୈଷ୍ଣବ ଲୀଳାମୃତ'ର ରଚୟିତା ମାଧବ ପଟ୍ଟନାୟକ ତାଙ୍କ ନିଜ ସଂପର୍କରେ ଏଥିରେ କେତେକ ବିଷୟର ଉଲ୍ଲେଖ କରିଛନ୍ତି । ତାଙ୍କ ଜନ୍ମସ୍ଥାନ ଏବର ପୁରୀ-ଜିଲାନ୍ତର୍ଗତ ଖଣ୍ଡପଡ଼ା । ତାଙ୍କ ପିତାଙ୍କ ନାମ ଭଗବାନ ଓ ମାତାଙ୍କ ନାମ ସ୍ବର୍ଣ୍ଣଦେବୀ । କରଣ ବଂଶରେ ତାଙ୍କର ଜନ୍ମ ଏବଂ ବଂଶର ଉପାଧି ପଟ୍ଟନାୟକ । ସେ ଲେଖିଛନ୍ତି—

ମୁଁ ହୀନ ମାଧବ ପାମର ॥ ଶୂଦ୍ର କୁଳରେ ଜନ୍ମ ମୋର ।
ମୋ ପିତା ନାମ ଭଗବାନ ॥ ମାତା ମୋ ସ୍ବର୍ଣ୍ଣଦେବୀ ଜାଣ ।
କରଣବଂଶେ ଜନ୍ମ ହୋଇ ॥ ପଟ୍ଟନାୟକ ସଂଜ୍ଞା ବହି ।
ଖଣ୍ଡପଡ଼ା ମୋ ଜନ୍ମସ୍ଥାନ ॥ ଶ୍ରୀକ୍ଷେତ୍ର ବାସେ ହେଲା ମନ ।

(ପ୍ରଥମ ଅଧ୍ୟାୟ)

ତାଙ୍କୁ ଯେତେବେଳେ ମାତ୍ର ଏକୋଇଶ ବର୍ଷ ବୟସ, ସେତେବେଳେ ସେ ପିତୃମାତୃହୀନ ହୋଇପଡ଼ିଲେ ଏବଂ ନିଜ ସ୍ଥାନରେ ଜୀବନଧାରଣର କୌଣସି ଅବଲମ୍ବନ ପାଇ ନ ଥିଲେ । ତେଣୁ ସେ ଶ୍ରୀକ୍ଷେତ୍ରକୁ ଯିବାପାଇଁ ସ୍ଥିରକରି ଦିନେ ପ୍ରଭାତରୁ ଖଣ୍ଡପଡ଼ା ତ୍ୟାଗକଲେ ଏବଂ ଏକାକୀ ପୁରୀ ଅଭିମୁଖେ ଯାତ୍ରା କଲେ । ପୁରୀ ଯିବା-ବାଟରେ ଯିଏ ଯାହା ଦେଲା ତାହା ସେ ଗ୍ରହଣ କଲେ । କିଛିଦିନ ପରେ ଏହିପରି ବୁଲି ବୁଲି ବେଣ୍ଟପୁର ଗ୍ରାମରେ ଏକ ସାୟଂକାଳରେ ଏହି ପଥଶ୍ରାନ୍ତ ଯୁବକ ଉପସ୍ଥିତ ହେଲେ । ଉଦ୍ଦେଶ୍ୟ—ରାତିକ ସେହି ଗ୍ରାମରେ ରହି ତହିଁ ଆରଦିନ ସକାଳୁ ପୁରୀ ଯାତ୍ରା କରିବା । ସେତେବେଳେ ଏହି ବେଣ୍ଟପୁର ଗ୍ରାମର ବିଶେଷ ପ୍ରତିପତ୍ତି ଥିଲା; କାରଣ ଏହି ଗ୍ରାମ ଥିଲା ଭବାନନ୍ଦ ପଟ୍ଟନାୟକଙ୍କ ଅଧ୍ୟୁଷିତ ସ୍ଥାନ । ଘଟଣାକ୍ରମେ ସେହି ଗ୍ରାମରେ ବିଖ୍ୟାତ ବୈଷ୍ଣବ ସାଧକ କ୍ଷୀରଚୋରା-ଗୋପୀନାଥ-ଭକ୍ତ ମାଧବେନ୍ଦ୍ରପୁରୀ ଓ ତାଙ୍କର ଦୁଇ ଶିଷ୍ୟ ଈଶ୍ୱରପୁରୀ ଓ ରାଘବପୁରୀ ଅଇଲେ । ଏ ତିନିହେଁ ପୁରୀ ଯିବା ମାର୍ଗରେ ଭବାନନ୍ଦ ପଟ୍ଟନାୟକଙ୍କ ନିମନ୍ତ୍ରଣ ରକ୍ଷାକରି ସେହି ଗ୍ରାମରେ ଅତିଥିରୂପେ

ହରିନାମ କୀର୍ତ୍ତନ କରିବାଲାଗି ଉପସ୍ଥିତ । ସେହି ସର୍ପିଲ ଅଧିକାରରେ ବେଣ୍ଟପୁର ଗ୍ରାମରେ ଯୁବକ ମାଧବ ପଟ୍ଟନାୟକ, ଭକ୍ତ ଛଅଜଣ ବୈଷ୍ଣବ ସାଧକଙ୍କର ହରିନାମ କୀର୍ତ୍ତନ ରସ ଆସ୍ୱାଦନ କରି ଆପଣା ଅନ୍ତରରେ ଭକ୍ତି ଭାବର ଦିବ୍ୟାଲୋକ ଲାଭକଲେ । ତହିଁଆରଦିନ ପ୍ରଭାତରେ ମାଧବେନ୍ଦ୍ର ପୁରୀଙ୍କର ଶରଣାପନ୍ନ ହୋଇ ପ୍ରାଣର ଆବେଗରେ ତାଙ୍କ କୀର୍ତ୍ତନ ଦଳରେ ଯୋଗଦେବାର ଅନୁରୋଧ ଜଣାଇଲେ । ମାଧବେନ୍ଦ୍ର ପୁରୀ କିନ୍ତୁ ଏହି ଅଜ୍ଞାତ କୁଳଶୀଳ ଯୁବକଙ୍କୁ ତାଙ୍କର ବୟସ ଦୃଷ୍ଟିରୁ ସହସା ଗ୍ରହଣ ନ କରି ଭବାନନ୍ଦ ରାୟଙ୍କୁ ସାକ୍ଷାତ କରିବା ପାଇଁ ନିର୍ଦ୍ଦେଶ ଦେଲେ । ବୃଦ୍ଧ ଭବାନନ୍ଦ ରାୟଙ୍କୁ ମାଧବ ପଟ୍ଟନାୟକ ସାକ୍ଷାତ କଲେ ସତ; କିନ୍ତୁ ନିର୍ଦ୍ଦେଶ ମିଳିଲା ଜ୍ୟେଷ୍ଠପୁତ୍ର ରାମାନନ୍ଦଙ୍କ ନିକଟକୁ ଯାଇ ଦେଖାକରିବାଲାଗି । ରାମାନନ୍ଦ ଏହି ନବାଗତ ଯୁବକର ପରିଚୟ ନେଲାପରେ ନିଜ ପାଖରେ ରଖିଲେ ଏବଂ କିଛି କିଛି ସାଧାରଣ ଶିକ୍ଷା ପ୍ରଦାନ କଲେ । ମାଧବ ପଟ୍ଟନାୟକଙ୍କ ପରବର୍ତ୍ତୀ ଜୀବନ ରାୟ ରାମାନନ୍ଦଙ୍କ ଆଶ୍ରୟରେ ହିଁ କଟିଥିଲା । ବୋଧହୁଏ ପରବର୍ତ୍ତୀ ସମୟରେ ରାୟ ରାମାନନ୍ଦ ରାଜକାର୍ଯ୍ୟ ସମ୍ପାଦନ କଲାବେଳେ ଭକ୍ତ ମାଧବ ପଟ୍ଟନାୟକ ତାଙ୍କର ବ୍ୟକ୍ତିଗତ ସହକାରୀ ରୂପେ (ଆଜିର ଦୃଷ୍ଟିରେ ପରସନାଲ ଆସିଷ୍ଟାଣ୍ଟ) ତାଙ୍କ ପାଖେ ପାଖେ ରହୁଥିଲେ ।

ଏହି ସମୟ ଥିଲା ବିଖ୍ୟାତ “ଜଗନ୍ନାଥ ବଲ୍ଲଭ ନାଟକ”ର ରଚନାକାଳ । ରାମାନନ୍ଦ ଏହି ନାଟକକୁ ରାଜାଙ୍କ ଅଠଅଙ୍କ ଫାଲ୍ଗୁନ ମାସ (= ଖ୍ରୀ: ୧୫୦୨, ମାର୍ଚ୍ଚ ମାସ)ରେ ସମ୍ପୂର୍ଣ୍ଣ କରି ଗଜପତି ପ୍ରତାପରୁଦ୍ରଦେବଙ୍କୁ ଉପଢୌକନ ସ୍ୱରୂପ ଅର୍ପଣ କଲେ । ରାଜା ଏଥିରେ ମୁଗ୍ଧ ହୋଇ ରାମାନନ୍ଦଙ୍କୁ “ରାୟ” ଉପାଧି ସହିତ ଏକ ସୁନାର ବେଣ୍ଟ ଉପହାର ଦେଲେ ଏବଂ ଶ୍ରୀମନ୍ଦିରରେ ଏହାର ଅଭିନୟ ଲାଗି ଆଦେଶ ଦେଲେ । ଶ୍ରୀମନ୍ଦିରରେ ଏହି ନାଟକ ସେତେବେଳେ ବହୁବାର ଅଭିନୀତ ହୋଇଥିବା ମାଧବ ପଟ୍ଟନାୟକ ଲେଖିଛନ୍ତି । ତା’ପର ବର୍ଷ (ଖ୍ରୀ: ୧୫୦୩—ରାଜାଙ୍କ ନଅ ଅଙ୍କ) ଗଜପତି, ରାୟ ରାମାନନ୍ଦଙ୍କୁ ରାଜମହେନ୍ଦ୍ରୀର ଶାସକ ରୂପେ ଅବସ୍ଥାପିତ କଲେ । ଏଠାରେ ଶ୍ରୀଚୈତନ୍ୟଙ୍କ ସହିତ ତାଙ୍କର ସାକ୍ଷାତ ଓ ନବ୍ୟବୈଷ୍ଣବ ରସତତ୍ତ୍ୱ ସମ୍ପର୍କରେ କଥୋପକଥନ—ମାଧବ ପଟ୍ଟନାୟକ ଆପଣାର ଆଶ୍ରୟଦାତା ରାୟ ରାମାନନ୍ଦଙ୍କ ସହିତ ଶ୍ରୀଚୈତନ୍ୟଙ୍କ ଆଳାପ ଆଲୋଚନାର ଜଣେ ପ୍ରତ୍ୟକ୍ଷଦର୍ଶୀ ଭାବେ ବିବରଣୀମାନ ଦେଇଛନ୍ତି ।

ଖ୍ରୀ: ୧୫୧୨ର ପୂର୍ବବର୍ତ୍ତୀ ସମୟରେ ବିଜୟନଗର ସାମ୍ରାଜ୍ୟର ରାଜା କୃଷ୍ଣଦେବ ରାୟଙ୍କର ଓଡ଼ିଶା ଆକ୍ରମଣର ଅବ୍ୟବହିତ ପୂର୍ବରୁ ରାଜମହେନ୍ଦ୍ରୀର ଶାସକ ରାୟ ରାମାନନ୍ଦଙ୍କର ରାଜକାର୍ଯ୍ୟରେ ଓ ସୈନ୍ୟ ସଗଠନରେ ଉଦାସୀନତା ଲକ୍ଷ୍ୟ କଲାପରେ ଗଜପତି ତାଙ୍କୁ ଅଗତ୍ୟା ବାଧ୍ୟହୋଇ ଶାସନ କାର୍ଯ୍ୟରୁ ଅବ୍ୟାହତି ଦେଲେ

ଏବଂ ପୁରୀ ଶ୍ରୀମନ୍ଦିରର ହାକିମଲଭ ବୁଝିବା କାର୍ଯ୍ୟରେ ବା ତତ୍ତ୍ୱାବଧାରକ ପଦରେ ନିଯୁକ୍ତ ଦେଇ ପୁରୀ କ୍ଷେତ୍ରରେ ଅବସ୍ଥାପିତ କଲେ । ଆଲୋଚ୍ୟ ମାଧବ ପଟ୍ଟନାୟକ ମଧ୍ୟ ଆପଣାର ଆଶ୍ରୟଦାତାଙ୍କ ସହିତ ପ୍ରତ୍ୟାବର୍ତ୍ତନ କରି ଅବଶିଷ୍ଟ ଜୀବନ ପୁରୀରେ ସାଧୁ ବୈଷ୍ଣବମାନଙ୍କ ଗହଣରେ ଯାପନ କଲେ । ଏହି ସମୟରେ ପୁରୀରେ ସତୀର୍ଥ ଥିବା ଶ୍ରୀଚୈତନ୍ୟ ଓ ପଞ୍ଚସଖା ସମେତ ଅନେକ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବମାନଙ୍କର କାର୍ଯ୍ୟକଳାପ, ଗତିବିଧି, ସାଧନ ଭଜନାଦି ସମ୍ପର୍କରେ ପ୍ରତ୍ୟକ୍ଷଦର୍ଶୀ ରୂପେ ଏବଂ ବହୁ ବିଷୟର ବିବରଣୀ ଦେଇଛନ୍ତି । ତେଣୁ ସେ ଏହି ଗ୍ରନ୍ଥର ନାମ "ବୈଷ୍ଣବ ଲୀଳାମୃତ" ଦେଇଥିବା ଯଥାର୍ଥ ଅନୁମିତ ହୁଏ ।

କବି ଥିଲେ ଜଣେ ସଂକୀର୍ତ୍ତନ ପ୍ରେମୀ । କୀର୍ତ୍ତନ ଗୋଷ୍ଠୀରେ ଯୋଗଦେଇ ନାମ କୀର୍ତ୍ତନ କରିବା ତାଙ୍କର ଥିଲା ଦୈନନ୍ଦିନ ଅଭ୍ୟାସ । ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜତ୍ୱକାଳରେ ପୁରୀରେ ସମବେତ ବୈଷ୍ଣବ ଗୋଷ୍ଠୀରେ ଆଲୋଚ୍ୟ କବି ଓ ସାଧକ ମାଧବ ପଟ୍ଟନାୟକଙ୍କର ଅପେକ୍ଷିତ ମହତ୍ତ୍ୱ ସ୍ୱୀକୃତ ହୋଇଥିଲା । ଶ୍ରୀ ରୂପ ଗୋସ୍ୱାମୀ. ଶ୍ରୀ ସନାତନ ଗୋସ୍ୱାମୀ ଓ ଶ୍ରୀ ରଘୁନାଥ ଦାସ ଗୋସ୍ୱାମୀ ପ୍ରସଙ୍ଗ କବି ଏଥିରେ ବର୍ଣ୍ଣନା କରିଛନ୍ତି । ବୃନ୍ଦାବନର ଷଡ଼ଗୋସ୍ୱାମୀଙ୍କ ମଧ୍ୟରୁ ଶ୍ରୀ ଜୀବ ଗୋସ୍ୱାମୀ ଥିଲେ କନିଷ୍ଠ ଏବଂ ସେ ଶ୍ରୀଚୈତନ୍ୟଙ୍କ ଜୀବଦ୍ଦଶାରେ ପୁରୀ ଆସି ନ ଥିଲେ । ତଥାପି ଶ୍ରୀ ଜୀବ ବୃନ୍ଦାବନରେ ରଚନା କରିଥିବା ତାଙ୍କର "ବୈଷ୍ଣବ ବନ୍ଦନା"ରେ ବୈଷ୍ଣବ ସାଧକ ଓଡ଼ିଆ ମାଧବ ପଟ୍ଟନାୟକଙ୍କ ଭକ୍ତିପୂର୍ଣ୍ଣ ଉଲ୍ଲେଖ କରିଛନ୍ତି— "ବନ୍ଦେ ପରମ ଗ୍ରବେନ ମାଧବଂ ପଟ୍ଟନାୟକମ୍" । ଡ: ବିମାନବିହାରୀ ମଜୁମଦାରଙ୍କ ସମ୍ପାଦନାରେ ପ୍ରକାଶିତ ଶ୍ରୀ ଜୀବ ଗୋସ୍ୱାମୀକୃତ "ବୈଷ୍ଣବ ବନ୍ଦନା" "ଶ୍ରୀଚୈତନ୍ୟ ଚରିତେର ଉପାଦାନ" ଗ୍ରନ୍ଥର ୭୨୩ ପୃ:ରେ ଉଦ୍ଧୃତ ହୋଇଅଛି ।

ମାଧବ ପୁରୀରେ ଚୈତନ୍ୟଙ୍କର ଅନୁଗାମୀ ଗଦାଧର ପଣ୍ଡିତଙ୍କଠାରୁ ଗୋପାଳ ମନ୍ତ୍ର ଦୀକ୍ଷାନେଇ ସାଧନ ଭଜନରେ କାଳଯାପନ କରୁଥିଲେ । ଆପଣାର ଗୁରୁ ଠାକୁର ଗଦାଧରଙ୍କ ସମ୍ପର୍କରେ ଆସି ସେ ଭଜନ-ନିଷ୍ଠ ଜୀବନଯାପନ କରିପାରିଥିବାରୁ ନିଜକୁ ଧନ୍ୟ ମନେକରିଅଛନ୍ତି । ଠାକୁର ଗଦାଧର ଚୈତନ୍ୟଙ୍କ ସହିତ ପୁରୀକୁ ଆସିଥିଲେ । ସେ ଥିଲେ ପୁରୀରେ ଶ୍ରୀ ଟୋଟା ଗୋପୀନାଥଙ୍କର ସେବକ । ମାଧବ ପଟ୍ଟନାୟକଙ୍କର ଦୀକ୍ଷାଗୁରୁ ଥିଲେ ଏହି ଗଦାଧର ପଣ୍ଡିତ । ସେ ମାଧବଙ୍କୁ ଗୋପାଳ ମନ୍ତ୍ର ଦୀକ୍ଷା ଦେଇଥିଲେ । ସେହି ସମୟରେ ପୁରୀକୁ ଆସୁଥିବା ସାଧୁ ବୈଷ୍ଣବ ସନ୍ଥମାନଙ୍କର ଚର୍ଚ୍ଚା କରିବା ଓ ସେମାନଙ୍କର ସୁଖାବସ୍ଥାନର ବ୍ୟବସ୍ଥା କରିବା ବୋଧହୁଏ କବିଙ୍କର ଥିଲା ନିତ୍ୟ ନୈମିତ୍ତିକ କର୍ତ୍ତବ୍ୟ । ଏ ବିଷୟରେ କବି ଆଲୋଚ୍ୟ କାବ୍ୟରେ କେତେକ ସୂଚନା ଦେଇଛନ୍ତି ।

ଗଜପତି ପ୍ରତାପରୁଦ୍ରଦେବଙ୍କ ୨୪ ଅଙ୍କରେ କବି "ଚୈତନ୍ୟ ବିଳାସ" ନାମକ ଏକ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଶ୍ରୀଚୈତନ୍ୟଙ୍କ "ସନ୍ନ୍ୟାସ ରସବିଳାସ" (ଆଦ୍ୟ ଲୀଳାର ଘଟଣାବଳୀ) ଏବଂ ପୁରୀରେ ପଦାର୍ପଣ କରିବା ପର୍ଯ୍ୟନ୍ତ ଘଟଣାମାନ ବର୍ଣ୍ଣିତ । ରାଜାଙ୍କ ଚବିଶି ଅଙ୍କ ଖ୍ରୀ: ୧୫୧୬ ସହିତ ସମାନ । ଏହା ହିଁ "ଚୈତନ୍ୟ ବିଳାସ" ଗ୍ରନ୍ଥର ରଚନାକାଳ । ଏହି ପୋଥିର ଏକ ନକଲ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି ଭଣ୍ଡାରରେ ସୁରକ୍ଷିତ । ମ୍ୟୁଜିୟମର କ୍ୟୁରେଟର ପଣ୍ଡିତ ଶ୍ରୀ ନୀଳମଣି ମିଶ୍ରଙ୍କ ଅନୁଗ୍ରହରୁ ଆମେ ଉକ୍ତ "ଚୈତନ୍ୟ ବିଳାସ" ପୋଥି ପଢ଼ିବାର ସୁଯୋଗ ପାଇଅଛୁ । ଏଥିରେ କବି ନିଜ ସମ୍ପର୍କରେ କିଛି ଲେଖିନାହାନ୍ତି । ନିଜ ନାମକୁ କେବଳ ମାଧବ, ମାଧବ ଦାସ ବୋଲି ଅଭିହିତ କରିଅଛନ୍ତି । ଗୋଟିଏ ସ୍ଥାନରେ ଏଥିରେ ମାଧବ ରଥ ବୋଲି ଲେଖାଅଛି । କିନ୍ତୁ ଏହା ଲେଖନକାରର ପ୍ରମାଦ ବୋଲି କୁହାଯାଇପାରେ । ଆଲୋଚ୍ୟ "ବୈଷ୍ଣବ ଲୀଳାମୃତ"ରେ କବି ନିଜ ବଂଶ ଓ ପଟ୍ଟନାୟକ ଉପାଧିର ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ସେ ରାଜାଙ୍କ ଚବିଶ ଅଙ୍କରେ 'ଚୈତନ୍ୟ ବିଳାସ' ରଚନା କରିଥିଲେ ବୋଲି ସ୍ପଷ୍ଟ ଉଲ୍ଲେଖ କରିଥିବା ହେତୁ ତାଙ୍କର ବଂଶଗତ 'ପଟ୍ଟନାୟକ' ଉପାଧି ସମ୍ପର୍କରେ କୌଣସି ସଂଶୟ ରହି ନ ପାରେ । ଉଭୟ ଗ୍ରନ୍ଥରେ କବି ଆପଣାର ଗୁରୁ ଠାକୁର ଗଦାଧରଙ୍କ ସମ୍ପର୍କରେ ଉଲ୍ଲେଖ କରିଥିବା ହେତୁ ଉଭୟ ଗ୍ରନ୍ଥର ଲେଖକ ଯେ ମାଧବ ପଟ୍ଟନାୟକ—ଏ ବିଷୟରେ ଆଉ କୌଣସି ଦ୍ୱନ୍ଦ୍ୱ ରହେନାହିଁ । କବି 'ଚୈତନ୍ୟ ବିଳାସ'କୁ ଖ୍ରୀ: ୧୫୧୬ରେ (ରାଜାଙ୍କ ୨୪ ଅଙ୍କରେ) ରଚନା କରିଥିବା ବିଷୟ 'ବୈଷ୍ଣବ ଲୀଳାମୃତ'ରେ ଉଲ୍ଲେଖ କରିଛନ୍ତି । (ରାଜାର ଅଂକ ଚବିଶଂଶେ । ରଚିଲି ଚୈତନ୍ୟ ବିଳାସେ' । ଏବକୁ ଅଂକ ଅଠସ୍ତ୍ରିଶ । କଲି ବୈଷ୍ଣବ ଲୀଳାରସ ।) ଚୈତନ୍ୟ ବିଳାସର ରଚନା ପୂର୍ବରୁ କବି ବୋଧହୁଏ ଗଦାଧର ପଣ୍ଡିତଙ୍କଠାରୁ ମନ୍ତ୍ରଦୀକ୍ଷା ନେଇଥିଲେ ଏବଂ ସେଥିଲାଗି 'ଚୈତନ୍ୟ ବିଳାସ'ରେ ନିଜ ଗୁରୁଙ୍କ ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ବୈଷ୍ଣବ ଲୀଳାମୃତ'ରେ ମଧ୍ୟ ଗୁରୁ ଠାକୁର ଗଦାଧରଙ୍କ ସମ୍ପର୍କର ପୁନରାବୃତ୍ତି କରାଯାଇଛି । ଠାକୁର ଗଦାଧରଙ୍କ ମୁଖରୁ ଶ୍ରୀଚୈତନ୍ୟଙ୍କ ଆଦ୍ୟ ଲୀଳାର (ନବଦ୍ୱୀପ ଲୀଳା) ଘଟଣାବଳୀ ଯାହା ଯେପରି ଶୁଣିଥିଲେ ସେ ସବୁକୁ 'ଚୈତନ୍ୟ ବିଳାସ'ରେ ଲିପିବଦ୍ଧ କରିଛନ୍ତି । ଆଲୋଚ୍ୟ 'ବୈଷ୍ଣବ ଲୀଳାମୃତ'ର ରଚନାକାଳ ଖ୍ରୀ: ୧୫୫୫ [ରାଜାଙ୍କ ୩୮ ଅଂକ] । ଏ ଦୁଇଟି ଗ୍ରନ୍ଥ ବ୍ୟତୀତ 'ମୋକ୍ଷ ପୁରାଣ' ନାମରେ ଏକ ରଚନା ଥିବା ଦେଖାଯାଏ । 'ମୋକ୍ଷ ପୁରାଣ'ର ଏକ ପୋଥି ଆମ ନିକଟରେ ଅଛି । ଏହା ଲିରମ୍ବାରୁ ପ୍ରାପ୍ତ । ଏଥିରେ କବି ନିଜକୁ ମାଧବ ବୈଷ୍ଣବ ବୋଲି ଉଲ୍ଲେଖ କରିଛନ୍ତି । ଏହି ମାଧବ ବୈଷ୍ଣବ ଉପରୋକ୍ତ ଦୁଇଟି କାବ୍ୟର ଲେଖକ ମାଧବ ଦାସ ଓ ମାଧବ ପଟ୍ଟନାୟକ ଏକ ଓ ଅଭିନ୍ନ ବ୍ୟକ୍ତି ବୋଲି ମନେହୁଅନ୍ତି । କାରଣ ମୋକ୍ଷ ପୁରାଣରେ ନାମ ସଂକୀର୍ତ୍ତନ ଓ ଭଜନ ଉପରେ ଏବଂ ରାଗ ମାର୍ଗର ଅନେକ ବିଷୟରେ ପୁରାଣ ଢଙ୍ଗରେ ବହୁ

ଉପାଦେଶପୂର୍ଣ୍ଣ ଗୀତଗର୍ଭକ କାହାଣୀମାନ ଲିପିବଦ୍ଧ ହୋଇଅଛି । ଭାଷା ଶୈଳୀ ଓ ଲେଖନ ଶୈଳୀ ଦୃଷ୍ଟିରୁ ଏହି ତିନୋଟି ଗ୍ରନ୍ଥର ଲେଖକ ଆମର ଆଲୋଚ୍ୟ କବି ମାଧବ ପଟ୍ଟନାୟକ ବୋଲି ନିର୍ଭର ଭାବରେ କୁହାଯାଇପାରେ ।

ଡଃ ବିମାନ ବିହାରୀ ମଜୁମଦାର ପୁରୀରୁ ଉକ୍ତ "ଚୈତନ୍ୟ ବିଳାସ" ପୋଥି ସଂଗ୍ରହ କରି କଲିକତା ନେଇଥିଲେ ଏବଂ ବଙ୍ଗୀୟ ସାହିତ୍ୟ ପରିଷଦ ପତ୍ରିକାରେ ଏହା ଉପରେ ଏକ ଆଲୋଚନା ଲେଖି ପ୍ରକାଶ କରିଥିଲେ । ପରେ ସେ ତାଙ୍କ ରଚିତ ନିବନ୍ଧ "ଶ୍ରୀଚୈତନ୍ୟ ଚରିତେର ଉପାଦାନ"ରେ ଏହି ପୋଥି ଓ ଏହାର ରଚୟିତାଙ୍କ ସମ୍ପର୍କରେ ଆଲୋଚନା ପ୍ରକାଶ କରିଥିଲେ । ତା'ପରେ କଟକ ରେଭେନ୍ସା କଲେଜର ତଦାନୀନ୍ତନ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି, ଡଃ ମଜୁମଦାରଙ୍କଠାରୁ 'ଚୈତନ୍ୟ ବିଳାସ' ପୋଥିଟି ନିଜେ ସମ୍ପାଦନା କରି ପ୍ରକାଶ କରିବାଲାଗି କଲିକତାରୁ କଟକ ଆଣିଥିଲେ । କିନ୍ତୁ ପ୍ରଫେସର ସ୍ୱର୍ଗତ ମହାନ୍ତି ନିଜ ଜୀବଦ୍ଦଶାରେ ଉକ୍ତ ପୋଥି ସମ୍ପାଦନା କରି ପ୍ରକାଶ କରିନାହାନ୍ତି । ତେବେ ବର୍ତ୍ତମାନ ମ୍ୟୁଜିୟମ୍‌ରେ ଥିବା 'ଚୈତନ୍ୟ ବିଳାସ' ପୋଥିଟି ପ୍ରଫେସର ମହାନ୍ତିଙ୍କ ସଂଗୃହୀତ ପୋଥି କି ନୁହେଁ, ତାହା ଆମେ କହି ନ ପାରୁ । ମାତ୍ର ଏତିକି ଜଣାଯାଉଅଛି ଯେ କବି ମାଧବ ପଟ୍ଟନାୟକ ଖ୍ରୀ: ୧୫୧୬ରେ ଏହି ଗ୍ରନ୍ଥ ରଚନା କରିଥିଲେ ଏବଂ ଆଲୋଚ୍ୟ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥ ଖ୍ରୀ: ୧୫୩୫ରେ ଲେଖିଥିଲେ । ଏ ଦୁଇଟି ଗ୍ରନ୍ଥ ରଚନାକାଳର ମଧ୍ୟବର୍ତ୍ତୀ ସମୟରେ ବୋଧହୁଏ 'ମୋକ୍ଷ ପୁରାଣ' ଲେଖିଥିଲେ । 'ବୈଷ୍ଣବ ଲୀଳାମୃତ' ରଚନା ବେଳକୁ (ଖ୍ରୀ: ୧୫୩୫) ଶ୍ରୀଚୈତନ୍ୟ, ବଳରାମ ଦାସ, ସ୍ୱରୂପ ଦାମୋଦର ଓ ରାୟ ରାମାନନ୍ଦଙ୍କର ଦେହାନ୍ତ ହୋଇସାରିଥିଲା । ପୁରୀ କ୍ଷେତ୍ରରେ ବୈଷ୍ଣବମାନଙ୍କର ଲୀଳାଖେଳା ସରିଆସୁଥିଲା । ଓଡ଼ିଶା ସାମ୍ରାଜ୍ୟ ଧୀରେ ଧୀରେ ପତନ ଆଡ଼କୁ ଟାଣି ହୋଇଯାଉଥିଲା । ଗଜପତି ପ୍ରତାପରୁଦ୍ର ଘୋର ବିପର୍ଯ୍ୟୟର ସମ୍ମୁଖୀନ ହୋଇସାରିଥିଲେ । 'ବୈଷ୍ଣବ ଲୀଳାମୃତ'ରେ କବି ମାଧବ ପଟ୍ଟନାୟକ ଏସବୁ ବିଷୟର ମଧ୍ୟ ସୂଚନା ଦେଇଛନ୍ତି ।

ଖ୍ରୀ. ୧୫୩୩ରେ ନିଜ ଆଶ୍ରୟଦାତା ରାୟ ରାମାନନ୍ଦଙ୍କ ତିରୋଧାନ ପରେ ମାଧବ ପଟ୍ଟନାୟକ ବୋଧହୁଏ ପୁରୀ ତ୍ୟାଗକରି ନିଜ ପୂର୍ବସ୍ଥାନ ଖଣ୍ଡପଡ଼ାକୁ ଫେରିଆସିଥିଲେ । ଶ୍ରୀଚୈତନ୍ୟ, ରାୟ ରାମାନନ୍ଦ, ବଳରାମ ଦାସ, ସ୍ୱରୂପ ଦାମୋଦର ଆଦି ପ୍ରଖ୍ୟାତ ବୈଷ୍ଣବମାନଙ୍କର ତିରୋଧାନ ପରେ ପୁରୀର ବୈଷ୍ଣବ ଇଷ୍ଟଗୋଷ୍ଠୀ ଭାଙ୍ଗିଯାଇଥିବା ସମ୍ଭବ । "ଛିନ୍ନେ ମୂଲେ ନୈବ ଶାଖା ନ ପତ୍ରମ" ନ୍ୟାୟରେ ସ୍ୱାମୀ ଜଗନ୍ନାଥ ଦାସ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ଆଦି ନିଜ ନିଜ ବାଟରେ ଗଲେ । ପଞ୍ଚସଖା ଓ ଅନ୍ୟ ବୈଷ୍ଣବମାନଙ୍କର ଆଉ ପୂର୍ବ ପରି ମେଳ ରହିଲାନାହିଁ । ମାଧବ ପଟ୍ଟନାୟକ ମଧ୍ୟ ଏହି ଦୁର୍ଯୋଗପୂର୍ଣ୍ଣ ମୁହୂର୍ତ୍ତରେ ପୁରୀକ୍ଷେତ୍ର ତ୍ୟାଗକରି ତାଙ୍କ ଜନ୍ମସ୍ଥାନ ଖଣ୍ଡପଡ଼ାକୁ

ଫେରିଆସିଥିବା ଅନୁମିତ ହୁଏ । ଚୈତନ୍ୟଙ୍କ ମୃତ୍ୟୁ ସମ୍ବାଦ ଗୋପନୀୟ ଥିଲା । ରାୟ ରାମାନନ୍ଦ, ଗଜପତିଙ୍କ ସହିତ ଗୋପନରେ ପରାମର୍ଶ କରି ଚୈତନ୍ୟଙ୍କ ମୃତ-ଶରୀରକୁ କୋଇଲି ବୈକୁଣ୍ଠରେ ପୋତାଇ ଦେଇଥିଲେ । ମାତ୍ର ଚୈତନ୍ୟଙ୍କୁ ଆଗରୁ ପ୍ରଭୁ ବୋଲି ରାଜା ସ୍ୱୀକାର କରିଥିବାରୁ ସେ ସ୍ୱଦେହରେ ଜଗନ୍ନାଥଙ୍କ ଅଙ୍ଗରେ ଲୀନ ହେଲେ ବୋଲି ଲୋକଙ୍କ ମଧ୍ୟରେ ଘୋଷଣା କରାଗଲା । ମାଧବ ପଟ୍ଟନାୟକ, ରାୟ ରାମାନନ୍ଦଙ୍କ ଅତି ପାଖଲୋକ ହୋଇଥିବାରୁ ଚୈତନ୍ୟଙ୍କ ତିରୋଧାନ ସମ୍ପର୍କରେ ପ୍ରକୃତ ତଥ୍ୟ ଜାଣିବାର ସୁବିଧା ପାଇଥିଲେ । 'ବୈଷ୍ଣବ ଲୀଳାମୃତ'ରେ ଏହି ଗୋପନ ତଥ୍ୟ ସେ ପ୍ରକାଶ କରିଥିବା ଦେଖାଯାଏ । ଏହା କିନ୍ତୁ ପ୍ରକାଶ ଲାଗି ଲିଖିତ ଥିଲା । ଯେତେବେଳେ ବୋଧହୁଏ ରାଜଦଣ୍ଡ ଭୟରେ କବି ପୁରୀ ଛାଡ଼ି ସଦ୍ୟଲେଖା "ବୈଷ୍ଣବ ଲୀଳାମୃତ" ପୋଥି ସହିତ ଖଣ୍ଡପଡ଼ା ପଳାଇ ଆସିଥିବେ । ଏପରି ଅନୁମାନ କରିବାର କାରଣ ହେଉଛି—"ଚୈତନ୍ୟ ବିଳାସ" ପୋଥି ପୁରୀରୁ ଡଃ ବିମାନ ବିହାରୀ ମଜୁମଦାର ପାଇଥିଲେ; ମାତ୍ର "ବୈଷ୍ଣବ ଲୀଳାମୃତ" ପୋଥି ଖଣ୍ଡପଡ଼ାରୁ ମିଳିଲା । ନୟାଗଡ଼ ଓ ଘୁମୁସରରୁ ଏହାର ଅନ୍ୟ ଦୁଇଟି ନକଲ ମିଳିଲା ସିନା, ପୁରୀରୁ ବା ତାହାର ଆଖପାଖ ଅଞ୍ଚଳରୁ ଆଲୋଚ୍ୟ ପୋଥି ମିଳିନାହିଁ । "ଚୈତନ୍ୟ ବିଳାସ"ର ରଚନା-କାଳ ୧୫୧୭ ଓ 'ବୈଷ୍ଣବ ଲୀଳାମୃତ'ର ରଚନା ୧୫୩୫ରେ । ଅତଏବ ୧୫୩୩ରେ ରାୟ ରାମାନନ୍ଦ ଓ ଚୈତନ୍ୟଙ୍କ ମୃତ୍ୟୁପରେ ଓ 'ବୈଷ୍ଣବ ଲୀଳାମୃତ'ର ରଚନା ୧୫୩୫ ପୂର୍ବରୁ ବୋଧହୁଏ ମାଧବ ପଟ୍ଟନାୟକ ପୁରୀ ଛାଡ଼ି ଖଣ୍ଡପଡ଼ା ଆସିଥିବେ । ଏହା ଆମର କେବଳ ଅନୁମାନ ମାତ୍ର ।

କବିଙ୍କୁ ୨୧ ବର୍ଷ ବୟସ ବେଳେ ସେ ଖଣ୍ଡପଡ଼ା ଛାଡ଼ି ପୁରୀ ଆସିଥିଲେ । ବେଣ୍ଟପୁର ଗ୍ରାମରେ ମାଧବେନ୍ଦ୍ରପୁରୀଙ୍କ ହରିନାମ କୀର୍ତ୍ତନର ସେ ଥିଲେ ପ୍ରତ୍ୟକ୍ଷଦର୍ଶୀ । ମାଧବେନ୍ଦ୍ର ପୁରୀଙ୍କ ଦେହାନ୍ତ ଖ୍ରୀ: ୧୫୦୦ର ଘଟଣା ବୋଲି ଐତିହାସିକମାନଙ୍କ ମତ । ଗଜପତି ପ୍ରତାପରୁଦ୍ରଙ୍କ ସିଂହାସନ ଆରୋହଣ ଖ୍ରୀ: ୧୪୯୭ର ଘଟଣା । ଅତଏବ ୧୪୯୭ରୁ ୧୫୦୦ ମଧ୍ୟରେ କବି ମାଧବ ପଟ୍ଟନାୟକ ଖଣ୍ଡପଡ଼ା ଛାଡ଼ି ପୁରୀ ଆସିଥିବେ । ଜୟବିଜୟ ଶିଳାଲିପିର ରଚନାକାଳ ୧୪୯୯ । ଏହି ଶିଳାଲେଖର ବିଷୟବସ୍ତୁ ସମ୍ପର୍କରେ "ବୈଷ୍ଣବ ଲୀଳାମୃତ"ରେ କବି ବିଶଦ ବିବରଣୀ ଦେଇଥିବା ହେତୁ ୧୪୯୯ ବେଳକୁ କବି ପୁରୀକୁ ଆସିଥିଲେ ବୋଲି କହିବା ସଙ୍ଗତ ହେବ । ସେତେ-ବେଳେ ତାଙ୍କୁ ୨୧ ବର୍ଷ ବୟସ ହୋଇଥିଲା । ତେଣୁ କବି ମାଧବଙ୍କ ଜନ୍ମ ଖ୍ରୀ: ୧୪୭୮ (୧୪୯୯-୨୧) ଏବଂ 'ବୈଷ୍ଣବ ଲୀଳାମୃତ'ର ରଚନାକାଳ ଖ୍ରୀ: ୧୫୩୫ ପରେ ତାଙ୍କର ଦେହାନ୍ତ ହୋଇଥିବା ଅନୁମିତ ହୁଏ । 'ବୈଷ୍ଣବ ଲୀଳାମୃତ'ର ରଚନା ବେଳକୁ କବିଙ୍କୁ ୫୭ ବର୍ଷ ବୟସ ହୋଇଥିଲା ବୋଲି ଉକ୍ତ ହିସାବରୁ ଜଣାଯାଏ । ଏହା ଯେ କବିଙ୍କ ପ୍ରୌଢ଼ ବୟସର ରଚନା, ତାହା କବିଙ୍କ ବିଷୟ ଉପସ୍ଥାପନ ରୀତିରୁ ହିଁ ଅନୁମିତ ହୁଏ ।

## ମାଧବ ପଟ୍ଟନାୟକଙ୍କ କବିତ୍ୱ :

'ବୈଷ୍ଣବ ଲୀଳାମୃତ'ର ସାହିତ୍ୟିକ ମୂଲ୍ୟ ଅତ୍ୟଳ୍ପ ମାତ୍ର । ଭାଷା ପ୍ରୟୋଗରେ ସେପରି କିଛି ମାଧୁର୍ଯ୍ୟ ବା ଚମତ୍କାରିତା ପରିଲକ୍ଷିତ ହୁଏନାହିଁ । କବି ମୁଖ୍ୟତଃ ପଞ୍ଚସଖା ଯୁଗର ସାହିତ୍ୟିକ ପ୍ରାକୃତ ଓଡ଼ିଆରେ ତାଙ୍କ ରଚନା ଲିପିବଦ୍ଧ କରିଅଛନ୍ତି । ଏହି ଗ୍ରନ୍ଥ ପ୍ରଧାନତଃ ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ନୀଳାଚଳରେ ସମବେତ ହୋଇଥିବା ବୈଷ୍ଣବମାନଙ୍କର କାର୍ଯ୍ୟକଳାପର ବିବରଣୀ ପ୍ରଦାନ କରିବା ଲାଗି ରଚିତ ହୋଇଥିବା ଜଣାଯାଏ । ପ୍ରସଙ୍ଗକ୍ରମେ ଚୋଡ଼ଗଙ୍ଗଦେବଙ୍କ ମନ୍ଦିର ନିର୍ମାଣ, ଜୟଦେବଙ୍କ ଗୀତ-ଗୋବିନ୍ଦ ରଚନା, ଶ୍ରୀଧର ସ୍ୱାମୀଙ୍କର ଭାଗବତ ବ୍ୟାଖ୍ୟା, ମାଧବେନ୍ଦ୍ର ପୁରୀ ଓ କ୍ଷୀରଚୋରା ଗୋପୀନାଥ ପ୍ରସଙ୍ଗ, ପୁରୀ ମନ୍ଦିରରେ ଗୀତଗୋବିନ୍ଦ ଗାନ ସମ୍ପର୍କରେ ରାଜାଦେଶର ଘୋଷଣା, ରାୟ ରାମାନନ୍ଦଙ୍କର ସଙ୍ଗୀତ ନାଟକ ରଚନା, ମନ୍ଦିରରେ ଏହାର ଗୀତ ଓ ଅଭିନୟ, ଗାଜି ଇସମାଇଲର ପୁରୀ ମନ୍ଦିର ଆକ୍ରମଣ ଆଶଙ୍କାରେ ସେବକମାନେ ଜଗନ୍ନାଥଙ୍କର ଚାରି ମୂର୍ତ୍ତିଙ୍କୁ ନେଇ ଚିଲିକା ହ୍ରଦ ମଧ୍ୟସ୍ଥ ଗଡ଼ଚେଙ୍ଗଲରେ ଲୁଚାଇବା ପ୍ରସଙ୍ଗ, ବିଜୟନଗର ସାମ୍ରାଜ୍ୟର ରାଜା କୃଷ୍ଣଦେବ ରାୟଙ୍କ ସହିତ ଗଜପତି ପ୍ରତାପରୁଦ୍ର-ଦେବଙ୍କ ଯୁଦ୍ଧ ପ୍ରଭୃତି ବିଷୟ ଏଥିରେ ବର୍ଣ୍ଣିତ ହୋଇଅଛି । ନବାକ୍ଷରୀ ଭାଗବତ ବୃତ୍ତରେ ଏହାର ରଚନା ସମ୍ପନ୍ନ ହୋଇଥିବାରୁ ଭାଗବତର ତାତ୍କାଳିକ ଜନପ୍ରିୟତା ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଧାରଣା ଏଥିରୁ ମିଳିଥାଏ । 'ବୈଷ୍ଣବ ଲୀଳାମୃତ'ର ରଚନା-ରୀତିରେ କବିତ୍ୱର ପରିପ୍ରକାଶ ଅତି କ୍ୱଚିତ୍ ପରିଦୃଷ୍ଟ । ଅଧିକାଂଶ ସ୍ଥଳରେ ଭାବପ୍ରକାଶ ବିବରଣୀମୂଳକ ଓ ସମସାମୟିକ ଐତିହାସିକ ଘଟଣାବଳୀର ବର୍ଣ୍ଣନା ମାତ୍ର ବୋଲି ମନେହୋଇଥାଏ । ଭାବପ୍ରକାଶରେ ବିଷୟ ବିନ୍ୟାସରେ ବା ବର୍ଣ୍ଣନା ଭଙ୍ଗୀରେ କୌଣସି ଚାତୁର୍ଯ୍ୟ ନ ଥିବା ଲକ୍ଷ୍ୟ କରାଯାଏ । ସାଧାରଣ ସହଜ ସରଳ ଅଥଚ ଶୁଦ୍ଧ, ମାର୍ଜିତ, ଶିଷ୍ଟଜନ ପ୍ରଯୁକ୍ତ ଭାଗବତୀୟ ଭାଷାରେ ଏହା ରଚିତ । ଧର୍ମ ମତର ଜଟିଳ ତତ୍ତ୍ୱ ଆଡ଼କୁ କବି ବେଶି ଯାଇନାହାନ୍ତି । ଜ୍ଞାନମିଶ୍ରା ଭକ୍ତି ବା ରାଗାନୁଗା ପ୍ରେମଭକ୍ତିର ଚିତ୍ର ପ୍ରଦାନ କରିବାକୁ ଯାଇ କବି ଏଥିରେ କୌଣସି ସ୍ଥଳରେ ଦାର୍ଶନିକ ତତ୍ତ୍ୱ ବା ଧର୍ମ ମତର କୌଣସି ଜଟିଳ ସିଦ୍ଧାନ୍ତ ପ୍ରଦାନ କରିବା ପାଇଁ ବିଶେଷ ଯତ୍ନ କରିନାହାନ୍ତି । ଧର୍ମତତ୍ତ୍ୱ ଅପେକ୍ଷା ଐତିହାସିକ ବିବରଣୀ ପ୍ରଦାନ କରିବା ଏହି ଗ୍ରନ୍ଥର ମୂଳ ଉଦ୍ଦେଶ୍ୟ ଥିବା ମନେହୁଏ ।

ଆଲୋଚ୍ୟ କାବ୍ୟ ବୈଷ୍ଣବ ଲୀଳାମୃତରେ କବିତ୍ୱର ସ୍ଫୁରଣ ଏକ ଦୁରୂହ-ବ୍ୟାପାର । କବି ଅବଶ୍ୟ କେତେକ ସ୍ଥଳରେ ଉପମା ଓ ରୂପକାଦିର ବ୍ୟବହାର କରି ଅପୂର୍ବ ଭାବରସ ସୃଷ୍ଟି କରିବାକୁ ଯେ ଆଗ୍ରହ ଦେଖାଇନାହାନ୍ତି, ତାହା ନୁହେଁ, କିନ୍ତୁ ଏଥିଲାଗି ଆୟାସ ବା ପ୍ରଯତ୍ନ ଦୁର୍ଲକ୍ଷ୍ୟ । ସରଳ ସାବଲୀଳ ଭାବରେ ଉପମା, ରୂପକର

ପ୍ରଶ୍ନୋତ୍ତରାବଳୀ ଯେଉଁଠି ଅନାବୃତ ଭାବରେ ଉଚ୍ଚାରିତ ହୋଇପଡ଼ିଛି, ସେ ସବୁ ସ୍ଥଳରେ ଅଳଙ୍କୃତ ହେଲେ ମଧ୍ୟ କାବ୍ୟିକ ବୈଚିତ୍ର୍ୟ ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରକଟିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଏଠାରେ ବୈଷ୍ଣବ ଲୀଳାମୃତ କାବ୍ୟର ସେହିପରି କେତେକ ବର୍ଣ୍ଣନା ଆମର ଉପଲକ୍ଷ୍ୟ ।

କବି ଯୌବନ କାଳରେ ରାୟ ରାମାନନ୍ଦ ଓ ତାଙ୍କ ପରିବାରରେ ଆଶ୍ରୟଲାଭ କରିଥିଲେ । ସେ ରାୟ ରାମାନନ୍ଦଙ୍କର ଥିଲେ ଅତି ନିକଟବର୍ତ୍ତୀ । କବିଙ୍କ ପ୍ରଦତ୍ତ ବିବରଣୀ ଅନୁସାରେ ରାୟ ରାମାନନ୍ଦଙ୍କର ଦେହାନ୍ତ ହେଲା ଖ୍ରୀ: ୧୫୩୩ ଭାଦ୍ରବ କୃଷ୍ଣାଷ୍ଟମୀ ; ଚୈତନ୍ୟଙ୍କର ତିରୋଧାନ ଖ୍ରୀ: ୧୫୩୩ ବୈଶାଖ ଶୁକ୍ଳ ତୃତୀୟାରେ ୨୭-୪-୩୩ରେ ଘଟିଥିଲା ବୋଲି କବି ଲେଖିଛନ୍ତି । ଏଥିରୁ ଜଣାଯାଏ ରାୟ ରାମାନନ୍ଦ ଚୈତନ୍ୟଙ୍କ ମୃତ୍ୟୁର ତିନିମାସ କୋଡ଼ିଏ ଦିନ ପରେ ମୃତ୍ୟୁବରଣ କରିଥିଲେ । ସେ ପର୍ଯ୍ୟନ୍ତ କବି ମାଧବ ପଟ୍ଟନାୟକ ରାୟ ରାମାନନ୍ଦଙ୍କୁ ଆଶ୍ରୟ କରି ପୁରୀରେ ଅବସ୍ଥାନ କରୁଥିବା ଜଣାଯାଏ । କବି ତାଙ୍କର ଆଶ୍ରୟଦାତାଙ୍କୁ ଅନୁସରିଥିବା ବିଷୟରେ ଲେଖିଛନ୍ତି—"ରହିଲି ତାଙ୍କୁ ଅନୁସରି କାୟାକୁ ଏକ ଛାୟାପରି ।" (୩ୟ) ଏହି ସୁନ୍ଦର ଉପମାଟି କବିଙ୍କର ଇଷ୍ଟ ନିଷ୍ଠାର ମଧୁର ପରିଚୟ ବହନ କରେ ।

ଖ୍ରୀ: ୧୫୧୦ରେ ଶ୍ରୀଚୈତନ୍ୟ ଶ୍ରୀକ୍ଷେତ୍ରରେ ପଦାର୍ପଣ କଲେ । ପୁରୀ ମନ୍ଦିର ବେଢ଼ା ଭିତରେ ଜଗନ୍ନାଥ ଦାସ ବଟଗଣେଶ ମୂଳେ ଏକ ରାସ ମଣ୍ଡପ ନିର୍ମାଣ କରି ତାହାର ସମ୍ମୁଖରେ ଏକାଗ୍ର ଚିତ୍ତରେ ଭାଗବତ ରଚନା କରିଥିଲେ ଓ ଭକ୍ତି ଉଦ୍ରେକ ଭାବରେ ଭାଗବତ ବାଣୀକୁ ବ୍ୟାଖ୍ୟା କରି ଭକ୍ତମାନଙ୍କୁ ଶୁଣାଉଥିଲେ । ଚୈତନ୍ୟ ମଧ୍ୟ ଏହି ଭାଗବତ ବ୍ୟାଖ୍ୟା ଶୁଣିଲେ । ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ପ୍ରଥମ ସାକ୍ଷାତ ସମ୍ପର୍କ ଏହିଠାରେ ଘଟିଥିଲା । କବି ମାଧବ ପଟ୍ଟନାୟକ ଏହାର ବର୍ଣ୍ଣନା ଦେଇଛନ୍ତି । ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ପ୍ରଥମ ସାକ୍ଷାତରେ ଉଭୟେ ଉଭୟଙ୍କର ଆତ୍ମମର୍ଯ୍ୟାଦା ସାଧନ ନିଷ୍ଠା ଓ ହୃଦୟବତ୍ତା ବୁଝିପାରିଲେ ଏବଂ ଉଭୟେ ଉଭୟଙ୍କୁ ଆଲିଙ୍ଗନ କଲେ । ଏହି ମହାମିଳନକୁ ବର୍ଣ୍ଣନା କରି କବି ଲେଖିଛନ୍ତି—

"ସମୁଦ୍ରେ ନଦୀ ଯେ ମିଶିଲା
ଭାବ ତରଙ୍ଗ, ଉଛୁଳିଲା ।" (୫ମ ଅ:)

ପୁରୀରେ ପଦାର୍ପଣ କରିବାରେ ଦୁଇମାସ ପରେ ଚୈତନ୍ୟ ତୀର୍ଥାଟନ ଉଦ୍ଦେଶ୍ୟରେ ଦକ୍ଷିଣ ଯାତ୍ରା କଲେ । ଏହି ଯାତ୍ରା କାଳରେ ରାୟ ରାମାନନ୍ଦଙ୍କ ସହିତ ଚୈତନ୍ୟଙ୍କର ମିଳନ ଓ ତାତ୍ତ୍ୱିକ ଆଲୋଚନା ନବ୍ୟ ବୈଷ୍ଣବ ଧର୍ମ ଇତିହାସରେ

ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା । ଗୋଦାବରୀ ନଦୀ କୂଳରେ ପହଞ୍ଚି ଚୈତନ୍ୟ ସ୍ନାନ ଓ ନିତ୍ୟକର୍ମମାନ ସାରି ବୃକ୍ଷ ମୂଳରେ ବସିଛନ୍ତି—କବି ଏହି ପ୍ରସଙ୍ଗରେ ଶ୍ରୀଚୈତନ୍ୟଙ୍କର ଅପୂର୍ବ ଅଙ୍ଗକାନ୍ତିର ବର୍ଣ୍ଣନା ଦେଇ ଲେଖିଛନ୍ତି —

"ସ୍ୱର୍ଣ୍ଣେ ଗଢ଼ିଲ ତା କାନ୍ତି ।
ବାଳସୂର୍ଯ୍ୟକୁ ଆଣେ ଭ୍ରାନ୍ତି ॥
ସୁବର୍ଣ୍ଣେ ନିର୍ମାଣିଲ ପରି ।
ଦିଶଇ ଅଙ୍ଗ ତାର ଗୋରି ॥
ବ୍ରହ୍ମ ତେଜ ଯେ ଝଟକଇ ।
ଅଧରୁ ମଧୁ ହାସ ଝରଇ ।" (୪ର୍ଥ ଅ:)

ରାଜମହେନ୍ଦ୍ରୀରେ ଶାସକ ରାମ ରାୟଙ୍କ ସହିତ ଚୈତନ୍ୟଙ୍କର ରାଗମାର୍ଗର ତତ୍ତ୍ୱାଲୋଚନାର ଐତିହାସିକତା ସ୍ୱୀକାର କରିବାଲାଗି ଏବଂ ଚୈତନ୍ୟଙ୍କର ଗୁରୁ ରୂପେ ରାୟ ରାମାନନ୍ଦଙ୍କୁ ଦେଖିବା ପାଇଁ ଅନେକ କୁଣ୍ଠାବୋଧ କରିଥାନ୍ତି । କୃଷ୍ଣ ଦାସ କବିରାଜ ଓ କବି କର୍ଣ୍ଣପୂର ଏ ସମ୍ପର୍କରେ ଯଥାର୍ଥ ଏବଂ ପ୍ରାମାଣିକ ବିବରଣୀମାନ ଉପସ୍ଥାପିତ କରିଥିଲେ ମଧ୍ୟ ସେ ସବୁ କବି ବିଶେଷର କପୋଳ ବର୍ଣ୍ଣନା, ପଲ୍ଲବନ ଓ ବିସ୍ତାର ବୋଲି କେହି କେହି ସନ୍ଦେହ ପ୍ରକାଶ କରିଥାନ୍ତି । ଡ: ବିମାନ ବିହାରୀ ମଜୁମଦାରଙ୍କ ମତରେ କୃଷ୍ଣ ଦାସ କବିରାଜଙ୍କ ଉକ୍ତ କଥୋପକଥନର ବର୍ଣ୍ଣନା "ଫୋନୋ ରିପୋର୍ଟ ଥେକେ ମ୍ଳାନ ନୟ ।" ଏହାଦ୍ୱାରା ଡ: ମଜୁମଦାର ସମ୍ପୂର୍ଣ୍ଣ ସଜ୍ଞାନ ଭାବରେ ନବ୍ୟ ବୈଷ୍ଣବ ଧର୍ମ ଇତିହାସରେ ରାୟ ରାମାନନ୍ଦ ଶ୍ରୀଚୈତନ୍ୟ ମିଳନର ଗୁରୁତ୍ୱକୁ ନ୍ୟୂନ ପ୍ରତିପାଦନ କରିବା ପାଇଁ ଯତ୍ନ କରିଥିବା ଅନୁମିତ ହୁଏ । ମାତ୍ର ଉକ୍ତ ମହା-ମିଳନର ଜଣେ ପ୍ରତ୍ୟକ୍ଷଦର୍ଶୀ ରାୟ ରାମାନନ୍ଦଙ୍କର ଅନୁଗାମୀ ଆଲୋଚ୍ୟ କବି ମାଧବ ପଟ୍ଟନାୟକଙ୍କର ଏତଦ ବିଷୟକ ବର୍ଣ୍ଣନା ଉକ୍ତ ଘଟଣା ଉପରେ ଯଥାଯଥ ଓ ପ୍ରାମାଣିକ ବର୍ଣ୍ଣନାର ସମୁଜ୍ଜ୍ୱଳ ଆଲୋକ ନିକ୍ଷେପ କରିଅଛି । ଉଭୟେ ଯେତେବେଳେ ଚରମ ତତ୍ତ୍ୱରେ ପହଞ୍ଚିଲେ ସେତେବେଳେ ଦିବ୍ୟ ଉନ୍ମାଦଗ୍ରସ୍ତ ଶ୍ରୀଚୈତନ୍ୟ ରାଧା ଭାବର ମହାନତା ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନଲାଭ କରିବାକୁ ଜିଜ୍ଞାସା କଲେ —

"ପ୍ରଭୁ ବୋଲନ୍ତି ଭକ୍ତ କହ ।
ରାଧାର ଭାବ ଯେ ଦୁଃସହ ॥
ଶୁଣିବି ତୋର ମୁଖୁ ମୁହିଁ ।
ସଂଶୟ ଗଣ୍ଠି ବି ଫିଟେଇ ॥

ରାମ ରାୟ ଯେ ଶ୍ଲୋକ ପଢ଼େ ।
ପଦ୍ମଲବ୍ଧ ରାଗ ନୟନ ଜଙ୍ଗ ଭେଲେ ॥
କମ୍ପଇ ପ୍ରଭୁର ସର୍ବାଙ୍ଗ ।
ଲୋତକେ ତିନ୍ତାଇଣ ବକ୍ଷ ।" (୪ମ ଅ:)

ଭକ୍ତ କର୍ଣ୍ଣପୂର ବା କୃଷ୍ଣ ଦାସ କବିରାଜ ପରବର୍ତ୍ତୀ ସମୟରେ ଉକ୍ତ ଆଳାପ ଆଲୋଚନାରେ ଆପଣା ଆପଣାର ପାଣ୍ଡିତ୍ୟକୁ ସଂଯୋଜିତ କରିବାର କଟତ୍ୱପୂର୍ଣ୍ଣ ପ୍ରଯତ୍ନ କରିଥିଲେ ମଧ୍ୟ ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାର ସାରଲ୍ୟ ଏକାନ୍ତ ସତ୍ୟର ଆଲୋକରେ ସମୁଜ୍ଜ୍ୱଳ ଥିବା ଜଣାଯାଏ ।

ନୀଳାଚଳରେ ଶ୍ରୀଚୈତନ୍ୟଙ୍କର ପ୍ରଥମ ଦେଢ଼ ବର୍ଷର ଅବସ୍ଥାନ ଓ କାର୍ଯ୍ୟକଳାପ ଅତ୍ୟନ୍ତ ଶାନ୍ତ ଓ ସୁଗମ୍ଭୀର ଥିଲା । ଗଜପତିଙ୍କ ନିର୍ଦ୍ଦେଶରେ ମନ୍ଦିର ନିକଟବର୍ତ୍ତୀ କାଶୀ ମିଶ୍ରଙ୍କର ବାସଗୃହର ଗୋଟିଏ ଅଂଶ ଚୈତନ୍ୟଙ୍କର ସ୍ଥାୟୀବସ୍ଥାନ ଲାଗି ଦିଆଯାଇଥିଲା । ପୁରୀରେ ଶ୍ରୀଚୈତନ୍ୟ କାଶୀ ମିଶ୍ରଙ୍କର ଏହି ଗମ୍ଭୀରାରେ ହିଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ ଏକାଦିକ୍ରମେ ବାସ କରିଥିଲେ । ତାଙ୍କର ପୁରୀ ଅବସ୍ଥାନର ପ୍ରଥମାର୍ଦ୍ଧ ଥିଲା ତାଙ୍କ ଅନ୍ତ୍ୟଲୀଳାର ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ସମୟ । ଧୀର ଗମ୍ଭୀର ଓ ସ୍ଥିର ଭାବରେ ସେ ପ୍ରତ୍ୟହ ଲକ୍ଷେ ନାମ ଜପ କରୁଥିଲେ ଏବଂ ଅପୂର୍ବ ଆନନ୍ଦ ଉଲ୍ଲାସରେ କୃଷ୍ଣଲୀଳା, କୀର୍ତ୍ତନ ଭଜ ଓ ରାଧାଭାବ ଆସ୍ୱାଦନ ପୂର୍ବକ ସେ ସମୟ ଅତିବାହିତ କରୁଥିଲେ । ତାଙ୍କର ଶୁଦ୍ଧପୂତ ନୀତିମୟ ଜୀବନ ଦର୍ଶକଙ୍କ ମନରେ ଗଭୀର ପ୍ରଭାବ ସୃଷ୍ଟି କରୁଥିଲା । ଏବଂ ଏହି କାରଣରୁ ଲୋକେ ତାଙ୍କୁ ସାଧାରଣ ମନୁଷ୍ୟ ଦୃଷ୍ଟିରେ ନ ଦେଖି ଦେବତା ରୂପେ ଗ୍ରହଣ କରୁଥିଲେ । ଏ ସମ୍ପର୍କରେ ଭକ୍ତ ଲେଖିଛନ୍ତି —

"ରାଧାର ଭାବ ଆସ୍ୱାଦନେ ।
ଜନ୍ମ ହୋଇଲେ ମର୍ତ୍ତ୍ୟ ଭୂମେ ॥
କଟିରେ ମେଖଳାଏ ବାନ୍ଧେ ।
ସୂତକୁ ଗଣ୍ଠି ଆଳେ ଛନ୍ଦେ ॥
ନିତ୍ୟ ଲକ୍ଷେ ନାମ ଜପଇ ।
ପ୍ରହରୁ କୀର୍ତ୍ତନ କରଇ ॥
ସୁଖେ ବଞ୍ଚଇ କୃଷ୍ଣ ରସେ ।
ଉତ୍ତର ପାରୁଶ ମଣ୍ଡପେ ॥

ପରେ ପଞ୍ଚସଖା ଅନ୍ତର୍ଗତ ବଳରାମ ଦାସ ଯାତ୍ରା ବେଳେ ବଡ଼ ଦାଣ୍ଡରେ ରଥ ଉପରକୁ ଉଠି ଠାକୁରଙ୍କୁ ଫୁଲମାଳ ପିନ୍ଧାଇ ଦେଇ ଚନ୍ଦନ ଲେପିବାକୁ ଚାହିଁଲେ । ରଥ ଉପରେ ସେବକମାନେ ବଳରାମଙ୍କୁ ଏଥିପାଇଁ କେବଳ ବାରଣ କଲେନାହିଁ, ଧିକ୍କାର ମଧ୍ୟ କଲେ । "ଏଥିରେ ତୋର ଅଧିକାର ନାହିଁ" ବୋଲି କହି ତାଙ୍କୁ ରଥ ଉପରୁ ତଳକୁ ଚାଲିଯିବା ପାଇଁ ଜୋର କଲେ । ବଳରାମ ନିଜକୁ ଅପମାନିତ ହୋଇ ରଥ ଉପରୁ ଓହ୍ଲାଇ ଆସି ସିଧା ସମୁଦ୍ର କୂଳକୁ ଚାଲିଗଲେ । ସମୁଦ୍ର ତଟର ବାଲିରେ ଏକ ରଥ ତିଆରି କରି ଠାକୁରଙ୍କୁ ବାଲି ରଥରେ ବିଜେ କରିବା ପାଇଁ ପ୍ରାଣର ବ୍ୟାକୁଳତାରେ ନିବେଦନ କଲେ । ସତକୁ ସତ ବାଲି ରଥରେ ଠାକୁର ବିଜେକରି ବଳରାମଙ୍କର ଭକ୍ତିଭାବ ଗ୍ରହଣ କଲେ; ମାତ୍ର ବଡ଼ଦାଣ୍ଡରେ ରଥମାନ ଚାଲିଲନାହିଁ । ଯାତ୍ରୀମାନଙ୍କ ଭିତରେ ବଡ଼ଦାଣ୍ଡରେ ଚହଳ ପଡ଼ିଗଲା । କବି ଏ ପ୍ରସଙ୍ଗରେ ଲେଖିଛନ୍ତି —

"ବାଲିରେ ଏକ ରଥ କଲା ।
ଡାକିଲା ଆସ ନନ୍ଦ ବାଳା ॥
ଆସ ହୋ ବଳରାମ ଭାଇ ।
ସୁଭଦ୍ରା ଭଉଣୀଙ୍କୁ ନେଇ ॥
ତିନି ପ୍ରତିମା ବିଜେ ହେଲେ ।
ବାଲିରଥେ ପୂଜା ପାଇଲେ ॥

କବି ବଳରାମ ଦାସ ନିଜେ ଏ ଘଟଣା ତାଙ୍କ "ଭାବ ସମୁଦ୍ର"ରେ ବର୍ଣ୍ଣନା କରିଛନ୍ତି । ମାଧବ ପଟ୍ଟନାୟକ ମଧ୍ୟ ଏହାର ଯଥାର୍ଥ ବିବରଣୀ ପ୍ରଦାନ କରିଛନ୍ତି । ଲୁଣ୍ଡିକୁ ଦିନ ସାରା ଧଳଲ ଯତ୍ନ ସତ୍ତ୍ୱେ ବଡ଼ଦାଣ୍ଡରେ ଯାତ୍ରୀମାନଙ୍କ ଦ୍ୱାରା ରଥ ଟଣାଯାଇ ପାରିଲାନାହିଁ । ରାତିରେ ସ୍ୱପ୍ନରେ ରାଜାଙ୍କୁ ଠାକୁର କହିଲେ—ସମୁଦ୍ରତଟକୁ ଯାଇ ଭକ୍ତ ବଳରାମଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ । ତାହା ହେଲେ ବଡ଼ଦାଣ୍ଡରେ ରଥ ଚାଲିପାରେ । ରାଜା ସ୍ୱୟଂ ବିଶିଷ୍ଟ ଭକ୍ତ ପଣ୍ଡା ସେବକ ପ୍ରମୁଖଙ୍କୁ ନେଇ ଘଣ୍ଟ, ମୃଦଙ୍ଗ, ପେଁକାଳୀ, ଭେରୀ ତୂରୀର ନାଦ ମଧ୍ୟରେ ସମୁଦ୍ରତଟରେ ଉପସ୍ଥିତ ହୋଇ ବଳରାମଙ୍କର ଯଥୋଚିତ ସମ୍ବର୍ଦ୍ଧନା କଲେ ଏବଂ ତାଙ୍କ ପାଦତଳେ ପଡ଼ି ବଡ଼ଦାଣ୍ଡକୁ ବିଜେକରିବା ପାଇଁ ନିବେଦନ କଲେ । ବଳରାମ ରାଜାଙ୍କ ଗହଣରେ ବଡ଼ଦାଣ୍ଡକୁ ଆସି ରଥ ଉପରକୁ ଉଠିଲେ । ଠାକୁରଙ୍କୁ ମାଳା ପିନ୍ଧାଇ ଦେଇ ସର୍ବାଙ୍ଗରେ ଚନ୍ଦନ ଲେପନ କଲେ । ତାପରେ ରଥ ସ୍ୱାଭାବିକ ଭାବରେ ଗତି କରିବାରେ ଆଉ କୌଣସି ବାଧା ରହିଲାନାହିଁ । ଏହି ଲୋମହର୍ଷଣକାରୀ ଘଟଣାର ଭକ୍ତି ଭାବର ମହାତ୍ମ୍ୟ ଆଜିର ଭୌତିକ ଦୃଷ୍ଟିରେ

ହୁଏତ ଅସ୍ୱାଭାବିକ ମନେହୋଇପାରେ, କିନ୍ତୁ ସେ ସମୟର ବର୍ଣ୍ଣନାରୁ ଏହାର ଯଥାର୍ଥତା ଅନୁଭୂତ ହୁଏ । କବି ଏ ସମ୍ପର୍କରେ ଲେଖିଛନ୍ତି —

"ପ୍ରଭୁଙ୍କୁ ମାଳା ସେ ଅର୍ପିଲା ।
ଚନ୍ଦନେ ତନୁ ଜଡ଼ାଇଲା ॥
ଘଣ୍ଟ ମୃଦଙ୍ଗ ବଜ ବେଳେ ।
ବଡ଼ଦାଣ୍ଡେ ସେହୁ ଉଚ୍ଛୁଳେ ॥
ରଥ ଚଳଇ ଘିଞ୍ଜି ଘିଞ୍ଜି ।
ମାଧବ ଭକ୍ତେ ପାଦେ ପଡ଼ି ॥"

ଗ୍ରେଟ ହରି ଦାସ ଓ ମାଧବ ଦାସୀ ପ୍ରସଙ୍ଗରେ ଅନୁଚିତ ପ୍ରଣୟ କାହାଣୀ କୃଷ୍ଣ ଦାସ କବିରାଜ ଲେଖିଛନ୍ତି । ମାଧବ ପଟ୍ଟନାୟକ ମଧ୍ୟ ଏହାର ବିବରଣୀ ପ୍ରଦାନ କରିଛନ୍ତି । ଏହି ଘଟଣାରେ ଗ୍ରେଟ ହରି ଦାସ କିଛି ମହାପ୍ରଭୁ ହାତରୁ ମାଡ଼ ଖାଇଲେ । ଚୈତନ୍ୟଙ୍କ କାନକୁ ଏ କଥା ଯିବାରୁ ସେ ଗ୍ରେଟ ହରି ଦାସର ମୁହଁ ଦେଖିବେ ନାହିଁ ବୋଲି କହିଲେ । ଗ୍ରେଟ ହରି ଦାସ ଲଜ୍ଜା ଓ ଅପମାନରେ ପୁରୀ ଛାଡ଼ି ଚାଲିଗଲେ ଓ ପରେ ଗଙ୍ଗାରେ ଝାସ ଦେଲେ ବୋଲି ପୁରୀରେ ଶୁଣାଗଲା । ମାଧବୀ ଦାସୀଙ୍କର ଆଗମନକୁ ମଧ୍ୟ ଚୈତନ୍ୟ ବାରଣ କଲେ । ଏହି ଘଟଣାରେ ବିକ୍ଷିପ୍ତ ହୋଇ ଚୈତନ୍ୟଙ୍କର ବଙ୍ଗୀୟ ଅନୁଗାମୀ କେତେଜଣ ଚୈତନ୍ୟଙ୍କୁ ଛାଡ଼ି ପୁରୀରୁ ଚାଲିଗଲେ । ଶିବାନନ୍ଦ ସେନ ଚୈତନ୍ୟଙ୍କୁ କହିଲେ, "ତୁମ ପକ୍ଷରେ ଏହା ଭଲକଥା ହେଲନାହିଁ । ତୁମ ଅବଲମ୍ବନରେ ସେମାନେ ଏଠାରେ ରହିଥିଲେ । ସେମାନେ ଚାଲିଯିବା ତୁମ ପାଇଁ ସୁନ୍ଦର ହେଲନାହିଁ । ତେଣୁ ସେମାନଙ୍କୁ ପୁଣି ଫେରାଇଆଣିବାକୁ ହେବ ।" ଚୈତନ୍ୟ ଯାଜପୁରକୁ ସଙ୍ଗରେ ଯିବାପାଇଁ ଜଗନ୍ନାଥ ଦାସଙ୍କୁ ଡାକିଲେ । ଦାସେ ଏଥିକୁ ସ୍ପଷ୍ଟ ମନା କରିଦେଲେ । ତେଣୁ ଚୈତନ୍ୟଙ୍କର ଯିବାର ନୋହିଲା । ମାତ୍ର ଏହାର ବିକଳ୍ପ ରୂପେ ଚିଠାଟିଏ ପ୍ରେରଣ କରିବା ପାଇଁ ସ୍ଥିର ହେଲା । ଚୈତନ୍ୟ ଜଗନ୍ନାଥ ଦାସଙ୍କୁ କହିଲେ ଚିଠାଟିଏ ଲେଖିଦେବା ପାଇଁ । ଦାସେ ଯାହା ଲେଖିଲେ ତାହା ମାତ୍ର ଆଠଗୋଟି ଶ୍ଳୋକ । ଶିବାନନ୍ଦ ସେନ ଏହି ଅଠଟି ଶ୍ଳୋକ ସମ୍ବଳିତ ଚିଠାଟି ନେଇ ଯାଜପୁର ପର୍ଯ୍ୟନ୍ତ ଗଲେ । ସେଠାରେ ବଙ୍ଗୀୟ ଅନୁଗାମୀମାନଙ୍କୁ ତାହା ଦେଲେ ଏବଂ ପୁରୀ ଫେରିଯିବା ପାଇଁ ଚୈତନ୍ୟଙ୍କର ଇଚ୍ଛା ନିବେଦନ କଲେ । ଯାଜପୁରରୁ କେହି ଫେରିଆସିଲେ ନାହିଁ ବରଂ ବଙ୍ଗ ଓ ନବଦ୍ୱୀପକୁ ସେମାନେ ଚାଲିଗଲେ ଏବଂ ସେଠାରେ ଚୈତନ୍ୟଙ୍କ ଲିଖିତ ଏହି ତଥାକଥିତ ଆଠଗୋଟି ଶ୍ଳୋକକୁ ଦେଖାଇଲେ ଏବଂ ଏ ସବୁ ଚୈତନ୍ୟଙ୍କ ରଚିତ ଅଷ୍ଟଶ୍ଳୋକ ବୋଲି ପ୍ରଚାର କରାଗଲା । ଅଦ୍ୟାପି ଏହି ଆଠଗୋଟି ଶ୍ଳୋକ ଶ୍ରୀଚୈତନ୍ୟ ରଚିତ ଶିକ୍ଷାଷ୍ଟକ ରୂପେ ପ୍ରଚଳିତ ।

ମାତ୍ର ଏହାର ପ୍ରକୃତ ଲେଖକ ଯେ ଜଗନ୍ନାଥ ଦାସ—ଏ ବିଷୟ ଘଟଣାସବର ଅନ୍ଧକାର ମଧ୍ୟରେ ଲୁଚିଗଲା । ମାଧବ ପଟ୍ଟନାୟକ କବି ସ୍ୱାମୀର ଅଷ୍ଟଶ୍ଳୋକ ନାମରେ ଏହି ଆଠଗୋଟି ଶ୍ଳୋକର ଉଲ୍ଲେଖ କରିଛନ୍ତି ଏବଂ ପ୍ରତ୍ୟେକର ଓଡ଼ିଆ ଅନୁବାଦ ମଧ୍ୟ ଦେଇଛନ୍ତି । ଏହି ତଥାକଥିତ ଚୈତନ୍ୟ ରଚିତ ଶିକ୍ଷାଷ୍ଟକର ତୃତୀୟ ଶ୍ଳୋକ ଓ ତାହାର ମାଧବ ପଟ୍ଟନାୟକ ରଚିତ ଅନୁବାଦ ତଳେ ଦିଆଗଲା —

"ତୃଣା ଦପି ସୁନୀଚେନ ତରୋରିବ ସହିଷ୍ଣୁନା ।
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହରିଃ ।" । ୩ ।

"ତୃଣଠୁଁ ନିମ୍ନ ବୋଲିଥ ॥ ବୃକ୍ଷ ଠାରୁଁ ସହିଷ୍ଣୁ ହୁଅ ।
ଆପଣା ସୁଖ ଦୁଃଖ ଛାଡ଼ି ॥ ଅପରେ ପ୍ରେମ ଦିଅ ଢାଳି ।
ସର୍ବଦା ବୋଲ ହରିନାମ ॥ ଏଥିଠୁଁ ନାହିଁ ଅନ୍ୟ ଧାମ ।"

ଅଷ୍ଟମ ଶ୍ଳୋକ ଓ ତାହାର ମାଧବ ପଟ୍ଟନାୟକକୃତ ଅନୁବାଦଟି ଏହିପରି—

"ଆଶ୍ଳିଷ୍ୟ ବା ପାଦରତାଂ ପିନଷ୍ଟୁ ମା
ମଦର୍ଶନା ନ୍ମର୍ମହତାଂ କରୋତୁ ବା ।
ଯଥା ତଥା ବା ବିଦଧାତୁ ଲମ୍ପଟୋ ।
ମତ୍ ପ୍ରାଣନାଥସ୍ତୁ ସଏବ ନାପରଃ ॥ ୮ ॥

" ହେ କୃଷ୍ଣ ! ମୋତେ କଷ୍ଟଦିଅ ॥ ଅଥବା ତୋ ପାଦେ ଖଟାଅ
କରତୁ ମୋତେ ଆଲିଙ୍ଗନ ॥ ଅଥବା ନ ଦିଅ ଦର୍ଶନ ।
ପ୍ରେମରେ ରତି ମତ ହେଲ ॥ ଯାପନ କରି ଭିନ୍ନ ଥଳ ।
ତଥାପି ତୁ ମୋର ପରାଣ ॥ ତୋ ଠାରୁଁ ଗତିନାହିଁ ଆନ ।
ରାଧାର ଭାବ ଏ ସରବ ॥ ବର୍ଣ୍ଣିଲା ସ୍ୱାମୀ ଆଠଶ୍ଳୋକେ ।

ମାଧବୀ ଦାସୀ—ଶ୍ରେଷ୍ଠ ହରି ଦାସ ଘଟଣାର ପରବର୍ତ୍ତୀ ସମୟରେ ଶାସନୀ ବ୍ରାହ୍ମଣ ଜଗନ୍ନାଥ ଦାସ ଶୂଦ୍ର ବଳରାମ ଦାସଙ୍କ ଠାରୁ ମନ୍ତ୍ର ଦୀକ୍ଷା ନେବା ପ୍ରସଙ୍ଗରେ ଯେଉଁ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା, ତାହାର ଉତ୍ତରରେ ଜଗନ୍ନାଥ ଦାସ ଘୋଷଣା କଲେ —

"ସ୍ୱାମୀ ବୋଇଲେ ବଇଷ୍ଣବେ ॥ ଦୋଷ ନ ବାଧଇଟି ଲବେ ।
କିବା ଶୂଦ୍ର କିବା ବ୍ରାହ୍ମଣ ॥ ବୈଷ୍ଣବ ସମସ୍ତ ସମାନ ।

ନୀଚ ସ୍ଥାନରେ ଥିଲେ ରତ୍ନ ॥ ଗ୍ରହଣ କରିବା ଟି ଧର୍ମ ।
ଏହୁ ମୋହର ମନ ବୁଝେ ॥ ଶୁଣୁ କଲି ବଳରାମରେ ।
ଏଥକୁ ତୁ କର୍ପା ତରଜୁ ॥ ରାଗ ମାର୍ଗେଣ ଆମ୍ଭେ ଭଜ ।"

(୭ମ ଅଧ୍ୟାୟ)

ଶ୍ରେଷ୍ଠ ହରି ଦାସ ଓ ମାଧବୀ ଦାସୀ ପ୍ରସଙ୍ଗରେ ଯେଉଁ ଅନୈତିକତା ଓ ସାମାଜିକ ସ୍ତରରେ ଭ୍ରଷ୍ଟାଚାର ଓ ସ୍ଖଳନର ଯେଉଁ ଇଙ୍ଗିତ ଫୁଟିଉଠିଲା, ତାହା ନୂତନ ଅଭ୍ୟୁତ୍ଥିତ ରାଗ ମାର୍ଗର ଭଜନ ସାଧନ ପାଇଁ ଘୋର ପ୍ରତ୍ୟବାୟ ସ୍ୱରୂପ ମନେହେଲା । ତେଣୁ ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସ ସମ୍ମିଳିତ ଭାବରେ ଏଥିପାଇଁ କଠୋର ଧାର୍ମ ଦାୟିକ ବ୍ୟବସ୍ଥାମାନ ପ୍ରବର୍ତ୍ତନ କରିବାକୁ ବାଧ୍ୟ ହୋଇଥିବାର ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଏ । ସେମାନେ କେବଳ ଶିଷ୍ୟଗୋଷ୍ଠୀକୁ ମାଧବୀ ଦାସୀଙ୍କର ଆଗମନକୁ ବାରଣ କଲେନାହିଁ, ବରଂ ବଜ୍ରକଠୋର ବାଣୀ ଭକ୍ତମାନଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ କଲେ । ଜଗନ୍ନାଥ ଦାସ କହିଲେ —

"ବୈଷ୍ଣବ ଭାବେ ସ୍ନେହ ହୋଇ ॥ ନାରୀ ସନ୍ନିଧେ ସବୁ ଯାଇ ।
କାଷ୍ଠ ପାଷାଣ ନାରୀ ମୂର୍ତ୍ତି ॥ ବୈଷ୍ଣବେ ଅଦୃଶ ଅଟନ୍ତି ।
ରକତ ମାଉଁସର ଅଙ୍ଗ ॥ ମାଧବୀ ସତ ପରସଙ୍ଗ ।
ଏ କଥା ସତ ପରିମାଣ ॥ ତା ଆଗମନକୁ ବାରଣ ।
ମାଧବୀ ଆଉ ନ ଆଇଲା ॥ ଶିଷ୍ୟଗୋଷ୍ଠୀ ସଙ୍ଗ ଛାଡ଼ିଲା ।"

ଏହି ପ୍ରସଙ୍ଗର ବର୍ଣ୍ଣନାରେ ମାଧବ ପଟ୍ଟନାୟକ ନିର୍ଦ୍ଦିଷ୍ଟ କେତେକ ବିଷୟର ଅବତାରଣା କରିଅଛନ୍ତି । ସେତେବେଳେ ଶ୍ରେଷ୍ଠ ହରି ଦାସ ଘଟଣାକୁ ନେଇ ପୁରୀର ଶିଷ୍ୟ ଗୋଷ୍ଠୀରେ ଯେଉଁ ସାଧାରଣ ସର୍ବସମ୍ମତ ଭାବ ପ୍ରକାଶ ପାଇଲା, କବି ବୋଧହୁଏ ତାହାର ଉଦ୍ଦେଶ୍ୟ କହିବାକୁ ଯାଇ ଲେଖିଛନ୍ତି, ଶ୍ରୀଚୈତନ୍ୟଙ୍କ ସଙ୍ଗୀ ସହଚର ସମସ୍ତେ ଚୈତନ୍ୟ ନ ଥିଲେ —

"ପ୍ରଭୁ ସଙ୍ଗତ ଗୋଡ଼ୀୟାଏ ॥ ସକଳ ଚଇତନ୍ୟ ନୋହେ ।
ସକଳ ମୃଗର ନାଭିରେ ॥ କସ୍ତୁରୀ ନ ଥାଇଟି ଭଲେ ।
ସକଳ ଅରଣ୍ୟେ ଚନ୍ଦନ ॥ ନ ଥାଇ ଜାଣ କଦାଚନ ।
ସକଳ ଗୌଡ଼ୀୟା ବୈଷ୍ଣବ ॥ ନୋହନ୍ତି ପ୍ରଭୁର ସ୍ୱରୂପ ।

ଗୋଟିଏ ପ୍ରସିଦ୍ଧ ସଂସ୍କୃତ ଶ୍ଲୋକର ଛାୟାପାତ ହୋଇଥିଲେ ମଧ୍ୟ ଏଠାରେ କବିଙ୍କର ଆଲଂକାରିକ ଛଟା ଓ ବର୍ଣ୍ଣନା ଭଙ୍ଗୀ ଅତ୍ୟନ୍ତ ମନୋମୁଗ୍ଧକର ଏବଂ ଦୃଷ୍ଟାନ୍ତ ସାହାଯ୍ୟରେ ପ୍ରତିପାଦ୍ୟ ବିଷୟକୁ ସରସ କରିବାର ଭାବ ଏକାନ୍ତ ଆସ୍ୱାଦ୍ୟ ।

କୃଷ୍ଣଦେବ ରାୟ ସହିତ ଓଡ଼ିଆ ସେନାବାହିନୀର ଦୀର୍ଘ ସାତ ବର୍ଷକାଳ ଯୁଦ୍ଧ ଚାଲିଥିଲା (ଖ୍ରୀ: ୧୫୧୨-୧୫୧୯)। ଏହି ଯୁଦ୍ଧ କାଳରେ କୋଣ୍ଡାଭିଡ଼ ଦୁର୍ଗରୁ ରାଜପୁତ୍ର ବୀରଭଦ୍ରଦେବଙ୍କୁ ବନ୍ଦୀକରି ନିଆଯାଇଥିଲା। ଏବଂ ବିଜୟନଗର ସାମ୍ରାଜ୍ୟର ସୁଦୂର ଦକ୍ଷିଣ ସୀମାବର୍ତ୍ତୀ ବେଲୁରରେ ତାଙ୍କୁ ବନ୍ଦୀ ଅବସ୍ଥାରେ ରଖାଯାଇଥିଲା। କୌତୁହଳବଶତଃ ଜଣେ ସାଧାରଣ ସୈନିକ ସହିତ ଖଣ୍ଡା ଖେଳିବା ଲାଗି କୃଷ୍ଣଦେବ-ରାୟ ଯେତେବେଳେ ବୀରଭଦ୍ରଙ୍କୁ ବାଧ୍ୟ କଲେ ଏବଂ ଆଦେଶ ଅମାନ୍ୟ କଲେ ଦଣ୍ଡ ଭୋଗିବୁ ବୋଲି କହିଲେ, ସେତେବେଳେ ମନସ୍ୱୀ ବୀର ଗଜପତି ପୁତ୍ର ବୀରଭଦ୍ରଦେବ ନିନ୍ଦା ଓ ଅପମାନ ବୋଧକଲେ। ନିଜ ଗ୍ରୀବାରେ ନିଜେ ଖଣ୍ଡା ଭୁଷି ହୋଇ ପ୍ରାଣ-ତ୍ୟାଗକଲେ। ଏହି ଘଟଣାରେ କୃଷ୍ଣଦେବ ରାୟ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ। ଏହି ଲୋମହର୍ଷଣକାରୀ ହୃଦୟ ବିଦାରକ ଦୃଶ୍ୟ ମାଧବ ପଟ୍ଟନାୟକ ବର୍ଣ୍ଣନା କରିବାକୁ-ଯାଇ ଲେଖିଛନ୍ତି —

"କୋଷରୁ ଖଡ୍ଗ ମୁକୁଳାଇ ॥ ଆପଣା ବକ୍ଷରେ ମାରଇ।
ପଡ଼ିଲ ତଳେ ଗଳଗାଜି ॥ କୃଷ୍ଣରାୟ ଚକ୍ଷୁ ମୁଦ୍ରିଛି।
ବୋଇଲ କେତେ କର୍ମ କଲ ॥ ରାଜାର ସନ୍ତତି ଏ ଭଲ।
ଭଦ୍ରଦେବଙ୍କୁ ଟେକିଧରି ॥ ରାଜା ଜନମାନେ ହକାରି।
ବୋଇଲ ଧନ୍ୟ ବୀରଭଦ୍ର ॥ ଧନ୍ୟ ତୋହର ତାତ ମାତ।
ସାମାନ୍ୟ କଥା ନ ସହିଲୁ ॥ ଗଜପତି ପଣ ରଖିଲୁ।
ବୋଲି ବହୁତ ଦୁଃଖ କଲ ॥ ଗଜପତିଙ୍କୁ ବାର୍ତ୍ତା ଦେଲ।
ଚମ୍ପାଦେବୀ ଯେ ପାଟରାଣୀ ॥ ରାୟର ଅଟଇ ବନ୍ଦିନୀ।
ଗଜପତି ଯେ ଚିନ୍ତାକଲେ ॥ ମନରେ ପ୍ରଭୁଙ୍କୁ ଧ୍ୟାଇଲେ।
ରଖ ହୋ ପ୍ରଭୁ ଜଗନ୍ନାଥ ॥ ତୁ ଅଟୁ ସର୍ବ ପୁରୁଷାର୍ଥ।
ରାୟ ଯେ ବାର୍ତ୍ତା ପଠାଇଲ ॥ • ବୀରଭଦ୍ରର ମୃତ୍ୟୁ ହେଲ।

ଖ୍ରୀ: ୧୫୧୯ରେ କୃଷ୍ଣଦେବ ରାୟଙ୍କ ସହିତ ଗଜପତିଙ୍କର ସନ୍ଧିହେବା ବେଳକୁ ଗଜପତି ଯେଉଁ ସମସ୍ତ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ, ତାହାର ସାକ୍ଷ୍ୟ ସେ ସମୟର ଇତିହାସ ବହନ କରିଅଛି। ଏହି ସନ୍ଧି ପରେ ରାଜ୍ୟ ଓ ପୁତ୍ର ସନ୍ତାନହରା ଗଜପତି ଅତ୍ୟନ୍ତ ଗ୍ଲାନି ଓ ଦୁଃଖରେ ଭାଙ୍ଗି ପଡ଼ିଲେ। ମନର ଶାନ୍ତି ସମ୍ପାଦନା ଲାଗି ସେ ନୀଳାଚଳରେ ସମବେତ ବୈଷ୍ଣବମାନଙ୍କର ଶରଣାପନ୍ନ ହେଲେ। କବି ଏହି ଘଟଣାରେ ଗଜପତିଙ୍କର ମନୋବେଦନା ଓ ଗ୍ଲାନିର ଶ୍ରେଷ୍ଠ ପରିଚୟ ଦେଇ ଲେଖିଛନ୍ତି —

"କ୍ଷେତ୍ରକୁ ଲେଉଟି ଆଇଲେ ।। କେତେକ ବର୍ଣ୍ଣନ ସେ କଲେ ।
ପୁଣି ଯେ ବଳରାମ ଦାସ ।। ହସ୍ତାଇ ଆଣିଲେ ପାରୁଶ ।
ବୋଇଲେ ଭକ୍ତ କଥା କହ ।। ପ୍ରଭୁଙ୍କୁ ଏ ଥାନେ ତକାଅ ।
କୀର୍ତ୍ତନ କରହେ ମୋ ପାଶେ ।। ମୋହର ଭକତ ବଶ୍ୱାସେ ।
କୃଷ୍ଣର ନାମକି ଶୁଣାଅ ।। ହୃଦକୁ ଆତପ ଛୁଟାଅ ।
ତୋର କୀର୍ତ୍ତନ ନୃତ୍ୟ ରସ ।। ଦେଖିତେ ମୋହର ମୁହାଁସ ।
ଭାଗବତ ତତ୍ତ୍ୱ ସେ ଶୁଣିଲେ ।। ମନକୁ କେତେ ପ୍ରବୋଧିଲେ ।

ଏହାର ପରବର୍ତ୍ତୀକାଳରେ ଗଜପତିଙ୍କର ବୈଷ୍ଣବ ଭାବାନୁସରଣ ଓ ଭଜନ କୀର୍ତ୍ତନରେ ମନପ୍ରାଣ ଦେବାର ପନ୍ଥା ଅବାରିତ ହୋଇପଡ଼ିଲା । ରଥ ଆଗରେ ଚୈତନ୍ୟ ସମେତ ପଞ୍ଚସଖାଙ୍କର କୀର୍ତ୍ତନ ନୃତ୍ୟ ରାଜାଙ୍କର ହୃଦୟ ସ୍ପର୍ଶ କଲା ଏବଂ ୧୫୧୯ର ପରବର୍ତ୍ତୀ ସମୟର ରଥଯାତ୍ରା ଅବକାଶରେ ରଥ ଆଗରେ ଚୈତନ୍ୟଙ୍କର କୀର୍ତ୍ତନ ନୃତ୍ୟ ଦେଖି ଗଜପତିଙ୍କର ହୃଦୟ ବିଗଳିତ ହେଲା । ଚୈତନ୍ୟ ଯେ ସାଧାରଣ ମନୁଷ୍ୟ ନୁହନ୍ତି, ଏ କଥା ସେ ଅନୁଭବ କଲେ । ଲକ୍ଷ ଲକ୍ଷ ଯାତ୍ରୀ ମେଳରେ ଏହି ରଥଯାତ୍ରା ଅବକାଶରେ ସେ ଚୈତନ୍ୟଙ୍କୁ ସାକ୍ଷାତ ପ୍ରଭୁ ବୋଲି ରାଜକୀୟ ଘୋଷଣା ପ୍ରକାଶ କଲେ । ଏ ବିଷୟରେ ମାଧବ ପଟ୍ଟନାୟକଙ୍କର ବର୍ଣ୍ଣନାଟି ଏହିପରି —

"ବଳରାମ ଅଚ୍ୟୁତ ଅନନ୍ତ ।। ଯଶୋବନ୍ତ ଯେ ଜଗନ୍ନାଥ ।
ମଧ୍ୟେଣ ଚୈତନ୍ୟ ରହଇ ।। କୀର୍ତ୍ତନ ନୃତ୍ୟ ସେ କରଇ ।
ରଥର ବେଳ ଆସିହେଲା ।। ନୃତ୍ୟ ଯେ ରଥ ଆଗେ କଲା ।
ଯେ କହୁ ପ୍ରଭୁର ଯେ ନୃତ୍ୟ ।। ରସରାଜ ସେ ମହାଭାବ ।
କ୍ଷଣକେ ବଢ଼ଇ ଛୁଡ଼ଇ ।। କ୍ଷଣକେ କାହିଁ ସେ ଲୁଚଇ ।
ରାଧାର ସ୍ୱଭାବଟି ଯେତେ ।। କ୍ଷଣକେ ନୟନୁ ଲୋତକେ ।
ଉଦ୍ଦାମ ଭାବ ନୃତ୍ୟ ଦେଖି, ।। ନୃପମଣି ସେ ଅନୁରାଗୀ ।
ବୋଲଇ ଏ ନୋହେ ମାନବ ।। ସାକ୍ଷାତ ଅଟେ ରାଧାଭାବ ।
ରାମ ରାୟ ଯେ ଜଣାଇଲେ ।। ଏ ନୋହେ ମନୁଷ୍ୟଟି ଭଲେ ।
ଦେବତା ଭାବ ଆବେଶଇ ।। ନୃତ୍ୟ ରଙ୍ଗରେ ପ୍ରକଟାଇ ।
ପ୍ରଭୁ ଏ ବୋଲି ବଘୋଷିଲେ ।। ରଥଯାତ୍ରାର ଲୋକ ମେଳେ ।

ରାଜା-ରାଜୁଡ଼ା ଶାସନକାଳରେ ରାଜକୀୟ ଘୋଷଣା ବା ଆଦେଶବିନା ଲୋକରେ କୌଣସି ବିଷୟ ଗୃହୀତ ହେବା ସମ୍ଭବ ନ ଥିଲା । କେତେ ପ୍ରତିଭାଶାଳୀ ବ୍ୟକ୍ତି ରାଜାନୁଗ୍ରହ ବା ରାଜ-ସ୍ୱୀକୃତି ବିନା ଇତିହାସର ଅନ୍ଧକାର ମଧ୍ୟରେ ଲୁଚି ଯାଇଛନ୍ତି

ତାହାର କଳନା ସମ୍ଭବ ନୁହେଁ। ଗଜପତି ପ୍ରତାପରୁଦ୍ରଦେବ ଚୈତନ୍ୟଙ୍କୁ 'ପ୍ରଭୁ' ବୋଲି କେବେ କେବଳ ସ୍ୱୀକାର କରି ନ ଥିଲେ ବା ଚୈତନ୍ୟଙ୍କ ଭଗବତ୍ତ୍ୱକୁ କେବଳ ସ୍ୱୀକୃତି ଦେଇ ନ ଥିଲେ, ବରଂ ଲକ୍ଷ ଲକ୍ଷ ଯାତ୍ରୀ ସମାବେଶରେ ରଥଯାତ୍ରା ଅବକାଶରେ ରଥ ଉପରୁ ଚୈତନ୍ୟଙ୍କୁ 'ପ୍ରଭୁ' ବୋଲି ଘୋଷଣା କରିଥିଲେ। ଏହି ଉଦ୍‌ଘୋଷଣା ସେ ଯୁଗରେ କିଛି କମ୍ ଗୁରୁତ୍ୱପୂର୍ଣ୍ଣ ବିଷୟ ନ ଥିଲା। ଏହାର ପରବର୍ତ୍ତୀକାଳରେ ଶ୍ରୀଚୈତନ୍ୟ ବଙ୍ଗ ଓ ଉତ୍କଳ ଖଣ୍ଡରେ ମହାପ୍ରଭୁ ରୂପେ ପରିଚିତ ହେଲେ ଏବଂ ଶାନ୍ତିପୁର—ନବଦ୍ୱୀପରେ ମଧ୍ୟ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କୁ ଦେବତା ଜ୍ଞାନରେ ପୂଜା କରୁଥିବା ଗୋଟିଏ ଗୋଷ୍ଠୀର ଆବିର୍ଭାବ ଘଟିଲା। ଏହି 'ଗୌର-ପାରମ୍ୟବାଦ'ର ମୂଳ ସୂତ୍ର କିନ୍ତୁ ଶ୍ରୀକ୍ଷେତ୍ର ନୀଳାଚଳ ଧାମରୁ ଉଦ୍‌ଭୂତ। ଏହାକୁ ଅସ୍ୱୀକାର କରିବା ଅର୍ଥ ସତ୍ୟର ଅପଳାପ କରିବା। ମାଧବ ପଟ୍ଟନାୟକ ଏହାର ବିଶଦ ବର୍ଣ୍ଣନା ଦେଇଛନ୍ତି। ଏହାପରେ ଓଡ଼ିଶାରେ ମଧ୍ୟ ଚୈତନ୍ୟ ହେଲେ 'ମହାପ୍ରଭୁ'।

ଶ୍ରୀଚୈତନ୍ୟଙ୍କୁ 'ମହାପ୍ରଭୁ' ବୋଲି ରାଜା ଘୋଷଣା କଲାପରେ ଅନୁମାନତ ଖ୍ରୀ: ୧୫୨୦ ପରେ ଶ୍ରୀଚୈତନ୍ୟଙ୍କ ଠାରେ ମହାଭାବମାନ ପ୍ରକଟିତ ହେଲା। କଟିରେ ସୂତ୍ର ବାନ୍ଧି ଗଣ୍ଠି ପକାଇ ଗଣି ଗଣି ପ୍ରତ୍ୟହ ଲକ୍ଷେନାମ ଜପ କରିବା ସେ ଏହାପରେ ଛାଡ଼ିଲେ। ସେ ପ୍ରତ୍ୟହ ପୂଜା କରୁଥିବା ଗୋବର୍ଦ୍ଧନ ଶିଳା ଶ୍ରୀ ରଘୁନାଥ ଦାସ ଗୋସ୍ୱାମୀଙ୍କୁ ଅର୍ପଣ କଲେ। ତାଙ୍କର ଖାଦ୍ୟପେୟ ଶୟନ ଭ୍ରମଣରେ ଆଉ କିଛି ଯତ୍ନ ରହିଲା ନାହିଁ। ସେ କେତେବେଳେ ଧୂଳିରେ ଗଡ଼ି ପଡ଼ି ରହୁଥିଲେ ତ ଆଉ କେତେବେଳେ ସମୁଦ୍ରବେଳାରେ ସାଗରର ନୀଳିମାକୁ କୃଷ୍ଣଜ୍ଞାନ କରି ଦୌଡ଼ୁଥିଲେ। ସଙ୍କୀର୍ତ୍ତନ ନୃତ୍ୟ ବେଳେ ସେ କ୍ଷଣ କ୍ଷଣକେ ଅଦୃଶ୍ୟ ହୋଇଯାଉଥିଲେ; ପୁଣି କେତେବେଳେ ସେ ବଢ଼ୁଥିଲେ ତ କେତେବେଳେ ଛୁଡ଼ୁଥିଲେ। ଶ୍ରୀଚୈତନ୍ୟଙ୍କ ଭାବୋନ୍ମାଦର ଯେପରି ହୃଦୟସ୍ପର୍ଶୀ ବିବରଣୀ ଦେଇ ମାଧବ ପଟ୍ଟନାୟକ ଦେଇଛନ୍ତି, ତାହାର ଆଉ ପଟାନ୍ତର ଥିଲା ଭଳି ମନେହୁଏନାହିଁ। ଶ୍ରୀଚୈତନ୍ୟ ଯେ ଯଥାର୍ଥରେ ମହାପ୍ରଭୁ ଏବଂ ତାଙ୍କର 'ରସରାଜ ମହାଭାବ' ଉପାଧି ବ୍ୟବହାର ମାନ ଯେ ପ୍ରକୃତରେ ଭକ୍ତ ଗୋଷ୍ଠୀରେ ଆଲୋଡ଼ନ ସୃଷ୍ଟି କରୁଥିଲା—କବି ମାଧବ ପଟ୍ଟନାୟକ ଏହି ଭାବୋନ୍ମାଦମୟ ଅବସ୍ଥାର ଚିତ୍ର ବଡ଼ ଦୃଢ଼ ଭାବରେ ଅଙ୍କନ କରିଛନ୍ତି,—

"ଦେବତା ଭାବ ଆବେଶରେ ॥ ନୃତ୍ୟ କରନ୍ତେ ପ୍ରକଟିଲେ।
ପ୍ରଭୁ ଏ ବୋଲି ବଡ଼ଘୋଷିଲେ ॥ ରଥଯାତ୍ରାର ଲୋକମେଳା।
ସକଳେ ଶୁଣି ହେଲେ ତୋଷ ॥ ଚୈତନ୍ୟ ପ୍ରଭୁ ଏ ବିଶେଷ।
ପ୍ରଭୁର ଯେତେ ମହାଭାବ ॥ କେ ତାହା ବର୍ଣ୍ଣି ପାରିବ।
କେବେ ଅଦ୍ଭୁତ ମହାଭାବେ ॥ ଗମ୍ଭୀରା ଭିତରେ ଯେ ଲବେ।

ଉଠଇ ବସଇ ଗଡ଼ଇ ॥ ହା-କୃଷ୍ଣ ବୋଲି ଉଚ୍ଚାରଇ ।
ନୟନୁ ଲୋତକ ଝରଇ ॥ କୃଷ୍ଣରେ ଅନୁରାଗୀ ହୋଇ ।
କୃଷ୍ଣ ବିରହ ବାଧ ଏଟି ॥ ପ୍ରଭୁର ଶରୀରେ ଉକଟି ।
ଭକ୍ତି ସ୍ୱରରେ ନାମ ଜପ ॥ ଗ୍ରହଇ ଗଣିବା ସ୍ୱଭାବ ।
ମତ୍ତ ହେଲେ ସେ ତନ ନାଏ ॥ ଶିଶୁ ପରାସ୍ତ ଭାବ ବନେ ।
ଦେବେ ଧାଏଁ ସେ ଦେଉଳକୁ ॥ କୃଷ୍ଣ ମୋ ଭାଇଁ ଦେଖିବାକୁ ।
ହା-କୃଷ୍ଣ ବୋଲି ଉଚ୍ଚେ କାନ୍ଦେ ॥ କେବେ ବା ନିଜ ରୂପ ନିନ୍ଦେ ।

× × × ×

କ୍ଷଣ କ୍ଷଣକେ ମୂର୍ଚ୍ଛା ହୋଏ ॥ କେବେ ବା ପ୍ରେମାଶ୍ରୁତ କାନ୍ଦେ ।
କେବେ ବା ଧୂଳିରେ ଗଡ଼ଇ ॥ ସର୍ବାଙ୍ଗେ ଧୂଳି ବୋଳି ହୋଇ ।
ନରେନ୍ଦ୍ର ପୋଖରୀକୁ ଧାଏଁ ॥ କେବେ ମାର୍କଣ୍ଡେ ଅବଗାହେ ।
କୀର୍ତ୍ତନ ରସେ ମତ୍ତ ହେଲ ॥ ନୃତ୍ୟ କରଇ ପ୍ରଭୁରାଜ ।
ଆଗକୁ ପଛକୁ ଝୁଲଇ ॥ ହୁଙ୍କାରେ ସେହୁ ଲମ୍ଫ ଦେଇ ।
କେବେ ବାରହେ ପ୍ରକୃତରେ ॥ ସୁଖରେ ଆଳାପ ସେ କରେ ।
ଏକା ତା ମତ୍ତ ନୃତ୍ୟ ରଙ୍ଗେ ॥ କୀର୍ତ୍ତନ ରସ ଅନୁରାଗେ ।

ଅନ୍ତ୍ୟ ଲୀଳାର ଏ ଅପୂର୍ବ ଦୃଶ୍ୟ ବଡ଼ ହୃଦୟୋଲ୍ଲାସକାରୀ । ଚୈତନ୍ୟଙ୍କ ପରି ଜଣେ ମହାପୁରୁଷଙ୍କ ପକ୍ଷରେ ହିଁ ଏହା ସମ୍ଭବ । ଭକ୍ତ ଅନନ୍ତ ଲେଖିଛନ୍ତି —

"ପ୍ରଭୁ କନକ ଗୌରକାନ୍ତି ॥ ଦୁଃଖ ପାଶୋର ଅଛଇଟି ।

ଶ୍ରୀଚୈତନ୍ୟଙ୍କ ମଧୁର ଅଙ୍ଗକାନ୍ତି ଦର୍ଶନରେ ଦର୍ଶକର ସମସ୍ତ ଦୁଃଖ ଓ ମନୋବେଦନା ଦୂରୀଭୂତ ହେଉଥିଲା । ଏହା ଯେପରି ଅଲୌକିକ ସେହିପରି ଏକ ଐତିହାସିକ ସତ୍ୟ ।

ଭକ୍ତ ମାଧବ, ପଞ୍ଚସଖାଙ୍କ ନାମ ବହୁବାର ଉଲ୍ଲେଖ କରିଛନ୍ତି । ‘ପଞ୍ଚସଖା’ ଏହି ଧାରଣାଟି ମଧ୍ୟ ସେତେବେଳେ ସ୍ପଷ୍ଟ ରୂପେ ପ୍ରତିଷ୍ଠିତ ଥିଲା । ପଞ୍ଚସଖାନ୍ତର୍ଗତ ବଳରାମ ଦାସଙ୍କ ସମ୍ପର୍କରେ ଭକ୍ତ କେତେକ ମାର୍ମିକ ବକ୍ତବ୍ୟ ଉଲ୍ଲେଖ କରିଛନ୍ତି । ସେ ଥିଲେ ପ୍ରକୃତରେ ସେ କାଳରେ ନୀଳାଚଳରେ ସତୀର୍ଥ ଥିବା ବୈଷ୍ଣବମାନଙ୍କ ମଧ୍ୟରେ ଏକ ମହାଦ୍ରୁମ ଭଳି । ଭକ୍ତ ମାଧବ, ବଳରାମଙ୍କୁ ‘ଯୋଗ-ପୁରୁଷ’ ବୋଲି ଅଭିହିତ

କରନ୍ତି । "ଶ୍ରବଣେ ଉନମତ୍ତ ହୋଇ । ମତ୍ତ ବଳରାମ ହୋଇଲେ ।" ତାଙ୍କର ସାଧନ-ନିଷ୍ଠା ଓ ଭଜନ କୀର୍ତ୍ତନରେ ଐକାନ୍ତିକତା ଥିଲା ଅଦ୍ଭୁତ । ସେ ଭଜନ କୀର୍ତ୍ତନ କରୁ କରୁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ସେ ବସିଥିବା ସ୍ଥାନରୁ ଢଳି-ପଡ଼ିଲେ । ତାଙ୍କ ମୃତ୍ୟୁ ଘଟିଲା ଖ୍ରୀ: ୧୫୩୩ ଫାଲ୍ଗୁନ ଶୁକ୍ଳ ଦଶମୀରେ । ଶ୍ରୀଚୈତନ୍ୟଙ୍କ ତିରୋଧାନର ପ୍ରାୟ ୫୩ ଦିନ ପୂର୍ବରୁ ବଳରାମ ସ୍ୱର୍ଗଯାତ୍ରା କଲେ ବୋଲି ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଏ । ତାଙ୍କ ମୃତ୍ୟୁ ଆଲୋଚ୍ୟ କବିଙ୍କ ଦୃଷ୍ଟିରେ ପ୍ରକୃତରେ ଥିଲା ଏକ ବିଶାଳ ଦ୍ରୁମ ପ୍ରବଳ ପବନରେ ଉପୁଡ଼ି ପଡ଼ିଲା ଭଳି— "ବୃକ୍ଷେକ ଉନ୍ମୁଳି ପଡ଼ଇ ।" ସେ ଥିଲେ "କୀର୍ତ୍ତନ ରସ ମହାମେରୁ ।" ନୀଳାଚଳର ବୈଷ୍ଣବଗୋଷ୍ଠୀର ତାଙ୍କର ଦେହାବସାନ ଥିଲା ଯଥାର୍ଥରେ ଏକ ବିଶାଳ ବୃକ୍ଷର ଉନ୍ମୂଳନ ସଦୃଶ । କବିଙ୍କର ଏ ଉପମାଟି ଅତି ଚମତ୍କାର ମନେହୁଏ ।

କବି ମାଧବ ପଟ୍ଟନାୟକ ଜଣେ ବର୍ଣ୍ଣନାକାରୀ ମାତ୍ର । ସାହିତ୍ୟିକ ଦୃଷ୍ଟା ତାଙ୍କ ବୈଷ୍ଣବ ଲୀଳାମୃତରୁ ବେଶି ମିଳେନାହିଁ । ତଥାପି ଏ ଗ୍ରନ୍ଥ ସେ ସମୟର ଇତିହାସ ଓ ନୀଳାଚଳରେ ସମବେତ ବୈଷ୍ଣବ ଗୋଷ୍ଠୀର କାର୍ଯ୍ୟକଳାପ ସମ୍ପର୍କରେ ଏକ ବିସ୍ତୃତ ଚିତ୍ର ପ୍ରଦାନ କରେ ।



# 'ବୈଷ୍ଣବ ଲୀଳାମୃତ'ର ପ୍ରଯୁକ୍ତ ଭାଷାର ସ୍ୱରୂପ

ଷୋଡଶ ଶତାବ୍ଦୀର ଆଦ୍ୟ ଭାଗରେ ଓଡ଼ିଆ ଭାଷା ଏକ ସୁସ୍ଥିର ଓ ସୁନିର୍ଦ୍ଦିଷ୍ଟ ରୂପରେଖ ଲାଭ କରିପାରିଥିଲା । ପୂର୍ବବର୍ତ୍ତୀ ଯୁଗରେ ମହାକବି ସାରଳା ଦାସଙ୍କ ଲେଖନୀରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଏବଂ ଶକ୍ତିଶାଳିତା ପ୍ରତିଷ୍ଠିତ ହୋଇସାରିଥିଲା । ଲୋକମୁଖର ଭାଷାରେ ଏବଂ ଲୌକିକ ଭିତ୍ତିରେ ଯେ ଏକ ବିଶାଳ ଓ ବଳିଷ୍ଠ ସାହିତ୍ୟ ସୃଷ୍ଟି ହୋଇପାରେ ସାରଳା ଦାସ ତାଙ୍କ ରଚନାବଳୀରେ ତାହାର ପର୍ଯ୍ୟାପ୍ତ ପ୍ରମାଣ ଦେଇଥିଲେ । ଓଡ଼ିଆ ସାହିତ୍ୟର ପ୍ରବାହକୁ ବେଗଗାମୀ କରିବାରେ ସାରଳାଙ୍କ ଭାଷାଗତ ଓଡ଼ିଆ ଜାତିର ଭାଷା ଓ ସଂସ୍କୃତିର ଇତିହାସରେ ଏକ ଅକ୍ଷୟକୀର୍ତ୍ତି । ସାରଳାଙ୍କ ଭାଷାଗତ ପରବର୍ତ୍ତୀ ସମୟରେ ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱତନ୍ତ୍ର ରାଜମାର୍ଗ ସ୍ୱରୂପ ସୃଷ୍ଟି ହୋଇଗଲା ଏବଂ ତାହା ହିଁ ହେଲା ଓଡ଼ିଆ ଗ୍ରନ୍ଥ ଲେଖକଙ୍କର ସର୍ବଜନାଦୃତ ଭାଷା । ଏ ଭାଷା ଥିଲା ଲେଖକଙ୍କର ଅତି ନିକଟବର୍ତ୍ତୀ । କେବେ ଯେଉଁ ଭାଷାରେ ନିଜ ଅନୁଭବକୁ ପ୍ରକାଶ କରିବାକୁ ଲେଖନ୍ତି ସାରଳାଙ୍କ ଭାଷା ହିଁ ଧରନ୍ତି । ତେଣୁ ସମସ୍ତ ଯେତେ ଆଗକୁ ଗତିକରିଛି, ସାରଳାଙ୍କ ଭାଷା ସେତିକି ଅନ୍ତରଙ୍ଗତା ଓଡ଼ିଶାର ଲୋକ ଜୀବନକୁ ସେତେବେଶି ସ୍ପର୍ଶ କରିପାରିଅଛି । ଗୋଟିଏ କଥାରେ କହିଲେ ସାରଳା ଦାସଙ୍କର ଓଡ଼ିଆ ଭାଷା ସ୍ୱତଃସ୍ଫୂର୍ତ୍ତ ତୁଳନାତ୍ମକ ଆନ୍ତରିକତାମୁକ୍ତ । ତେଣୁ ଏକପ୍ରକାରର ସ୍ୱାଭାବିକ ପ୍ରାକୃତ ବା ପ୍ରାକୃତିକ ପ୍ରାକୃତ ନାମରେ ଅଭିହିତ ହେବାର ଯୋଗ୍ୟ ।

ସାରଳା ଦାସ ଗଢ଼ିଥିବା ଓଡ଼ିଆ ଭାଷାର ସୁଦୃଢ଼ ଭିତ୍ତି ଉପରେ ପଞ୍ଚସଖା ଯୁଗୀୟ କବିମାନଙ୍କର ବିଶାଳ ହର୍ମ୍ୟ ନିର୍ମାଣରେ ଉଦ୍ୟମ ଭାଷାତାତ୍ତ୍ୱିକମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ଷୋଡଶ ଶତାବ୍ଦୀର ଆଦ୍ୟ ଭାଗରେ ଓଡ଼ିଆଭାଷା କ୍ଷେତ୍ରରେ ଏକ ନୂତନ ଗତି ପରିବର୍ତ୍ତନର ଇଙ୍ଗିତ ସ୍ପଷ୍ଟ ହୋଇଉଠିଲା । ସାରଳାଙ୍କର ପ୍ରାକୃତିକ-ପ୍ରାକୃତକୁ ଏକ ସାହିତ୍ୟିକ ପ୍ରାକୃତରେ ପରିଣତ କରିବା ପଞ୍ଚସଖା ଯୁଗର କବିମାନଙ୍କର ଅନ୍ୟତମ ବୈଶିଷ୍ଟ୍ୟ ରୂପେ ଅଭିହିତ କରାଯାଏ । ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କ ରଚନାବଳୀରେ ଏକ ଲକ୍ଷଣୀୟ ବିଶେଷତ୍ୱ—ଏଥିରେ ପ୍ରାକୃତ ସ୍ୱଭାବତ ଏକାନ୍ତ

ଦୁର୍ବୋଧ ପ୍ରାଚୀନ ଶବ୍ଦର ପ୍ରୟୋଗ ହ୍ରାସ ହୋଇପଡ଼ିବା ଏବଂ ତତ୍ସମ ଶବ୍ଦାବଳୀର କଠିନ ପ୍ରୟୋଗ ଏକାବେଳକେ ଶିଥିଳ ହୋଇପାରିଛି । ଫଳରେ ଭାଷାର ସାରସ୍ୟ ଓ ସଜୀବତା ଏକ ନୂତନ ଭୂମିରେ ପଦାର୍ପଣ କରିପାରିଅଛି । ଏହି କାରଣରୁ ପଞ୍ଚସଖାର ଜଗନ୍ନାଥ, ବଳରାମ, ଅଚ୍ୟୁତ ପ୍ରମୁଖ ବୈଷ୍ଣବସାଧକ କବିଙ୍କ ଭାଷା ଏପର୍ଯ୍ୟନ୍ତ ଓଡ଼ିଆର ଷ୍ଟାଣ୍ଡାର୍ଡ ରୂପେ ଗୃହୀତ ହୋଇଆସିଅଛି ।

ଏହି ପରିପ୍ରେକ୍ଷୀରେ ବୈଷ୍ଣବ ଲୀଳାମୃତରେ ପ୍ରଯୁକ୍ତ ଭାଷାର ତାତ୍ତ୍ୱିକ ଅନୁଶୀଳନ କରିବାରେ ବିଶେଷ ଅସୁବିଧା ନ ଥିବା ଭଳି ମନେହୁଏ । ପଞ୍ଚସଖାର ସମସାମୟିକ କବି ମାଧବ ପଟ୍ଟନାୟକ ଏହି ଧରଣର ଏକ ସହଜ ସରଳ ସ୍ୱାଭାବିକ ଓ ସ୍ୱଚ୍ଛନ୍ଦ ଭାଷା-ରୀତିର ଶୁଶ୍ରୂଷା ବଳରେ ଓଡ଼ିଆ ଭାଷାର ତାତ୍କାଳୀକ ଆଦର୍ଶ ମୂର୍ତ୍ତିର ହିଁ ଅର୍ଚ୍ଚନା କରିଥିବା ଲକ୍ଷ୍ୟ କରାଯାଏ । ଭାଗବତୀୟ ନବାକ୍ଷରୀ ବୃତ୍ତରେ ଲେଖା ‘ବୈଷ୍ଣବ ଲୀଳାମୃତ’ର ଛନ୍ଦଗତ ଅନୁକରଣରେ କିପରି ପ୍ରଥମେ ପ୍ରଥମେ ଦୁଃସାଧ୍ୟ ମନେହୋଇଥିଲା, ତାହାର ନମୁନା ଏଥିରୁ ସ୍ପଷ୍ଟ ମନେହୁଏ । ଭାଷାଗତ ଦୃଷ୍ଟିରୁ ‘ସେ’ ଓ ‘ଯେ’ର ବହୁଳ ବ୍ୟବହାର କବି କରିଛନ୍ତି ।

କ) ବିଶେଷ ଶବ୍ଦାବଳୀର ପ୍ରୟୋଗ :

ଚକ୍ଷୁ (= ଚକ୍ଷୁଃ, ଚକ୍ଷୁ ଲଗମେ ଚକ୍ଷୁବାହା), ସାହା (= ସହାୟ), ପଥୁକ (= ପଥିକ), ଗଳଗାଜ (= ଗଳାରେ ଗର୍ଜନକରି, ସାରଳାରେ ମଧ୍ୟ ଏହାର ପ୍ରୟୋଗ ଅଛି), ମୁହାଁସ, ପରମାଣି (ଭୁରୁ ଆଶିଷ ପରମାଣି), ଚକ୍ରେଇ, ଶସ୍ୱଳ (ସଂ: ସମ୍ବଳ = ସମ୍ଭାର), ଉତ୍ତରିଲେ (= ଠିଆ କରାଇଲେ), ଶଙ୍ଖାରିବ (= ସମ୍ଭାର କରି, ଶଙ୍ଖାରିବ ଜାଣ୍ଡି ଦେଇଲେ), ଘୁମୁଟି (= ମନ୍ଦିରର ସମାନ ଅଂଶ), ଉଆଣ (= ଆୟୋଜନ), ଉତ୍ତର, ବ୍ୟଜନେ, ପାଚେରି, ପଞ୍ଜୁରି, ପାଛଳ, ନବାଡ଼େ, ନରେଶ, ଦୁର୍ଭିକ୍ଷ (= ଦୁର୍ଭିକ୍ଷ), ଚିପୁଡ଼ (= ତୃପ୍ତି), ବେଭାର (= ବ୍ୟବହାର) ସାହାସ୍ତ୍ର (= ଶାସ୍ତ୍ର), କୁପିଲେ (= କୋପକଲେ), ଲିହିବ (= ଲେଖିବ), ନୃତ୍ୟତ (= ଗୀତର ତାଳେ ସେ ନୃତ୍ୟତ), ଜାଣିବାକୁ, ଦେଖିବାକୁ ହାନ୍ଦୋଳ, ହୁଅ, ହାଦେ, ବାହୁଡ଼, ବନ୍ଦଣୀ, ଆଣିଲର, ଖାଇଲର, ପାଛଳ (= ସମ୍ମୁଖରେ ପାଛଳ ଆସନ), ସାଷ୍ଟାଙ୍ଗ, ନକଟି (= ଭୂମିର ଝରଣ ନକଟି), ଉଚ୍ଛୁଳ (= ବୃକ୍ଷେକ ଉଚ୍ଛୁଳି ପଡ଼ଇ), ଉଗାଳ (= ଉଦ୍‌ଗାର କରି), ଥାପିଲର, ଘଷିଲର, ନବାଡ଼ୁ (= କଲନା-କରୁ), ଅପ୍ରାଧ (= ଅପରାଧ) ।

ଖ) ଉତ୍ତର ଓଡ଼ିଆ ଆଞ୍ଚଳିକ ଭାଷାରେ ବ୍ୟବହୃତ କେତେକ ଶବ୍ଦ ମାଧବ ପଟ୍ଟନାୟକ ବ୍ୟବହାର କରିଛନ୍ତି, ଯଥା — ଭଣ୍ଡତେ, ଧରତେ, ଲେଖିତେ। ଏଭଳି ପ୍ରୟୋଗ ଜଗନ୍ନାଥ ଦାସଙ୍କ ଭାଗବତରେ ମଧ୍ୟ ଦେଖାଯାଏ।

ଗ) ଯେ, ବା, ହେଁ, ଯେସନ, ଯେହ୍ନେ, ଯାଏଁ, କିପାଁ, କିବା, ଆଉ ପ୍ରଭୃତି ଅବ୍ୟୟ ପଦ ରୂପେ ମାଧବ ପଟ୍ଟନାୟକ ବହୁସ୍ଥଳରେ ବ୍ୟବହାର କରିଛନ୍ତି। ମାତ୍ର 'ଏବଂ' ଅବ୍ୟୟର ବ୍ୟବହାର ହୋଇଁଥିବା ଦେଖାଯାଏନାହିଁ। ଭାଗବତରେ ଜଗନ୍ନାଥ ଦାସ ମଧ୍ୟ 'ଓ', 'ଏବଂ' ଅବ୍ୟୟ ବ୍ୟବହାର କରି ନ ଥିଲେ। ଓ, ଏବଂ ସ୍ଥାନରେ ଭାଗବତରେ 'ଆଉ' ବ୍ୟବହୃତ। 'ନ୍ତି' ମାଧବ ପଟ୍ଟନାୟକ ବ୍ୟବହାର କରିଛନ୍ତି— ନୋହଇନ୍ତି, ଅଟଇନ୍ତି, ଜାହ୍ନୁଁନ୍ତି, ଏଥେନ୍ତି, ବୋଲଇନ୍ତି, ଆଛନ୍ତି, ଏହୁନ୍ତି। 'ଯେନେ' ଓ 'ତହିଁ' ଅବ୍ୟୟ ପଦ ରୂପେ ବ୍ୟବହୃତ ହୋଇଥିବା ଦେଖାଯାଏ।

ଘ) ଆଉ କେତେକ ପ୍ରାଚୀନ ଓଡ଼ିଆ ଶବ୍ଦ ମାଧବ ପଟ୍ଟନାୟକ ବ୍ୟବହାର କରିଛନ୍ତି : ହକାର, ହୁଭର, ପରମାଣିବା ନା, ଜାଣିମା ନା, ଦେଖିବା ନା, ଆଣନ୍ତା, ବଦସୁନ୍ତି, ବଖାଣିବା, ଅନେକାଇ (ନୃତ୍ୟକରେ ସେ ଅନେକାଇ, ଭର୍ତ୍ସନା କରି ଅନେକାଇ ଇତ୍ୟାଦି।

ଙ) ଧାତୁରେ 'ଇ' ପ୍ରତ୍ୟୟ ବିଭିନ୍ନ ଅର୍ଥରେ ବ୍ୟବହୃତ ହୋଇଥିବା ଦେଖାଯାଏ। ଚଳି, ଭଣି, ଲେଖି, ନପାଇ, ବସି, ପ୍ରବେଶି, ଧରି ଇତ୍ୟାଦି। ମାଧବ ପଟ୍ଟନାୟକ 'କୃ' ଓ 'ଭୂ' ଧାତୁର ବ୍ୟବହାର ଅତି କ୍ୱଚିତ କରିଥିବା ଦେଖାଯାଏ।

ଚ) ବିଭକ୍ତି ପ୍ରତ୍ୟୟ :

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ୧ମା — (ଏ) | ମାଲାଏ, ହାତେ, ବୃକ୍ଷେ | ଏ (ଦେବତାଏ, ମେଲାଏ, ଭଗତେ)<br>ନ୍ତି (ମାନନ୍ତି, ଦେବନ୍ତି, ଭକ୍ତନ୍ତି)<br>ବୈଷ୍ଣବଗାଆଣ ମାନନ୍ତି |

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ୨ୟା — ଏ | (ଗ୍ରାମଗ୍ରାମେ, ପରଜନ୍ମେ, ଗ୍ରାମେ) | ନ୍ତି (ମିଳଇ କାହିଁ ସେ ସବୁନ୍ତି, ସବୁନ୍ତି ସଙ୍ଗେଣ ନେଲେକ) |
| ରେ | (ବଳରାମରେ, ରାଜାରେ, ହାତେ) | |
| କଇ | (କାଶୀ ମିଶ୍ର କଇ ହକାର ପ୍ରଭୁ ସ୍ୱାମୀକଇ ପଚାର, ପ୍ରଭୁ ସ୍ୱାମୀକଇ ସମ୍ଭାର, ଭଦ୍ରଦେବକଇ ଜାବଦେବକଇ, ତାହାକଇ) | |
| ୩ୟା ଏ | (ନନ୍ଦେ, କ୍ଷୁଧାଏ, ହେଲାଏ | |
| ଏଁ | (ଖ୍ରଗଏଁ ) | |
| ଏଣ | (ନାମେଣ, ରୂପେଣ, ରସେଣ) | |
| ୪ର୍ଥୀ ଏ | (ଭକତେ, ଚଇତନ୍ୟେ, ଗ୍ରାମଗ୍ରାମେ ଦାସେ) | |
| କୁ | (ଜଗନ୍ନାଥକୁ) | |
| ୫ମୀ ଉ | (ଘରୁ, ଗ୍ରାମରୁ, ହାସୁ, ଜବାଡ଼ୁ) | |
| ଉଁ | (ମରଣୁଁ, ମନୁଁ ) | |
| ହୁଁ | ଏତହୁଁ, କୃଷ୍ଣହୁଁ, ସ୍ୱାମୀହୁଁ ଶ୍ରୀଗବକ ଶୁଣିଲ) | |
| ତହୁଁ | (ସ୍ୱାମୀତହୁଁ ଭରତ ତତ୍ତ୍ୱ) ତା ତହୁଁ, ସେତହୁଁ | |
| ୬ଷ୍ଠୀ ର | (ସ୍ୱାମୀର, ପ୍ରଭୁର, ବସ୍ତ୍ରର) | ମାନନ୍ତ (ଗୋପୀମାନନ୍ତ ' ଭଲ ନୃତ୍ୟ. ମ୍ଲେଚ୍ଛମାନନ୍ତ = ମ୍ଲେଚ୍ଛମାନଙ୍କର ମାତା-ମାନନ୍ତ) |
| ୭ମୀ ଏଣ | କଟକେଣ, କୂଳେଣ, ମାର୍ଗେଣ, ଅନ୍ତରେଣ, କୋପେଣ, ଘରେଣ, ପାଦେଣ, ମୁଖେଣ, କୋପେଣ, ସଙ୍ଗେଣ | |
| ଏ | (ଦେଉଳେ, ବାଟେ, ମାର୍ଗେ, ହାତେ ମୁଣ୍ଡେ, ରଥେ) | ଏ (ଜେଜେ ବେଦେ ମେଘେ) |

ଛ) 'ପର୍ଯ୍ୟନ୍ତ' ଅର୍ଥରେ ଏଥିରେ 'ବୋଲି' ବ୍ୟବହୃତ, ଯଥା —

ଚାହୁଁଟି ଅଇଲ ଷୋଳ ବୋଲି
ଦାଣ୍ଡ ଦୁଆର ଦେଖିଗଲେ
ମାର୍କଣ୍ଡ ବୋଲି ଚାଲିଗଲେ
ବଢ଼େଇ ଘୁଞ୍ଚା ବୋଲି ଆଣି

'ମାଦଳାପାଞ୍ଜି'ରେ ପର୍ଯ୍ୟନ୍ତ ଅର୍ଥରେ ବୋଲିର ପ୍ରୟୋଗ ଦେଖାଯାଏ ।
ଯଥା — ପୂର୍ବପ୍ରମ ବୋଲି ଅଇଲେ ।

ଉକ୍ତ ଆଲୋଚନାରୁ ଜଣାଯାଏ, ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଆଦିଙ୍କ ପ୍ରବଳ ଉଦ୍ୟମ ଫଳରେ ଭାଷା ପ୍ରୟୋଗରେ ଅବାଧ ପ୍ରବାହ ଦ୍ୱାରା ଓଡ଼ିଆ ସାହିତ୍ୟିକ ପ୍ରାକୃତର ଯେଉଁ ସ୍ୱରୂପ ଫୁଟିଥିଲା, ମାଧବ ପଟ୍ଟନାୟକ ନିଜ ରଚିତ "ବୈଷ୍ଣବ ଲୀଳାମୃତ"ରେ ତାହାର ନିଦର୍ଶନ ଦେଇଛନ୍ତି ଏବଂ ସେହି ସାହିତ୍ୟିକ ପ୍ରାକୃତ ଓଡ଼ିଆ ଭାଷାରେ ହିଁ ଏହା ରଚନା କରିଛନ୍ତି । ଏଥିରେ ପଞ୍ଚସଖା ଯୁଗୀୟ ଭାଷାଶୈଳୀ ନିର୍ଦ୍ଦିଷ୍ଟ ଭାବରେ ଲକ୍ଷ୍ୟ କରାଯାଏ ।



# ଅଧ୍ୟାୟ କ୍ରମରେ ବିଷୟବସ୍ତୁର ଆଲୋଚନା

କବି କାବ୍ୟାରମ୍ଭରେ ମଙ୍ଗଳାଚରଣ କରିବାକୁ ଯାଇ ଶ୍ରୀଜଗନ୍ନାଥଙ୍କର ସ୍ୱରୂପ ପ୍ରକାଶ କରିଅଛନ୍ତି । ଏଥିରେ ନୀଳାଚଳର ବୈଷ୍ଣବ ମତବାଦ ସୁଲଭ ତତ୍ତ୍ୱ ଓ ତଥ୍ୟମାନ ବର୍ଣ୍ଣିତ ହୋଇଛି । ଯଥା— 'ହରେ ରାମ କୃଷ୍ଣ' ମହାମନ୍ତ୍ରର ଉଲ୍ଲେଖ ଏବଂ ଶ୍ରୀଅଙ୍ଗରେ ପ୍ରଣବ ବା ଓଁକାରର ସ୍ୱରୂପ ପ୍ରକଟନ; ଜଗନ୍ନାଥଙ୍କ ନାମ ଠୁଳଶୂନ୍ୟମୟ; ଜଗନ୍ନାଥଙ୍କଙ୍କ ନାମରୁ ପ୍ରଣବର ସୃଷ୍ଟି ଏବଂ ଏଥିରୁ ଋଗ୍‌ବେଦ ଜାତ- ବୋଲି କବି ପ୍ରକାଶ କରିଅଛନ୍ତି । ଏହି ପଦ୍ଧତି କବି ଜଗନ୍ନାଥଙ୍କ ଶ୍ରୀବିଗ୍ରହକୁ 'ରସଘନମୟ' ଆଖ୍ୟା ପ୍ରଦାନ କରିଅଛନ୍ତି । ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ନିତ୍ୟରାଧା ଓ ନିତ୍ୟ କୃଷ୍ଣଙ୍କର ଲୀଳାଖେଳା ସଂଘଟିତ ହେଉଥିବା ମଧ୍ୟ କବି ବର୍ଣ୍ଣନା କରିଅଛନ୍ତି । ନୀଳାଚଳକୁ ନିତ୍ୟଧାମ ରୂପେ କବି ଗଣନା କରିଅଛନ୍ତି ଏବଂ ନୀଳାଚଳ ଯେ ନିତ୍ୟ- ଗୋଲକ ଏବଂ ଏଠାରେ ଯେ ନିତ୍ୟ କୃଷ୍ଣଙ୍କର ଲୀଳା-ବିଳାସ ପ୍ରକଟିତ, ଏଥିରେ କବି ଦ୍ୱିଧାହୀନ ମତପୋଷଣ କରିଅଛନ୍ତି । ଏହିସବୁ କାରଣରୁ ଯୁଗେ ଯୁଗେ ସାଧୁସନ୍ଥ ବୈଷ୍ଣବମାନେ ନୀଳାଚଳକୁ ଆଶ୍ରୟ କରିଥିବା ପ୍ରକାଶ କରିଅଛନ୍ତି । କବି ଏଥିରେ ମୁକ୍ତି ଅପେକ୍ଷା ଭକ୍ତିକୁ ପ୍ରାଧାନ୍ୟ ଦେଇଅଛନ୍ତି । ଅତୀତରେ ବହୁ ସାଧୁସନ୍ଥ ଶ୍ରୀଜଗନ୍ନାଥଙ୍କର ପାଦପଦ୍ମକୁ ଆଶ୍ରୟ କରି ରହିଥିଲେ, ବର୍ତ୍ତମାନ ମଧ୍ୟ ବୈଷ୍ଣବମାନେ ନୀଳାଚଳକୁ ଆଶ୍ରୟ କରିଅଛନ୍ତି । ଶ୍ରୀକୃଷ୍ଣ ନାମକୁ ଭେଳାକରି ନିତ୍ୟଧାମ ନୀଳାଚଳରେ ଯେଉଁ ବୈଷ୍ଣବମାନେ ଶ୍ରୀରାଧା-କୃଷ୍ଣଙ୍କଠାରେ ଭକ୍ତି ଅର୍ପଣକରି କେବଳ ନାମ ଉଚ୍ଚାରଣ କରି ରାତି ଦିବସ ଯାପନ କରୁଅଛନ୍ତି, ନୀଳାଚଳରେ ସମବେତ ହୋଇଥିବା ସେହି ବୈଷ୍ଣବଗୋଷ୍ଠୀର ଦୁର୍ଲ୍ଲଭ ଲୀଳାଖେଳା ବିଷୟ କବି ଏହି ଗ୍ରନ୍ଥରେ ବର୍ଣ୍ଣନା କରୁଥିବା ଉଲ୍ଲେଖ କରିଅଛନ୍ତି । କେବଳ ନାମ ସଂକୀର୍ତ୍ତନକୁ ଆଶ୍ରୟ କରି ନୀଳାଚଳରେ ସମବେତ ହୋଇଥିବା ପଞ୍ଚସଖା, ଶ୍ରୀଚୈତନ୍ୟ, ରାୟ ରାମାନନ୍ଦ, ଗୁରୁ ପଣ୍ଡିତ ଗଦାଧର, ସ୍ୱରୂପ ଦାମୋଦର ପ୍ରମୁଖ ସାଧୁସନ୍ଥମାନଙ୍କର ଚରିତ କୀର୍ତ୍ତନ କରୁଥିବା ହେତୁରୁ କବି ଗ୍ରନ୍ଥାରମ୍ଭରେ ନିଜକୁ ଧନ୍ୟ ମନେକରିବା ସଙ୍ଗେ ସଙ୍ଗେ ଅପାର ପୁଲକ ଅନୁଭବ କରୁଥିବା ବିଷୟ ପ୍ରକାଶ କରିଅଛନ୍ତି ।

ଦ୍ୱିତୀୟ ଅଧ୍ୟାୟରେ ନାମ ସଙ୍କୀର୍ତ୍ତନ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । କବି ନାମ ସଙ୍କୀର୍ତ୍ତନକୁ 'ରହାସ' ଆଖ୍ୟା ପ୍ରଦାନ କରିଅଛନ୍ତି । ମନ୍ଦିରବେଢ଼ା ମଧ୍ୟରେ ଥିବା ବଟଗଣେଶ ନିକଟରେ ଏକ ରାସସ୍ଥଳୀ ରଚନା କରାଯାଇଥିଲା । ଏହି ରାସସ୍ଥଳୀର ବିଶଦ ବର୍ଣ୍ଣନା କବି ଦେଇଛନ୍ତି ଏବଂ ଏହି ରାସ ମଣ୍ଡପକୁ କହ୍ନାଇ ଖୁଣ୍ଟିଆ ନିର୍ମାଣ କରିଥିବା ବିଷୟ କବି ପ୍ରକାଶ କରିଅଛନ୍ତି । ସ୍ୱାମୀ ଜଗନ୍ନାଥ ଦାସ ରହାସ ଶିକ୍ଷା ଦେଉଥିବା ବିଷୟ ଏବଂ ବଳରାମ, ଅଚ୍ୟୁତ; ଅନନ୍ତ, ଯଶୋବନ୍ତ, କହ୍ନାଇ ଖୁଣ୍ଟିଆ, ଗୋପାଳ ବୁଢୁ ପ୍ରମୁଖ ଏଠାରେ ନିତ୍ୟନୈମିତ୍ତିକଭାବରେ ନାମ ସଙ୍କୀର୍ତ୍ତନ କରୁଥିବା ଏବଂ ଏଠାରେ ପ୍ରତ୍ୟହ ପୁରାଣପାଠ ହେଉଥିବା ଓ ଜଗନ୍ନାଥ ଦାସ ଭାଗବତ ରଚନା କରୁଥିବା ବିଷୟ କବି ପ୍ରକାଶ କରିଅଛନ୍ତି । ରହାସ ବା ନାମ ସଙ୍କୀର୍ତ୍ତନର ଐତିହ୍ୟ ସମ୍ପର୍କରେ ସୂଚନା ଦେବାକୁଯାଇ କବି ଗଙ୍ଗସମ୍ରାଟ ଚୋଡ଼ଗଙ୍ଗଦେବଙ୍କ ପ୍ରସଙ୍ଗ ଉଲ୍ଲେଖ କରିଅଛନ୍ତି । ଚୋଡ଼ଗଙ୍ଗଦେବ ପୁରୀରେ ପୂର୍ବରୁ ଥିବା ଏକ ଜୀର୍ଣ୍ଣ ଦେଉଳକୁ ସଂସ୍କାର କରିବାକୁ ଯାଇ ଜଗନ୍ନାଥଙ୍କର ନୂତନ ପ୍ରାସାଦ ନିର୍ମାଣ କଲେ । ଏହି ପ୍ରାସାଦର ଗର୍ଭଗୃହ ପ୍ରତିଷ୍ଠା ବେଳେ ଚୋଡ଼ଗଙ୍ଗଦେବ, ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବଦେବଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଏହି ଦୁଇଟି ଉତ୍ସବ ଏକ ସଙ୍ଗରେ ଅନୁଷ୍ଠିତ ହେଲା । ଏହି ଉତ୍ସବରେ ପ୍ରଥମ ଥର ପାଇଁ ନାମ ସଙ୍କୀର୍ତ୍ତନର ପ୍ରଚଳନ କରାଯାଇଥିବା ବିଷୟ କବି ଉଲ୍ଲେଖ କରିଅଛନ୍ତି । କବି ଲେଖିଛନ୍ତି, ଚୋଡ଼ଗଙ୍ଗଦେବ ଗୋଦାବରୀ ନଦୀ-କୂଳରୁ ମୃତ୍ତିକା ଆଣାଇ ସେଥିରେ ମୃଦଙ୍ଗ ନିର୍ମାଣ କରାଇଲେ ଏବଂ ସେହି ମୃଦଙ୍ଗର ବ୍ୟବହାରରେ ଶ୍ରୀମନ୍ଦିରରେ ପ୍ରଥମେ ନାମ ସଙ୍କୀର୍ତ୍ତନ ପ୍ରଚଳିତ ହେଲା । ହରିଲୀଳା ଗାନ କରିବା ପାଇଁ ଚୋଡ଼ଗଙ୍ଗଦେବ ନାଚୁଣୀ ମାହାରୀମାନଙ୍କୁ ନିଯୁକ୍ତ କଲେ । ଏହି ନାଚୁଣୀ ମାହାରୀମାନଙ୍କ ନୃତ୍ୟକୁ କବି 'ରହାସନୃତ୍ୟ' ଆଖ୍ୟା ପ୍ରଦାନ କରିଅଛନ୍ତି । 'ଗୀତଗୋବିନ୍ଦ'କାର ଜୟଦେବଙ୍କ ପ୍ରସଙ୍ଗ ଉଲ୍ଲେଖ କରି ଗୀତ-ଗୋବିନ୍ଦକୁ ଏବଂ ସେହି ଗୀତର ତାଳେ ତାଳେ ନୃତ୍ୟ କରୁଥିବା ପଦ୍ମାବତୀଙ୍କର ସଂଯୋଗକୁ କବି 'ରହାସ' ନାମରେ ନାମିତ କରିଅଛନ୍ତି । ପରବର୍ତ୍ତୀ ସମୟରେ 'ଗୀତଗୋବିନ୍ଦ' ନାଟ ଏକ ନିର୍ଦ୍ଦିଷ୍ଟ ସେବାରୂପେ ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିବା ବିଷୟ ମଧ୍ୟ ଉଲ୍ଲେଖ କରାଯାଇଅଛି । ଶ୍ରୀମନ୍ଦିରରେ ରହାସନୃତ୍ୟ ଲାଗି 'ଗୀତଗୋବିନ୍ଦ' ଗାନ ନୃତ୍ୟ ଏକ ବିଶିଷ୍ଟ ସେବାରୂପେ ଅନଙ୍ଗଭୀମଦେବ ପ୍ରବର୍ତ୍ତନ କଲେ ଏବଂ ଏହି ଗାନ ଓ ନୃତ୍ୟର ସୁବନ୍ଦୋବସ୍ତ ଲାଗି ସେ ନାଟ ମନ୍ଦିର ନିର୍ମାଣ କରିଥିବା ବିଷୟ କବି ଲେଖିଛନ୍ତି । ଏଥିରୁ ଅନୁମାନ କରାଯାଏ ଯେ ଚୋଡ଼ଗଙ୍ଗଦେବ ଶ୍ରୀମନ୍ଦିରର ଗର୍ଭଗୃହ (ବିମାନ) ଓ ଜଗମୋହନ ଅଂଶର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରି ପ୍ରତିଷ୍ଠା କରିଥିଲେ । ପରେ ଅନଙ୍ଗଭୀମଦେବ ନାଟମନ୍ଦିର ନିର୍ମାଣ କଲେ । ଏହି ତଥ୍ୟ ଗଙ୍ଗବଂଶୀୟ ଅଭିଲେଖ ଦ୍ୱାରା ସମର୍ଥିତ ହେଉଅଛି ଏବଂ ମାଦଳାପାଞ୍ଜିର ବିବରଣୀ ସହିତ ମଧ୍ୟ ଏହାର କୌଣସି ବିରୋଧ ନ ଥିବା ଲକ୍ଷ୍ୟ କରାଯାଉଅଛି । ଶ୍ରୀଧର ସ୍ୱାମୀ ଜଗନ୍ନାଥଙ୍କ ମନ୍ଦିରରେ

ଭାଗବତର 'ଭାବାର୍ଥ ଦୀପିକା' ଟୀକା ରଚନା କରିଥିବା ଓ ପ୍ରତ୍ୟହ ଭାଗବତର ବ୍ୟାଖ୍ୟା ଶ୍ରୋତାମାନଙ୍କୁ ଶୁଣାଉଥିବା ବିଷୟ ବର୍ଣ୍ଣିତ ହୋଇଅଛି । ସୂର୍ଯ୍ୟବଂଶର ସମ୍ରାଟ କପିଳେନ୍ଦ୍ରଦେବ ମନ୍ଦିର ଚାରିପଟେ ମେଘନାଦ ପାଚେରୀ ପକାଇଥିଲେ ଏବଂ ପୁରୁଷୋତ୍ତମଦେବ ଭୋଗ ମଣ୍ଡପ ନିର୍ମାଣ କରିଥିଲେ—ଏ କଥା କବି ଲେଖିଛନ୍ତି । ପୁରୁଷୋତ୍ତମଦେବ ରଥଯାତ୍ରା ବେଳେ ସେବକମାନଙ୍କର ରୂପ ଯୋଗୁଁ ଛେରାପହଁରା ପ୍ରଚଳନ କରାଇଲେ । ସାଲ୍ୱ ନରସିଂହ ସହିତ ଯୁଦ୍ଧକରି ତାହାର କନ୍ୟା 'ରୂପବିଂଶ'ଙ୍କୁ ବିବାହ କରିଥିବା ପ୍ରସଙ୍ଗ କବି ଉଲ୍ଲେଖ କରିଅଛନ୍ତି ଏବଂ ଏହି ଯୁଦ୍ଧରେ ଗଜପତି ରାଜାଙ୍କ ଜୟଲାଭ ପାଇଁ ଜଗନ୍ନାଥ-ବଳଭଦ୍ର କଳା-ଧଳା ଘୋଡାରେ ଚଢି ଯୁଦ୍ଧଭୂମିକୁ ଯାତ୍ରା କରିଥିବା ଏବଂ ଠାକୁରଙ୍କ କୃପାରୁ ଗଜପତିଙ୍କର ବିଜୟ ହୋଇଥିବା କଥା ଲେଖିଛନ୍ତି । ଏଥିରୁ କାଞ୍ଚି-କାବେରୀ ଘଟଣାର ପ୍ରାମାଣିକତା ଜଣାଯାଏ ଏବଂ ଏହି ଘଟଣାର ପରବର୍ତ୍ତୀ ପଲ୍ଲବନ, ବିସ୍ତାର ଓ ସଂଯୋଜନାକୁ ଅନୁଶୀଳନ କରିବା ସମ୍ଭବ ହୁଏ ।

ତୃତୀୟ ଅଧ୍ୟାୟରେ ରାଜଗୁରୁ ଦିବାକର ମିଶ୍ରଙ୍କ ରଚିତ "ଅଭିନବ ଗୀତ-ଗୋବିନ୍ଦ" ପ୍ରସଙ୍ଗରେ ଉଲ୍ଲେଖ କରାଯାଇଅଛି । ଜୟଦେବଙ୍କ 'ଗୀତଗୋବିନ୍ଦ' ଗାନକୁ ଶ୍ରୀମନ୍ଦିରରେ ନିଷିଦ୍ଧ କରାଗଲା ଓ ଅଭିନବ ଗୀତଗୋବିନ୍ଦ ଗାନ ପ୍ରଚଳନ କରାଗଲା । ଏଥିରେ ସେବକମାନେ ସନ୍ତୁଷ୍ଟ ହେଲେନାହିଁ ବୋଲି କବି ଲେଖିଛନ୍ତି । ଉଭୟ ଗୀତଗୋବିନ୍ଦ ସେବକମାନେ ଜଗନ୍ନାଥଙ୍କ ଶ୍ରୀମୁଖରେ ଥୋଇଦେଲେ । ପ୍ରଭାତରେ ଦେଖାଗଲା, ଜୟଦେବଙ୍କ ପୋଥି ଉପରେ ଅଛି । ଗଜପତି ପ୍ରତାପରୁଦ୍ରଙ୍କ ଆଦେଶରେ ଉଭୟ ଗୀତଗୋବିନ୍ଦ ଗାନ ପ୍ରଚଳିତ ହେଲା ଏବଂ ଏ ଉଭୟର ଗାନ ଲାଗି ସମୟ ଓ ସମ୍ପ୍ରଦାୟ ମଧ୍ୟ ନିର୍ଦ୍ଦିଷ୍ଟ କରିଦିଆଗଲା । ମାତ୍ର କାଳକ୍ରମେ ଦେଖାଗଲା, ଦିବାକର ମିଶ୍ରଙ୍କ ଗୀତଗୋବିନ୍ଦକୁ ଗାୟକମାନେ ଗୁରୁତ୍ୱ ଦେଲେନାହିଁ । ଫଳରେ ତାହା ଆଉ ଜଗନ୍ନାଥଙ୍କ ଶ୍ରୀମୁଖରେ ଗୀତ ହୋଇପାରିଲାନାହିଁ ଏବଂ ପରେ ଏହି କାରଣରୁ କବିଚନ୍ଦ୍ର ରାୟ ଦିବାକର ମିଶ୍ର ଅପମାନିତ ହୋଇ ପୁରୀ ପରିତ୍ୟାଗ କଲେ ଓ ଦକ୍ଷିଣକୁ ଚାଲିଗଲେ । ଜୟଦେବଙ୍କ ଗୀତଗୋବିନ୍ଦର ମାଧୁର୍ଯ୍ୟ ଭକ୍ତମାନଙ୍କୁ ବିମୁଗ୍ଧ କରୁଥିଲା ଏବଂ ସେମାନେ ଏଥିରେ ସନ୍ତୁଷ୍ଟ ହେଲେ । କବି ଏହି ଅଧ୍ୟାୟରେ ମାଧବେନ୍ଦ୍ର ପୁରୀଙ୍କ ପ୍ରସଙ୍ଗ ଉଲ୍ଲେଖ କରିଅଛନ୍ତି । ମାଧବେନ୍ଦ୍ରଙ୍କ ସାଧକ ଜୀବନର ମହିମା କବି ଅନେକ ପ୍ରକାରେ ବର୍ଣ୍ଣନା କରିଛନ୍ତି । ରେମୁଣାର ଶ୍ରୀଗୋପୀନାଥ ଭକ୍ତ ମାଧବେନ୍ଦ୍ର ପୁରୀଙ୍କ ଲାଗି କ୍ଷୀରଭୋଗ ଚୋରିକରି ରଖିଲେ କ୍ଷୀରଚୋରା ଉପାଧିରେ ଭୂଷିତ ହେଲେ, କବି ତାହାର ଭକ୍ତିପୂର୍ଣ୍ଣ ବର୍ଣ୍ଣନା ଦେଇଛନ୍ତି । ଏହି ପ୍ରସଙ୍ଗରେ କବି ମାଧବ ପଟ୍ଟନାୟକ ବେଣ୍ଟପୁର ଗ୍ରାମରେ ମାଧବେନ୍ଦ୍ର ପୁରୀଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିବା ବିଷୟ ଲେଖିଛନ୍ତି ଏବଂ ପୁରୀ କ୍ଷେତ୍ରରେ ମାଧବେନ୍ଦ୍ର ପୁରୀ ଦେହରକ୍ଷା କରିଥିବା କହିଛନ୍ତି । ରାମାନନ୍ଦ ରାୟ 'ଜଗନ୍ନାଥବଲ୍ଲଭ ନାଟକ' ରଚନା କଲେ ଓ ଶ୍ରୀମନ୍ଦିରରେ ତାହା ଅଭିନୀତ ହେଲା

ଏଥିପାଇଁ ଗଜପତି ରାଜା ରାୟ ରାମାନନ୍ଦଙ୍କୁ ପୁରସ୍କୃତ କଲେ ଓ ରାୟ ଉପାଧିରେ ଭୂଷିତ କଲେ । ତାପରେ ତାଙ୍କୁ ରାଜମହେନ୍ଦ୍ରୀର ଶାସକରୂପେ ନିଯୁକ୍ତ କଲେ; ସେତେବେଳେ କବି ମାଧବ ପଟ୍ଟନାୟକ ରାୟ ରାମାନନ୍ଦଙ୍କ ସହିତ ରାଜମହେନ୍ଦ୍ରୀରେ ଅବସ୍ଥାନ କରିଥିବା କଥା ଲେଖିଛନ୍ତି । ରାୟ ରାମାନନ୍ଦଙ୍କ ଭକ୍ତିଭାବ ଓ ପାଣ୍ଡିତ୍ୟର କବି ଭୂୟସୀ ପ୍ରଶଂସା କରିଛନ୍ତି । ବୈଷ୍ଣବ ରସତତ୍ତ୍ୱର ରାୟ ରାମାନନ୍ଦଙ୍କର ଗଭୀର ପ୍ରବେଶ ଏବଂ ରାଧାକୃଷ୍ଣ ପ୍ରେମ-ରସ ଆସ୍ୱାଦନରେ ତାଙ୍କର ଅଭିନିବେଶ ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଏ । ଠିକ୍ ଏହି ସମୟରେ କୃଷ୍ଣଦେବ ରାୟଙ୍କ ଗଜପତି ରାଜାଙ୍କର ଯୁଦ୍ଧଆସନ୍ନ ଜଣାଗଲା । ମାତ୍ର ରାଜମହେନ୍ଦ୍ରୀର ଶାସକ ରାୟ ରାମାନନ୍ଦ ପ୍ରେମଭକ୍ତି ରସରେ ନିମଜ୍ଜିତ ରହିଥିବାରୁ ଯୁଦ୍ଧ ଓ ସୈନ୍ୟ ସଗଠନ ପ୍ରତି ଉଦାସୀନତା ଦେଖାଇଲେ । ଏହି କାରଣରୁ ଗଜପତି ରାଜମହେନ୍ଦ୍ରୀର ଶାସକ ପଦରୁ ରାୟ ରାମାନନ୍ଦଙ୍କୁ ଅବ୍ୟାହତି ଦେଲେ ଏବଂ ସେହି ସ୍ଥାନରେ ନବଦେବାଶ୍ୱର୍ଯ୍ୟଙ୍କୁ ନିଯୁକ୍ତ କଲେ । ରାଜମହେନ୍ଦ୍ରୀର ଶାସକ ପଦରୁ ରାୟ ରାମାନନ୍ଦଙ୍କୁ ଫେରାଇଆଣି ଗଜପତି ତାଙ୍କୁ ଶ୍ରୀମନ୍ଦିରର ହିସାବକିତାବ ବୁଝିବା କାର୍ଯ୍ୟରେ ନିଯୁକ୍ତ କଲେ । ପ୍ରଚଳିତ ଅର୍ଥରେ ରାୟ ରାମାନନ୍ଦ ହେଲେ ଶ୍ରୀମନ୍ଦିରର ତତ୍ତ୍ୱାବଧାରକ । ସେତେବେଳେ ବୋଧହୁଏ ଏହାର ଆବଶ୍ୟକତା ଥିଲା । କାରଣ ତାହାର କିଛି ବର୍ଷ ପୂର୍ବରୁ ମନ୍ଦିର ଉପରେ ବଙ୍ଗଳାର ମୁସଲମାନ ଶାସକଙ୍କର ଆକ୍ରମଣର ଶଙ୍କା କରି ସେବକମାନେ ଶ୍ରୀବିଗ୍ରହଙ୍କୁ ହାତୀ ପିଠିରେ ନେଇ ଚିଲିକା ହ୍ରଦ ମଧ୍ୟସ୍ଥ ଗଡ଼ଜଙ୍ଗଲରେ ଲୁଚାଇ ରଖିଥିଲେ । ଗଜପତି ଦକ୍ଷିଣରେ ଯୁଦ୍ଧରେ ବ୍ୟସ୍ତ ଥିଲେ । ଏ ସମ୍ବାଦ ପାଇବା ପରେ ସେ ସହସା ଉତ୍ତରକୁ ଯାତ୍ରାକରି ଶତ୍ରୁ ସୈନ୍ୟମାନଙ୍କୁ ଘଉଡ଼ାଇ ଦେଇଥିଲେ ଏବଂ ଗଡ଼ଜଙ୍ଗଲରୁ ଶ୍ରୀବିଗ୍ରହମାନଙ୍କୁ ଆଣି ପୁଣି ଶ୍ରୀମନ୍ଦିରରେ ସ୍ଥାପନ କରାଯାଇଥିଲା । ଏ ବିଷୟ କହ୍ନାଇ ଖୁଣ୍ଟିଆଙ୍କ 'ମହାଭାବ ପ୍ରକାଶ'ରେ ଲିପିବଦ୍ଧ ହୋଇଛି ଏବଂ ମାଧବ ପଟ୍ଟନାୟକ ମଧ୍ୟ ଏହାର ବର୍ଣ୍ଣନା ଦେଇଛନ୍ତି ।

ଶ୍ରୀଚୈତନ୍ୟଙ୍କର ପୁରୀ ଆଗମନ ପ୍ରସଙ୍ଗ ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣିତ । ଶ୍ରୀଚୈତନ୍ୟ ପୁରୀ ଆସି ଜଗନ୍ନାଥ ମନ୍ଦିରରେ ପ୍ରବେଶ କଲେ ଏବଂ ଶ୍ରୀବିଗ୍ରହର ପ୍ରଥମ ଦର୍ଶନରେ ଅଚେତ ହୋଇପଡ଼ିଲେ । ଦୈବାତ୍ ବାସୁଦେବ ସାର୍ବଭୌମ ମନ୍ଦିରରେ ଉପସ୍ଥିତ ଥିଲେ ଏବଂ ଏହି ଯୁବକ ସନ୍ନ୍ୟାସୀଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ଆପଣା ବାସଭବନକୁ ନେଲେ । ଶ୍ରୀକ୍ଷେତ୍ରରେ ଚୈତନ୍ୟ ଏକମାସ ରହିବା ମଧ୍ୟରେ ମନ୍ଦିର-ବେଢ଼ା ଭିତରେ ବଟଗଣେଶ ମୂଳେ ଜଗନ୍ନାଥ ଦାସ ଭାଗବତ ବ୍ୟାଖ୍ୟା କରୁଥିବାର ଶୁଣିଲେ । ଏହି ସ୍ଥାନରେ ଗୋଟିଏ ସହାସ ମଣ୍ଡପ ନିର୍ମାଣ କରାଯାଇଥିଲା ଏବଂ ସେଥିରେ ରାଧାକୃଷ୍ଣ ମୂର୍ତ୍ତି ସ୍ଥାପନ କରାଯାଇଥିଲା । ଜଗନ୍ନାଥ ଦାସ ଏଠାରେ ପ୍ରତ୍ୟହ ଭାଗବତ ପଢ଼ି ତାହାର ବ୍ୟାଖ୍ୟା ଭକ୍ତମାନଙ୍କୁ ଶୁଣାଉଥିଲେ । ମଧୁର ସ୍ୱରରେ

ଆପଣାର ଭାଗବତ ରଚନାକୁ ଗାନକରି ଶୁଣାଉଥିଲାବେଳେ ଜଗନ୍ନାଥ ଦାସ ଭକ୍ତି ଭାବରେ ବିହ୍ୱଳ ହୋଇପଡ଼ୁଥିଲେ । ଶ୍ରୀଚୈତନ୍ୟ ଦିନେ ସନ୍ଧ୍ୟାରେ ସେଠାରେ ଉପସ୍ଥିତ ହୋଇ ଜଗନ୍ନାଥ ଦାସଙ୍କର ଭାଗବତ ବ୍ୟାଖ୍ୟା ଶୁଣିଲେ ଏବଂ ତାଙ୍କ ଭକ୍ତି ଭାବର ଗଭୀରତା ଲକ୍ଷ୍ୟ କରି ଭାବବିହ୍ୱଳ ହେଲେ । ଭାଗବତପାଠ ବେଳେ ଜଗନ୍ନାଥଙ୍କର ପୁଲକିତ ଅଙ୍ଗ ଓ ଗଳଦଶ୍ରୁ ନୟନ ନିରୀକ୍ଷଣ କରି ଚୈତନ୍ୟ ଧୈର୍ଯ୍ୟ ହରାଇଲେ । ଜଗନ୍ନାଥ ଦାସଙ୍କର ଭକ୍ତିଭାବର ପରାକାଷ୍ଠା ଚୈତନ୍ୟଙ୍କ ବୁଝିବାରେ ଅସୁବିଧା ନ ଥିଲା । ଚୈତନ୍ୟ କହିଲେ—ଜଗନ୍ନାଥ, ତୁମ ଭାବ ମୁଁ କହୁଁ ପାଇବି ? ତୁମର ସଙ୍ଗ ମୁଁ ଛାଡ଼ିବିନାହିଁ । ଦୁହେଁ ପରସ୍ପର ପ୍ରତି ଗଭୀର ଆକର୍ଷଣ ଅନୁଭବ କରି ଅନେକ ପ୍ରହର ପର୍ଯ୍ୟନ୍ତ କୋଳାଗତ ଅବସ୍ଥାରେ ରହିଲେ । ଦୁହେଁ ଏକାଠି ବସି ପରସ୍ପରକୁ ପ୍ରଶଂସା କଲେ । ଜଗନ୍ନାଥଙ୍କୁ ଚୈତନ୍ୟ 'ସ୍ୱାମୀ' ବୋଲି କହିଲେ ଓ ଜଗନ୍ନାଥ ଦାସ ଚୈତନ୍ୟଙ୍କୁ 'ପ୍ରଭୁ' ବୋଲି ସମ୍ବୋଧନ କଲେ । ଏ ମହାମିଳନକୁ ମାଧବ ପଟ୍ଟନାୟକ ଗଙ୍ଗାସାଗର ସଙ୍ଗମ ସହିତ ତୁଳନା କରିଛନ୍ତି । ସାର୍ବଭୌମଙ୍କ ସହିତ ଚୈତନ୍ୟଙ୍କର ଆଳାପ ଆଲୋଚନା ଏବଂ ଶାସ୍ତ୍ରାର୍ଥ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ସାର୍ବଭୌମ ଚୈତନ୍ୟଙ୍କର ଗଭୀର ଭକ୍ତିଭାବର ପରିଚୟ ପାଇଲେ; ଶୁଷ୍କ ଜ୍ଞାନ ଅପେକ୍ଷା ସରସ ଭକ୍ତିର ଗୁରୁତ୍ୱ ଉପଲବ୍ଧି କଲେ ଏବଂ ଚୈତନ୍ୟଙ୍କୁ ପ୍ରଭୁ ବୋଲି ସ୍ୱୀକାର କଲେ । ମାତ୍ର ସାର୍ବଭୌମଙ୍କୁ ଚୈତନ୍ୟ ଷଡ଼ଭୁଜ ଦେଖାଇବା ବିଷୟରେ ମାଧବ ପଟ୍ଟନାୟକ କିଛି ଲେଖିନାହାନ୍ତି । ତାପରେ ଚୈତନ୍ୟ ବାହାରିଲେ ଦକ୍ଷିଣକୁ ତୀର୍ଥଯାତ୍ରାରେ । ସାର୍ବଭୌମ କହିଲେ, ଯଦି ଦକ୍ଷିଣକୁ ଯାଉଛନ୍ତି, ତେବେ ରାମ ରାୟଙ୍କ ସହିତ ଅବଶ୍ୟ ସାକ୍ଷାତ କରିବ । କାରଣ ରାମ ରାୟ ଭକ୍ତିତତ୍ତ୍ୱ ଜାଣେ । ରାଗ ମାର୍ଗରେ ତାହାର ମତି ଦୃଢ଼ । ମୁଁ କୃଷ୍ଣତତ୍ତ୍ୱ କଥା କିଛି ଜାଣେନାହିଁ । ରାମ ରାୟ ହିଁ ସେ ସକଳ ବିଷୟରେ ପ୍ରବୀଣ । ଚୈତନ୍ୟ ତା'ପରେ ଦକ୍ଷିଣକୁ ଯାଇ ଗୋଦାବରୀ ନଦୀ କୂଳରେ ରାୟ ରାମାନନ୍ଦଙ୍କୁ ଦେଖିଲେ ଏବଂ ପ୍ରଥମ ଦର୍ଶନରେ ଦୁହେଁ ଦୁହିଙ୍କ ପ୍ରତି ଆକୃଷ୍ଟ ହେଲେ । ଚୈତନ୍ୟ ସେଠାରେ ରାମ ରାୟଙ୍କ ଅତିଥି ହୋଇ ଦଶଦିନ ରହିଲେ ଏବଂ ରାମ ରାୟ ତାଙ୍କୁ ରାଗ ମାର୍ଗର ତତ୍ତ୍ୱମାନ ଶିକ୍ଷା ଦେଲେ । ପ୍ରେମକୁ ପରମ ପୁରୁଷାର୍ଥ ରୂପେ ରାମ ରାୟ ଚୈତନ୍ୟଙ୍କ ନିକଟରେ ପ୍ରତିପାଦନ କଲେ । କାନ୍ତାପ୍ରେମ ଭଜନ ମାର୍ଗର ସର୍ବୋତ୍ତମ ବୋଲି ନିରୂପଣ କଲେ । ରାଧା-ଭାବର ଗଭୀରତା ଏବଂ ଶ୍ରେଷ୍ଠତ୍ୱ ରାମାନନ୍ଦଙ୍କ ଉକ୍ତିରେ ପ୍ରକଟିତ ହେଲା । ରାମାନନ୍ଦ ଚରମ ତତ୍ତ୍ୱରେ ଉପନୀତ ହେଲାବେଳେ ଚୈତନ୍ୟ ଧୈର୍ଯ୍ୟ ହରାଇଲେ । ଦୁଃସହ ରାଧାଭାବର ଆକୁଳତା ଚୈତନ୍ୟଙ୍କର ସନ୍ନ୍ୟାସୀ ଅନ୍ତରକୁ ଆଲୋଡ଼ିତ କଲା । ଚୈତନ୍ୟଙ୍କୁ ରାୟ ରାମାନନ୍ଦ 'ରାଧା-ଅବତାର' ବୋଲି ସ୍ୱୀକାର କଲେ । ଚୈତନ୍ୟ ରାୟ ରାମାନନ୍ଦଙ୍କୁ ଗୁରୁ ରୂପେ ଗ୍ରହଣକଲେ । ଚୈତନ୍ୟ ତା'ପରେ ତୀର୍ଥଭ୍ରମଣ ସାରି ପୁଣି ରାଜମହେନ୍ଦ୍ରୀରେ ଆସି ଉପସ୍ଥିତ ହେଲେ । ପ୍ରୟାଗରୁ ସେ ପୁରୀକୁ ଆସି-ପାରିଥାନ୍ତେ; କିନ୍ତୁ ରାୟ ରାମାନନ୍ଦଙ୍କ ଠାରେ ଚୈତନ୍ୟଙ୍କର ମନ ଓ ପ୍ରାଣ ବନ୍ଧା

ପଡ଼ିଯାଇଥିଲା । ଦୈବଯୋଗରେ ସେତେବେଳେ ଗଜପତି ରାୟ ରାମାନନ୍ଦଙ୍କୁ ରାଜମହେନ୍ଦ୍ରୀରୁ ହଟାଇଆଣି ପୁରୀ ମନ୍ଦିରର ତତ୍ତ୍ୱାବଧାରକ ରୂପେ ନିଯୁକ୍ତ କଲେ । ବିରାଡ଼ି ଅଦୃଷ୍ଟକୁ ଶିକା ଛିଡ଼ିଲା ନ୍ୟାୟରେ ଚୈତନ୍ୟ ପୁରୀରେ ରାୟ ରାମାନନ୍ଦଙ୍କର ନିୟତ ସଙ୍ଗ ସୌଖ୍ୟ ଲାଭକରିବାର ସୁଯୋଗ ପାଇଲେ । ରାମାନନ୍ଦ ପୁରୀରେ ଉପସ୍ଥିତ ରହି ସାଧୁ ବୈଷ୍ଣବମାନଙ୍କର ଚର୍ଚ୍ଚା କଲେ । ମନ୍ଦିର ଉତ୍ତରପାର୍ଶ୍ୱରେ ଏତ ଏକ ମଣ୍ଡପ ନିର୍ମାଣ କଲେ । ଏହି ମଣ୍ଡପରେ ପ୍ରତ୍ୟହ ନୀଳାଚଳରେ ଉପସ୍ଥିତ ଥିବା ରାଗମାର୍ଗୀ ବୈଷ୍ଣବଗୋଷ୍ଠୀ ଏକତ୍ରିତ ହେଉଥିଲେ । ଏହା ରାୟ ରାମାନନ୍ଦଙ୍କର ଇଷ୍ଟଗୋଷ୍ଠୀ । କବିରାଜ ଗୋସ୍ୱାମୀ ଏହାକୁ ଚୈତନ୍ୟଙ୍କର ଇଷ୍ଟଗୋଷ୍ଠୀ ବୋଲି ଭୁଲରେ ଲେଖିଛନ୍ତି ।

ପଞ୍ଚମ ଅଧ୍ୟାୟରେ ଗଜପତି ରଥଯାତ୍ରା ବେଳେ ଚୈତନ୍ୟଙ୍କର କୀର୍ତ୍ତନ ନୃତ୍ୟ ଦେଖି ବିସ୍ମିତ ହେବା ଏବଂ ଚୈତନ୍ୟଙ୍କର ପୁରୀରେ ସୁଖାବସ୍ଥାନ ଲାଗି ସୁବ୍ୟବସ୍ଥା କରିବା ସକାଶେ କାଶୀ ମିଶ୍ରଙ୍କୁ ନିର୍ଦ୍ଦେଶ ଦେବା ବିଷୟ ବର୍ଣ୍ଣିତ । ସ୍ୱତଃ ଚୈତନ୍ୟ ପୁରୀରେ ତାଙ୍କର ଦୀର୍ଘ ଅଠରବର୍ଷ ଅବସ୍ଥାନକାଳ ଏକାଦିକ୍ରମେ କାଶୀ ମିଶ୍ରଙ୍କ ଗମ୍ଭୀରାରେହିଁ କଟାଇଥିଲେ । ଚୈତନ୍ୟ ପୁରୀରୁ ରାମକେଳି ଗଲେ—ରୂପ ସନାତନଙ୍କର ରାଜକାର୍ଯ୍ୟ ଛଡ଼ାଇଲେ—ପୁରୀ ଫେରିଆସିଲେ । ଆଉଥରେ ସେ ପୁରୀରୁ ଅରଣ୍ୟ ମାର୍ଗରେ ପ୍ରୟାଗ ପର୍ଯ୍ୟନ୍ତ ଗଲେ ଏବଂ ଏଠାରେ ରୂପ ସନାତନଙ୍କୁ ଭେଟିଲେ । ଏ ଦୁଇ ଭାଇଙ୍କୁ ପୁରୀ ଆସିବାଲାଗି ନିମନ୍ତ୍ରଣ କଲେ । ତା'ପରେ ରୂପ ଗୋସ୍ୱାମୀ ପୁରୀ ଆସିଲେ ଓ ଏଠାରେ ଦଶମାସ ରହିଲେ । ଏହି ଦଶମାସ ଅବସ୍ଥାନ କାଳରେ ରାୟ ରାମାନନ୍ଦଙ୍କ ସହିତ ରୂପ ଗୋସ୍ୱାମୀଙ୍କୁ ଚୈତନ୍ୟ ପରିଚୟ କରାଇଲେ । ରୂପ ରାୟ ରାମାନନ୍ଦଙ୍କଠାରୁ ସମ୍ପ୍ରଦାୟ ବୈଷ୍ଣବ ରସତତ୍ତ୍ୱ ଶିକ୍ଷା କଲେ । ରାୟ ରାମାନନ୍ଦ ସେ କାଳରେ ଥିଲେ ଜଣେ ପ୍ରଖ୍ୟାତ ବୈଷ୍ଣବ ରସତତ୍ତ୍ୱବେତ୍ତା— ଏ କଥା ଚୈତନ୍ୟ ଭଲଭାବରେ ଜାଣିଥିଲେ ଏବଂ ରୂପ ଗୋସ୍ୱାମୀଙ୍କର ପାଣ୍ଡିତ୍ୟ ମଧ୍ୟ ତାଙ୍କୁ ଜଣାଥିଲା । ରାୟ ରାମାନନ୍ଦ ଓ ରୂପ ଗୋସ୍ୱାମୀଙ୍କର ମିଳନ ବୈଷ୍ଣବ ରସ-ସାହିତ୍ୟର ଇତିହାସରେ ବାସ୍ତବରେ ଥିଲା ଏକ ମଣି-କାଞ୍ଚନ ଯୋଗ । ଦଶମାସ ପରେ କାଶୀ ମିଶ୍ର ପ୍ରମୁଖ ପୁରୀର ସ୍ମାର୍ତ୍ତ ପଣ୍ଡିତମାନେ ରୂପଙ୍କ ବିରୁଦ୍ଧରେ ନାନା ଅଭିଯୋଗ କଲେ ଏବଂ ଚୈତନ୍ୟ ଏଥିରେ ଅଗତ୍ୟା ବାଧ୍ୟ ହୋଇ ରୂପଙ୍କୁ ବୃନ୍ଦାବନକୁ ପଠାଇଦେଲେ ଓ ସେଠାରେ ପୀଠ ଗଢ଼ି ବୈଷ୍ଣବ ଶାସ୍ତ୍ର ଲେଖିବା ପାଇଁ ଇଙ୍ଗିତ ଦେଲେ । ସନାତନ ଗୋସ୍ୱାମୀ ତା'ପରେ ପୁରୀକୁ ଆସି ଏକବର୍ଷ ରହିଲେ । ଏଠାକୁ ଆସିଲାପରେ ସନାତନ ଗୋସ୍ୱାମୀ ଜୀବନ ତ୍ୟାଗକରିବାର ସଙ୍କଳ୍ପ ନେଇ ରଥ ଚକତଳେ ପଡ଼ି ଆତ୍ମହତ୍ୟା କରିବାକୁ ଯାଉଥିଲେ; ମାତ୍ର ଚୈତନ୍ୟ ଓ ଅନ୍ୟାନ୍ୟ ବୈଷ୍ଣବମାନଙ୍କ ସହାୟତାରୁ ସେ ଆତ୍ମହତ୍ୟା ଅପରାଧରୁ ମୁକ୍ତ ହେଲେ ଏବଂ ଜଗନ୍ନାଥ ଦାସଙ୍କଠାରୁ ଭକ୍ତିତତ୍ତ୍ୱମାନ

ଯିଷ୍ଠା କଲେ । ପୁରୀରେ ଜଗନ୍ନାଥ ଦାସ ଥିଲେ ଜଣେ ପ୍ରଖ୍ୟାତ ଭକ୍ତିତତ୍ତ୍ୱବେତ୍ତା— ଏ କଥା ମାଧବ ପଟ୍ଟନାୟକ ଲେଖିଛନ୍ତି । ସେନାଙ୍କ ୨୪ ଅଙ୍କରେ ଅର୍ଥାତ ଖ୍ରୀ: ୧୫୧୭ରେ ଉତ୍ତରରୁ ସନ୍ଥ କବୀର ପୁରୀକୁ ଆସି ଏଠାରେ ଏକମାସ ଅବସ୍ଥାନ କରିଥିବା ବିଷୟ ମାଧବ ପଟ୍ଟନାୟକଙ୍କ ବିବରଣୀରୁ ଜଣାଯାଏ । ଜଗନ୍ନାଥ ଦାସଙ୍କ ସହିତ ସନ୍ଥ କବୀର ଦାସଙ୍କର ଅନେକ ବିଷୟରେ ତାତ୍ତ୍ୱିକ ଆଲୋଚନା ବର୍ଣ୍ଣିତ ହୋଇଅଛି । ଜଗନ୍ନାଥ ଦାସ କବୀରଙ୍କୁ ଯେଉଁ କେତୋଟି କଥା କହିଲେ, ତା ମଧ୍ୟରେ ଗୋଟିଏ ବଡ଼କଥା ହେଉଛି—"ମୂରଖ ବାଞ୍ଛା ନର୍କ ଗୁଳା ।" ପରବର୍ତ୍ତୀ ସମୟରେ ଏହା ଗୌଡ଼ର ଓ ବୃନ୍ଦାବନର ବୈଷ୍ଣବତତ୍ତ୍ୱ ଦର୍ଶନ ଜଗତରେ ମୁଖ୍ୟସ୍ଥାନ ପାଇଥିବା ଜଣାଯାଏ । ମାତ୍ର ଏହି ବୈପ୍ଳବିକ ମତବାଦର ପ୍ରଥମ ଉଦ୍‌ଗାତା ଯେ ଜଗନ୍ନାଥ ଦାସ, ଏହା କେହି କେଉଁଠି କହିଲେନାହିଁ । ମାଧବ ପଟ୍ଟନାୟକ କିନ୍ତୁ ଏ କଥା ଲେଖିଛନ୍ତି । ଉତ୍ତରରୁ ପୁରୀକୁ ସେହି ସମୟରେ ବଲ୍ଲଭାଚାର୍ଯ୍ୟଙ୍କର ଆଗମନ କଥା ମଧ୍ୟ ଏଥିରେ ଲେଖା ଅଛି । ଜଗନ୍ନାଥ ଦାସଙ୍କ ସହିତ ବଲ୍ଲଭଙ୍କର ତାତ୍ତ୍ୱିକ ଆଲୋଚନା ପରେ ସେ ଗୋପୀଜନବଲ୍ଲଭ ଜଗନ୍ନାଥଙ୍କଠାରେ ଭକ୍ତି ଅର୍ପଣ କରୁଥିବା ପ୍ରମାଣ କଲେ ।

ଚୈତନ୍ୟ ଓ ଜଗନ୍ନାଥ ଦାସଙ୍କର ଅଭେଦ ତାଦାତ୍ମ୍ୟ ପ୍ରମାଣ କରିବାକୁ ଯାଇ ମାଧବ ପଟ୍ଟନାୟକ ଉଭୟଙ୍କର ଏକାନ୍ତ ଆଳାପ ଆଲୋଚନା ପ୍ରସଙ୍ଗ ଲେଖିଛନ୍ତି । ପୂର୍ବ ସିଦ୍ଧାନ୍ତ ପ୍ରସଙ୍ଗ ଉତ୍‌ଥାପନ କରିବାରୁ ଜଗନ୍ନାଥ ଦାସ କହିଲେ—ରାଧାଙ୍କ ହୃଦରୁ ମୋର ଜନ୍ମ ଓ କୃଷ୍ଣଙ୍କ ହୃଦରୁ ତୁମର ଜନ୍ମ । ଏଥିରେ ଚୈତନ୍ୟ ଏତେଦୂର ମୁଗ୍ଧ ହେଲେ ଯେ, ନିଜ କାନ୍ଧର ବହିର୍ବାସ ନେଇ ଦାସଙ୍କ ମୁଣ୍ଡରେ ଶିରୋପା ବାନ୍ଧି ଦେଲେ ଏବଂ 'ଅତି ବଡ଼' ବୋଲି କହିଲେ । ଏହା ଅତି ବଡ଼ କଥା । ସମସ୍ତଙ୍କର ସ୍ଫୁରଣ ନ ଥାଏ । ତୁମେ ଏ ଅତିବଡ଼ କଥା କହିଥିବାରୁ ଆଜିଠାରୁ 'ଅତିବଡ଼' ହେଲ । ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ଏ ନିବିଡ଼ ସଖ୍ୟ ବାସ୍ତବରେ ଅଦ୍ୱିତୀୟ । ଏହାର ଯଥାଯଥ ପରିଚୟ ମାଧବ ପଟ୍ଟନାୟକ ଦେଇଛନ୍ତି । ଏହି ଅଧ୍ୟାୟ ଶେଷରେ ପଞ୍ଚସଖାନ୍ତର୍ଗତ ବଳରାମ ଦାସଙ୍କର ଭକ୍ତିଗୌରବର ପରାକାଷ୍ଠା ବର୍ଣ୍ଣିତ ହୋଇଅଛି । ଭକ୍ତିଗୌରବର ମହାସମୁଦ୍ରରେ ନିତ୍ୟ ଅବଗାହନ କରୁଥିଲେ ମହାତ୍ମା ବଳରାମ ଦାସ । ଥରେ ରଥଯାତ୍ରା ବେଳେ ବଳରାମ ରଥ ଉପରକୁ ଉଠି ଠାକୁରଙ୍କୁ ମାଳା ପିନ୍ଧାଇ ଦେବାକୁ ଯାଉଛନ୍ତି, ସେବକମାନେ ତାଙ୍କୁ ଏଥିପାଇଁ ମନାକରିଦେଲେ । ମାଳା ହସ୍ତରେ ଦୁଃଖରେ, ଅପମାନରେ ବଳରାମ ରଥ ଉପରୁ ତଳକୁ ଓହ୍ଲାଇଆସି ସିଧା ଚାଲିଲେ ସମୁଦ୍ରକୂଳକୁ । ସମୁଦ୍ରକୂଳର ବାଲିରେ ରଥ ତିଆରି କଲେ; ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ଆର୍ତ୍ତିକଣ୍ଠରେ ଡାକିଲେ—ହେ ପ୍ରଭୁ ! ମୋର ବାଲି ରଥରେ ବିଜେକରିବ ନାହିଁ ? ସତକୁ ସତ ବାଲି ରଥରେ ପ୍ରଭୁ ବିଜେ ହେଲେ ।

ବଡ଼ଦାଣ୍ଡରେ ରଥ ପଡ଼ିରହିଲା; ଶତଚେଷ୍ଟାରେ ମଧ୍ୟ ତାହା ଚଳିଲା ନାହିଁ। ରାତିରେ ରାଜାଙ୍କୁ ସ୍ୱପ୍ନ ହେଲା। ରାଜା ସେବକମାନଙ୍କ ସହିତ ଘଣ୍ଟୁଆରିରେ ଯାଇ ବଳରାମଙ୍କୁ ପ୍ରାର୍ଥନା କଲେ ଏବଂ ଫୁଲ ଚନ୍ଦନ ଦେଇ ତାଙ୍କ ମନବୋଧ କଲେ। ଘଣ୍ଟ ମୃଦଙ୍ଗ ଚେଁକାଳି ନାଦରେ ସମୁଦ୍ରକୂଳ ଉଚ୍ଛୁଳି ଉଠିଲା। ରାଜା ଓ ସେବକମାନଙ୍କ ସହିତ ବଳରାମ ଦାସ ବଡ଼ଦାଣ୍ଡକୁ ଆସିଲେ ଏବଂ ଠାକୁର ମଧ୍ୟ ରଥରେ ବିଜେ ହେଲେ। ରଥ ଉପରକୁ ଉଠି ବଳରାମ ଶ୍ରୀଜଗନ୍ନାଥଙ୍କୁ ଫୁଲମାଳ ପିନ୍ଧାଇଦେଲେ; ସର୍ବାଙ୍ଗରେ ଚନ୍ଦନ ଲେପନ କଲେ। ତା'ପରେ ପୁଣି ବଡ଼ଦାଣ୍ଡରେ ତିନି ଠାକୁରଙ୍କର ରଥ ଘିଡ଼ି ଘିଡ଼ି ଗଡ଼ିଚାଲିଲା। ଏ ବିଷୟ ବଳରାମ ଦାସ ନିଜେ ତାଙ୍କ 'ଭାବସମୁଦ୍ର'ରେ ଲେଖିଛନ୍ତି। ମାଧବ ପଟ୍ଟନାୟକ ମଧ୍ୟ ସେହି ପ୍ରସଙ୍ଗର ବର୍ଣ୍ଣନା କରିଅଛନ୍ତି।

ଷଷ୍ଠ ଅଧ୍ୟାୟରେ ନୀଳାଚଳରେ ସମବେତ ବୈଷ୍ଣବମାନଙ୍କ ମଠରେ ମହାମନ୍ତ୍ରକୁ କେନ୍ଦ୍ରକରି ଉପୁଜିଥିବା ବିବାଦର ବର୍ଣ୍ଣନା ଦିଆଯାଇଛି। ମହାମନ୍ତ୍ରର ଆରମ୍ଭରେ ରାମ ନା କୃଷ୍ଣ ରହିବ ସେ ସମ୍ପର୍କରେ ଏ ବିବାଦ। କାଶୀ ମିଶ୍ର ଓ ଶିବାନନ୍ଦ ସେନଙ୍କ ମଧ୍ୟରେ ଏହାକୁ ମୂଳକରି କଳହର ସୂତ୍ରପାତ। ଏହା ଚଢ଼ି ବଢ଼ି ଶେଷରେ ସଭା ବସିବା ପର୍ଯ୍ୟନ୍ତ କଥା ଗଲା। ଉତ୍ତରପାର୍ଶ୍ୱ ମଣ୍ଡପରେ ସମସ୍ତେ ଏକତ୍ରିତ ହେଲେ। ବାସୁଦେବ ସାର୍ବଭୌମ, ଜଗନ୍ନାଥ, ବଳରାମ, ଲେଲ ଲକ୍ଷ୍ମୀଧର, ରାୟ ରାମାନନ୍ଦ, ସ୍ୱରୂପ ଦାମୋଦର, ଗଦାଧର ପଣ୍ଡିତ, ଶ୍ରୀଚୈତନ୍ୟ ସମସ୍ତେ ଉପସ୍ଥିତ ଥିଲେ। ବହୁ ଯୁକ୍ତିତର୍କ ଶାସ୍ତ୍ରାର୍ଥ ପରେ ଏହି ସଭାର ମୁଖ୍ୟ ଶ୍ରୀଚୈତନ୍ୟ ଶେଷରେ 'ହରେ ରାମକୃଷ୍ଣ' ମନ୍ତ୍ରକୁ ଅଙ୍ଗୀକାର କଲେ। ମାତ୍ର ଶିବାନନ୍ଦ ସେନ ପ୍ରମୁଖ ବଙ୍ଗୀୟ ଅନୁଗାମୀମାନେ 'ହରେ କୃଷ୍ଣରାମ' ମନ୍ତ୍ର ଗୌଡ଼ରେ ପ୍ରଚଳନ କରିବା ପାଇଁ ଇଷ୍ଟଗୋଷ୍ଠୀଠାରୁ ଅନୁମତି ନେଇଗଲେ। ଚୈତନ୍ୟ ଏହାକୁ ମଧ୍ୟ ସ୍ୱୀକାର କଲେ। କବି କର୍ଣ୍ଣପୁରଙ୍କ ପିତା ଶିବାନନ୍ଦ ସେନ ଗୌଡ଼ରୁ ପ୍ରତିବର୍ଷ ପୁରୀକୁ ଯାତ୍ରୀ ନେବାଆଣିବା ବ୍ୟବସାୟ କରୁଥିଲେ। କହ୍ନାଇ ଖୁଣ୍ଟିଆଙ୍କର ମଧ୍ୟ ଓଡ଼ରରୁ ଯାତ୍ରୀ ନେବାଆଣିବାର ବ୍ୟବସାୟ ଥିଲା। ଥରେ ଉଭୟଙ୍କ ମଧ୍ୟରେ ପୁରୀରେ ଯାତ୍ରୀମାନଙ୍କୁ ରଖାଇବା ନେଇ କଳହ ସୃଷ୍ଟି ହେଲା। କାଶୀ ମିଶ୍ରଙ୍କ ମଧ୍ୟସ୍ଥତାରେ ଏହି କଳହର ସମାଧାନ ହୋଇଥିବା ମାଧବ ପଟ୍ଟନାୟକ ଲେଖିଛନ୍ତି। ମାତ୍ର ଏହି ଘଟଣାରେ ନୀଳାଚଳର ବୈଷ୍ଣବ ଓ ଗୌଡ଼ର ଭକ୍ତମାନଙ୍କ ମଧ୍ୟରେ ସଂଘର୍ଷର ସୂତ୍ରପାତ ହେଲା। କବି ଏହି ପ୍ରସଙ୍ଗରେ ମାଧବୀ ଦାସୀଙ୍କ ବିଷୟ ବର୍ଣ୍ଣନା କରିଛନ୍ତି। ମାଧବୀ ଶିଖି ମହାନ୍ତିଙ୍କର ଭଉଣୀ। ତାଙ୍କର ଭକ୍ତିଭାବ, କବିତ୍ୱ ଶକ୍ତି ଓ ଗାନ ନୈପୁଣ୍ୟ ମନୋମୁଗ୍ଧକର। ଚୈତନ୍ୟଙ୍କ ଗୋଷ୍ଠୀରେ ସେ ଯୋଗଦେଇ ଭଜନ କୀର୍ତ୍ତନରେ କାଳଯାପନ କଲେ। କିନ୍ତୁ ଏହା ଅନେକଙ୍କର ଚକ୍ଷୁଶୂଳ ହେଲା। ଚୈତନ୍ୟଙ୍କର ବଙ୍ଗୀୟ ଅନୁଗାମୀ ମଧ୍ୟରେ ସମସ୍ତେ ଚୈତନ୍ୟଙ୍କ ଭଳି ନୀତିବାଦୀ ମହାଜନ ନ ଥିଲେ। ସାନ ହରିଦାସ ନାମରେ ଜଣେ

ଗୌଡ଼ୀୟ ଅନୁଗାମୀ ମାଧବୀ ଦାସୀଙ୍କ ସହିତ ଭାବ ବଢ଼ାଇଲେ । ମାଧବୀଙ୍କ ନିକଟକୁ ସାନ ହରିଦାସଙ୍କ ଗମନାଗମନକୁ ଶିଖି ମହାନ୍ତି ବାରଣ କଲେ । ସାଇପଡ଼ିଶାରେ କେତେକ ସନ୍ଦେହ କଲେ । ପରେ ସାୟଂକାଳରେ ଶିଖି ମହାନ୍ତି ସାନ ହରିଦାସଙ୍କୁ ମାଡ଼ ଦେଲେ । ଚୈତନ୍ୟ ଏକଥା ଶୁଣି ହରି ଦାସର ମୁହଁ ଚାହିଁବେ ନାହିଁ ବୋଲି କହିଲେ । ଦୁଃଖରେ ଅପମାନରେ ପଡ଼ି ହରିଦାସ ଶ୍ରୀକ୍ଷେତ୍ରରୁ ଚାଲିଗଲେ । ସେ ଗଙ୍ଗାରେ ଝାସ ଦେଇଥିବା ଜଣାଗଲା । ମାତ୍ର ଏ ଘଟଣା ଏତିକିରେ ଅଟକି ରହିଲା ନାହିଁ । ଶିବାନନ୍ଦ ସେନ ପ୍ରମୁଖ ବଙ୍ଗୀୟମାନେ ଏକତ୍ରିତ ହୋଇ ବିଚାର କଲେ । ଓଡ଼ିଆ ଭକ୍ତମାନଙ୍କ ସହିତ ଚୈତନ୍ୟଙ୍କର ସଖ୍ୟ ଖୁବ୍ ନିବିଡ଼ ଥିଲା । ବିଶେଷତଃ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ମିତ୍ରତା ଓ ଅନ୍ତରଙ୍ଗତା ଥିଲା ଅତି ଗଭୀର । ଜଗନ୍ନାଥ ଦାସ ସେ ପର୍ଯ୍ୟନ୍ତ ମନ୍ତ୍ର ଉପଦେଶ ନେଇ ନ ଥିଲେ । ଅଣ-ଉପଦେଶିଆ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ଘନିଷ୍ଠତା ବଙ୍ଗୀୟ ଅନୁଗାମୀମାନଙ୍କ ମଧ୍ୟରେ ଅସୂୟା ସୃଷ୍ଟି କଲା । ସାନ ହରିଦାସ ଓ ମାଧବୀ ଦାସୀ ପ୍ରସଙ୍ଗରେ ଶ୍ରୀଚୈତନ୍ୟ ଗୌଡ଼ୀୟ ଅନୁଗାମୀମାନଙ୍କୁ ସମର୍ଥନ କଲେ ନାହିଁ । ତେଣୁ ଅନେକ ଗୌଡ଼ୀୟ ଅନୁଗାମୀ ଏଠାରେ ଚୈତନ୍ୟଙ୍କୁ ଛାଡ଼ି ଗୌଡ଼କୁ ଫେରିଯିବାର ନିଷ୍ପତ୍ତି କଲେ ଏବଂ ଦିନେ ପ୍ରଭାତରୁ ନୀଳାଚଳରୁ ଚାଲିଗଲେ । ଶିବାନନ୍ଦ ସେନ ସେମାନଙ୍କୁ ଫେରାଇଆଣିବା ପ୍ରସ୍ତାବ ଚୈତନ୍ୟଙ୍କୁ ଦେଲେ । ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ସାଙ୍ଗରେ ଯିବାପାଇଁ କହିଲେ । ମାତ୍ର ଜଗନ୍ନାଥ ଦାସ ସଫା ମନା କରିଦେଲେ । ଚୈତନ୍ୟ କହିଲେ— ଯଦି କେହି ନ ଯିବ, ତେବେ ଚିଟାଉ ଲେଖି ପଠାଅ । ଶ୍ରୀଚୈତନ୍ୟଙ୍କ ଅନୁରୋଧରେ ସ୍ୱାମୀ ଜଗନ୍ନାଥ ଦାସ ଚିଟାଉଟିଏ ଲେଖିଲେ । ଏ ଚିଟାଉ ନେଇ ଶିବାନନ୍ଦ ସେନ ଯାଜପୁର ଗଲେ ଓ ସେଠାରେ ଗୌଡ଼ୀୟଙ୍କୁ ଭେଟି ଚିଟାଉଟି ଦେଲେ ଏବଂ ତୁମମାନଙ୍କୁ ଚୈତନ୍ୟ ଏଇ ଚିଟାଉ ଦେଇଛନ୍ତି ବୋଲି କହିଲେ । ଗୌଡ଼ୀୟମାନେ ଚୈତନ୍ୟଙ୍କର ଚିଟାଉ ପଢ଼ିଲେ କିନ୍ତୁ କେହି ପୁରୀକୁ ଫେରିଲେ ନାହିଁ ଏବଂ ସମସ୍ତେ ଗୌଡ଼କୁ ଚୈତନ୍ୟଙ୍କର ଚିଟାଉଟି ନେଇ ଚାଲିଗଲେ । ଜଗନ୍ନାଥ ଦାସ ଲେଖିଥିବା ଏ ଚିଟାଉରେ ଆଠଗୋଟି ସଂସ୍କୃତ ଶ୍ଳୋକ ଥିଲା । ଗୌଡ଼ରେ ଏହାକୁ ଚୈତନ୍ୟଙ୍କର 'ଶିକ୍ଷାଷ୍ଟକ' ବୋଲି ପ୍ରଚାର କରାଗଲା । ମାତ୍ର ଏହାର ମୂଳ ଲେଖକ ଯେ ସ୍ୱାମୀ ଜଗନ୍ନାଥ ଦାସ, ଏହା କେହି କେଉଁଠି ଜାଣିଲେ ନାହିଁ ବା କହିଲେ ନାହିଁ—ସେଥିଲାଗି ଅବକାଶ ମଧ୍ୟ ନ ଥିଲା । ମାଧବ ପଟ୍ଟନାୟକ ଜଗନ୍ନାଥ ଦାସଙ୍କର ରଚନା ରୂପେ ଏହି ଆଠଗୋଟି ଶ୍ଳୋକର ଉଲ୍ଲେଖ କରିଛନ୍ତି ଏବଂ ନବାକ୍ଷରୀ ବୃତ୍ତରେ ଏହି ଆଠୋଟି ଶ୍ଳୋକର ଓଡ଼ିଆ ଅନୁବାଦ ମଧ୍ୟ ଦେଇଛନ୍ତି । ମାଧବ ପଟ୍ଟନାୟକ ଆହୁରି ମଧ୍ୟ ଲେଖିଛନ୍ତି—ଯେଉଁ ଗୌଡ଼ୀୟ ଭକ୍ତମାନେ ନୀଳାଚଳକୁ ଆଉ ଫେରି ନ ଆସି ଗୌଡ଼କୁ ଚାଲିଗଲେ, ସେଥିରୁ ଏକ ବଡ଼ ଦଳ ବୃନ୍ଦାବନରେ ଯାଇ ପହଞ୍ଚିଥିଲେ । ବୃନ୍ଦାବନ ନିକଟବର୍ତ୍ତୀ ଗିରି-ଗୋବର୍ଦ୍ଧନରେ

ଏମାନେ ଉପସ୍ଥିତ ହୋଇ ସେଠାରେ ବାଳଗୋପାଳଙ୍କୁ ପୂଜା କରୁଥିବା ବଲ୍ଲଭାଚାର୍ଯ୍ୟଙ୍କ ଶିଷ୍ୟମାନଙ୍କ ସହିତ କଳହ କଲେ । ମାତ୍ର ବଲ୍ଲଭଙ୍କ ଶିଷ୍ୟମାନେ ଗୌଡ଼ୀୟ ଭକ୍ତମାନଙ୍କୁ ସେଠାରେ ରଖାଇ ଦେଲେନାହିଁ । ଏହି କାରଣରୁ ଗୌଡ଼ୀୟ ଭକ୍ତ-ମାନେ ସେଠାରେ ମାଡ଼ ଖାଇଲେ । ଯେଉଁମାନେ ନୀଳାଚଳରେ ମାଡ଼ଖାଇ ଚାଲିଯାଇଥିଲେ, ସେମାନେ ଗିରି-ଗୋବର୍ଦ୍ଧନରେ ମଧ୍ୟ ମାଡ଼ ଖାଇଲେ । ଏ ବିଷୟ କହ୍ନାଇ ଖୁଣ୍ଟିଆ ଉତ୍ତରରୁ ଆସି ନୀଳାଚଳରେ ଜଣାଇଲେ । ଚୈତନ୍ୟ ଏହା ଶୁଣି କହିଲେ, ଯାହାର ମାଡ଼ଖାଇବା ସ୍ୱଭାବ ସେ ସବୁଠାରେ ମାଡ଼ ଖାଇବ—ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ ।

ସପ୍ତମ ଅଧ୍ୟାୟରେ ଚୈତନ୍ୟଙ୍କ ଇଙ୍ଗିତରେ ଅଣ-ଉପଦେଶିଆ ଜଗନ୍ନାଥ ଦାସ, ବଳରାମ ଦାସଙ୍କଠାରୁ ମନ୍ତ୍ର ଉପଦେଶ ନେବା ବିଷୟ ବର୍ଣ୍ଣିତ । ଜଣେ ଶୂଦ୍ରଠାରୁ ଜଗନ୍ନାଥ ଦାସଙ୍କ ଭଳି ଜଣେ ଖାଣ୍ଟି ଶାସନୀ ବ୍ରାହ୍ମଣର ମନ୍ତ୍ର ଉପଦେଶ ନେବା ଘଟଣା ନୀଳାଚଳରେ ସେତେବେଳେ ଚହଳ ସୃଷ୍ଟି କଲା । ବାସୁଦେବ ସାର୍ବଭୌମ, ଲେଙ୍କ ଲକ୍ଷ୍ମୀଧର ଏବଂ ଅନ୍ୟାନ୍ୟ ସ୍ମାର୍ତ୍ତମାନେ ସୁଦ୍ଧା ଏହି ଘଟଣାରେ ନୀରବ ରହିଲେ । ଜଗନ୍ନାଥ ଦାସଙ୍କ ବ୍ୟକ୍ତିତ୍ୱ, ଭକ୍ତିନିଷ୍ଠା ହିଁ ଏଥିପାଇଁ ଦାୟୀ ଥିଲା । ତାପରେ ଶ୍ରୀଚୈତନ୍ୟ, ଶୂଦ୍ର ରଘୁନାଥ ଦାସ ଗୋସ୍ୱାମୀଙ୍କୁ ସେ ପୂର୍ବରେ ପ୍ରତ୍ୟହ ପୂଜା କରୁଥିବା ଗୋବର୍ଦ୍ଧନ ଶିଳା ଶାଳଗ୍ରାମକୁ ଅର୍ପଣ କଲେ । ଏଥିରେ ମଧ୍ୟ ସ୍ମାର୍ତ୍ତମାନେ ବିଶେଷ କ୍ଷୁବ୍ଧମନା ହେଲେ । ମାତ୍ର ଚୈତନ୍ୟଙ୍କୁ ଏଥିପାଇଁ କେହି ଦୋଷୀ କରି-ପାରିଲେନାହିଁ । ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟ ସମ୍ମିଳିତ ଭାବରେ ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ସମାଜରୁ ଜାତିପ୍ରଥା ଓ ବର୍ଣ୍ଣବିଚାର ବିରୁଦ୍ଧରେ ଏ ଯେଉଁ ବିପ୍ଳବ ଆରମ୍ଭ କରିଥିଲେ, ତାହା ସେତେବେଳେ ସାମନ୍ତଶାସିତ ସମାଜରେ ଘୋର ପ୍ରତିକ୍ରିୟା ସୃଷ୍ଟି କରିଥିଲେ ମଧ୍ୟ ତା'ର ପରବର୍ତ୍ତୀ ପ୍ରତିକ୍ରିୟା ବଡ଼ ମନ୍ଥର ଓ ନିଷ୍ପ୍ରଭ ହୋଇପଡ଼ିଥିଲା । କାରଣ ତା' ପରେ ପରେ ଭାରତବର୍ଷର ଏକମାତ୍ର ସ୍ୱାଧୀନ ହିନ୍ଦୁରାଜ୍ୟ ଓଡ଼ିଶା ପରାଧୀନତାର ଘୋର ଶୃଙ୍ଖଳା ମଧ୍ୟରେ ଆତ୍ମଗୋପନ କଲା ।

କବି ଏଠାରେ କୃଷ୍ଣଦେବ ରାୟଙ୍କ ସହିତ ଗଜପତି ପ୍ରତାପରୁଦ୍ରଦେବଙ୍କର ଯୁଦ୍ଧ ବିଷୟ ବର୍ଣ୍ଣନା କରିଛନ୍ତି । ଦକ୍ଷିଣରେ ଗୋଟିଏ ପରେ ଗୋଟିଏ ଦୁର୍ଗ ଶତ୍ରୁ-ସୈନ୍ୟ ଅଧିକାର କରିନେଲେ । କୁଣ୍ଡାବିଡୁ ଦୁର୍ଗର ପତନ ଘଟିଲା । ଏଠାରୁ ଶତ୍ରୁମାନେ ବୀରଭଦ୍ରଦେବଙ୍କୁ ବନ୍ଦୀ କରିନେଲେ ଏବଂ ପରେ ବୀରଭଦ୍ର ସୁଦୂର ଦକ୍ଷିଣରେ ଝଣ୍ଡ୍ରା ଭୂଷିହୋଇ ଆତ୍ମହତ୍ୟା କଲେ । ବାହିନୀପତି ଶିବଦେବ ଦୁର୍ଗରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲାବେଳେ ଦୁର୍ଗ ମଧ୍ୟରେ ଶତ୍ରୁସୈନ୍ୟଙ୍କ ହାତରେ ପ୍ରାଣଦେଲେ । ଗଜପତିଙ୍କ ପାଟରାଣୀଙ୍କୁ ଦକ୍ଷିଣର ଏକ ଯୁଦ୍ଧ ଶିବିରରୁ ଶତ୍ରୁମାନେ ବନ୍ଦୀ କରିନେଲେ ।

ଗଜପତିଙ୍କ ସାମରିକ ଶକ୍ତିର ଧୀରେ ଧୀରେ ପତନ ଘଟିଲା । ଏହି ସମୟରେ ପୁଣି ବର୍ଷ ବର୍ଷ ଧରି ବାରମ୍ବାର ବନ୍ୟା ଓ ମରୁଡ଼ି ବିପଦର ପଛକୁ ପଛ ଲାଗିରହିଲା । ଦେଶର ଆର୍ଥିକ ମେରୁଦଣ୍ଡ ଭାଙ୍ଗିଗଲା ଏବଂ ଏ ଜାତି ପତନ ଆଡ଼କୁ ଧୀରେ ଧୀରେ ଟଣା ହୋଇ ଚାଲିଲା । ଗଜପତି, କୃଷ୍ଣଦେବ ରାୟଙ୍କ ସହିତ ସନ୍ଧି କରିବାକୁ ବାଧ୍ୟ ହେଲେ । ସନ୍ଧିର ସର୍ତ୍ତ ଅନୁସାରେ ଗଜପତି ତାଙ୍କ କନ୍ୟା ଜଗନ୍ମୋହିନୀଙ୍କୁ କୃଷ୍ଣଦେବ ରାୟଙ୍କ ସହିତ ବିବାହ ଦେବାକୁ ବାଧ୍ୟ ହେଲେ । ଏହିସବୁ କାରଣରୁ ଶେଷପର୍ଯ୍ୟାୟରେ ହତାଶ ଓ କାତର ହୋଇ ଯେବେ ଗଜପତି ପ୍ରତାପରୁଦ୍ରଦେବ ଆପଣାର ବ୍ୟଥିତ ଅନ୍ତରକୁ ଶାନ୍ତ ଶୀତଳ କରିବା ପାଇଁ ନୀଳାଚଳରେ ଉପସ୍ଥିତ ହେଲେ । ମାଧବ ପଟ୍ଟନାୟକ ଏହାର ସମସ୍ତ ଉଲ୍ଲେଖ କରି ନଥିଲେ ମଧ୍ୟ ଏହା ଖ୍ରୀ: ୧୫୦୬ ଘଟଣା ବୋଲି ନିଃସନ୍ଦେହରେ କୁହାଯାଇପାରେ । ଜଗନ୍ନାଥ ଦାସ, ବଳରାମ ଦାସ, ରାୟ ରାମାନନ୍ଦ, ଶ୍ରୀଚୈତନ୍ୟ ଓ ଅନ୍ୟାନ୍ୟ ବୈଷ୍ଣବମାନଙ୍କ ଗହଣରେ ଗଜପତି କାଳଯାପନ କରିବାକୁ ଇଚ୍ଛା କଲେ । ସେତେବେଳକୁ ଶ୍ରୀଚୈତନ୍ୟଙ୍କର ଦିବ୍ୟୋନ୍ମାଦ ଲକ୍ଷଣମାନ ପ୍ରକାଶ ପାଉଥିଲା ଏବଂ ବାହ୍ୟ ଆଚାର ଶୃଙ୍ଖଳମାନ ସେ ଭାଙ୍ଗିଦେଇ ଉନ୍ମାଦଗ୍ରସ୍ତ ହୋଇ କେତେବେଳେ କେଉଁଠି ବସୁଥିଲେ, ହସୁଥିଲେ, ବୁଲୁଥିଲେ ତାହାର କିଛି ଠିକଣା ନ ଥିଲା । ପଞ୍ଚସଖା ଅନ୍ତର୍ଗତ ଜଗନ୍ନାଥ ଦାସାଦି ବୈଷ୍ଣବମାନେ ଚୈତନ୍ୟଙ୍କ ପାଖେ ପାଖେ ରହୁଥିଲେ ଏବଂ ଚୈତନ୍ୟଙ୍କୁ ପ୍ରକୃତିସ୍ଥ କରାଉଥିଲେ । ମାଧବ ପଟ୍ଟନାୟକ ଏଠାରେ ଶ୍ରୀଚୈତନ୍ୟଙ୍କର ଯେଉଁ ଦିବ୍ୟୋନ୍ମାଦମୟ ମହାଭାବର ପରିଚୟ ଦେଇଛନ୍ତି ତାହା ବାସ୍ତବରେ ଅପୂର୍ବ ।

ଅଷ୍ଟମ ଅଧ୍ୟାୟରେ ପଞ୍ଚସଖା ଓ ଶ୍ରୀଚୈତନ୍ୟ ପୁରୀରେ ଏବଂ ଓଡ଼ିଶାର ନାନା ସ୍ଥାନରେ ବର୍ଷବ୍ୟାପୀ କୀର୍ତ୍ତନ କରୁଥିବାର ବର୍ଣ୍ଣନା ରହିଛି । ଅନନ୍ତସର ଉତ୍ସ ମଣ୍ଡଳରେ ଶ୍ରୀଚୈତନ୍ୟ ଓ ପଞ୍ଚସଖା ବେଣ୍ଟପୁର ଗ୍ରାମ ନିକଟବର୍ତ୍ତୀ ଅଲାରନାଥ ମନ୍ଦିରରେ ପ୍ରତିବର୍ଷ ଯାଇ କୀର୍ତ୍ତନ କରୁଥିଲେ । ସେମାନେ ଆଷାଢ଼ କୃଷ୍ଣ ପ୍ରତିପଦ ତିଥିରେ ଅଲାରନାଥ ଯାଇ ଆଷାଢ଼ ଅମାବାସ୍ୟାକୁ ପୁରୀ ଫେରିଆସୁଥିଲେ । ପୌଷ ପୂର୍ଣ୍ଣିମା ତିଥିରେ ଏହି କୀର୍ତ୍ତନ ଗୋଷ୍ଠୀ ଏକାମ୍ର କ୍ଷେତ୍ରରେ ପ୍ରତିବର୍ଷ ଉପସ୍ଥିତ ହେଉଥିଲେ । ଅନନ୍ତ ବାସୁଦେବ ମନ୍ଦିରରେ କୀର୍ତ୍ତନ କରୁଥିଲେ । ତୁଳସୀ ବିଲ୍ୱଦଳରେ କୃତ୍ତିବାସ ଲିଙ୍ଗରାଜଙ୍କର ଅର୍ଚ୍ଚନା କରୁଥିଲେ । ସେଠାରୁ ଏମାନେ ଯାଉଥିଲେ ପ୍ରାଚୀ ନଦୀ ତଟକୁ ନିଆଳି ମାଧବଙ୍କ କ୍ଷେତ୍ରରେ କୀର୍ତ୍ତନ କରିବାଲାଗି । ନିଆଳି ମାଧବ ମନ୍ଦିରର ନିକଟବର୍ତ୍ତୀ ସ୍ଥାନରେ ମଣ୍ଡଳୀ ମେଳା ଅବକାଶରେ ଏମାନେ ଗୀତଗୋବିନ୍ଦ ଗାନ ଓ ନାମ ସଙ୍କୀର୍ତ୍ତନ କରୁଥିଲେ । ନିଆଳି ମାଧବଠାରୁ ଏମାନେ ପ୍ରତ୍ୟେକ ବର୍ଷ ଯାଉଥିଲେ ଚନ୍ଦ୍ରଭାଗା ଆଦିତ୍ୟ ବିଷ୍ଣୁଙ୍କର ଅର୍ଚ୍ଚନା ଲାଗି । ରଥ ସପ୍ତମୀରେ ସମୁଦ୍ର ସ୍ନାନସାରି ଆଦିତ୍ୟ ବିଷ୍ଣୁଙ୍କର ଅର୍ଚ୍ଚନା କଲାବେଳେ ଅରୁଣ ସୂର୍ଯ୍ୟର ଉଦୟରେ ଶ୍ରୀଚୈତନ୍ୟ ଭାବବିହ୍ୱଳ ହୋଇପଡ଼ୁଥିଲେ । ସେତେବେଳେ କୋଣାର୍କର ସୂର୍ଯ୍ୟ-

ମନ୍ଦିରରେ ଆଦିତ୍ୟ ବିଷ୍ଣୁଙ୍କର ପୂଜା ଅର୍ଚ୍ଚନା ଅବ୍ୟାହତ ଥିଲା ଏବଂ ଭୋଗରାଗର ବନ୍ଦୋବସ୍ତ ବ୍ୟବସ୍ଥା ପ୍ରଚଳିତ ଥିଲା । ସେଠାରୁ ସେମାନେ କାକଟପୁର ମଙ୍ଗଳାଙ୍କ କ୍ଷେତ୍ରରେ କୀର୍ତ୍ତନ କରି ପୁରୀ ଫେରିଆସୁଥିଲେ । ପୁଣି ଏମାନେ ବାହାରୁଥିଲେ ପୁରୀରୁ ଫାଲ୍‌ଗୁନ ପୂର୍ଣ୍ଣିମାରେ କଟକରେ ଗଜପତି ରାଜାଙ୍କ ନଅର ମେଳାରେ କୀର୍ତ୍ତନ କରିବାପାଇଁ । ସେଠାରୁ ଚୈତ୍ର ମାସରେ ବିରଜାକ୍ଷେତ୍ର ଯାଜପୁରକୁ ଯାଉଥିଲେ । ଯାଜପୁର ଶ୍ରୀଚୈତନ୍ୟଙ୍କର ପୂର୍ବପୁରୁଷଙ୍କ ବାସସ୍ଥାନ ଥିଲା । ତାଙ୍କ ବଂଶର ଲୋକେ ଏ କଥା ଜାଣି ଶ୍ରୀଚୈତନ୍ୟଙ୍କର ଯଥୋଚିତ ସମ୍ବର୍ଦ୍ଧନା କରୁଥିଲେ । ସେଠାରୁ ଏମାନେ ତୁଳସୀ କ୍ଷେତ୍ରକୁ ଆସି କୀର୍ତ୍ତନ କରୁଥିଲେ । ଚୈତ୍ର ମାସରେ ଜଙ୍ଗଡପୁର ପାଟଣା (ଝଙ୍କଡ଼) ଆସି ସାରଳା ଚଣ୍ଡୀଙ୍କ କ୍ଷେତ୍ରରେ କୀର୍ତ୍ତନ କରୁଥିବା ବିଷୟ ମଧ୍ୟ ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଉଅଛି । ପୁରୀରେ ଚୈତନ୍ୟଙ୍କର ଶେଷ ଦଶ ବାର ବର୍ଷର ଘଟଣାବଳୀ କୌଣସି ବଙ୍ଗୀୟ ବା ଉତ୍କଳୀୟ ଚୈତନ୍ୟଚରିତ ଗ୍ରନ୍ଥରେ ଯଥାଯଥ ଭାବରେ ମିଳେନାହିଁ । ନାମ କୀର୍ତ୍ତନ ରସ ପ୍ରସାରଣ ଲାଗି ପଞ୍ଚସଖା ଓ ଶ୍ରୀଚୈତନ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନ ବର୍ଷବ୍ୟାପୀ ପରିକ୍ରମା କରୁଥିବା ମାଧବ ପଟ୍ଟନାୟକ ଲେଖିଛନ୍ତି ।

ନବମ ଅଧ୍ୟାୟରେ ନୀଳାଚଳର ଇଷ୍ଟଗୋଷ୍ଠୀ ସମ୍ପର୍କରେ ବର୍ଣ୍ଣନା ଦିଆଯାଇଛି । ଚୈତନ୍ୟଙ୍କ ତିରୋଧାନର କେତେମାସ ପୂର୍ବରୁ ରୂପ ଗୋସ୍ୱାମୀ ତାଙ୍କ 'ବିଦଗ୍ଧ ମାଧବ' ନାଟକ ରଚନା ଶେଷକରି ପୁରୀକୁ ଆସିଲେ ଏବଂ ଏହି ନାଟକର ପରୀକ୍ଷା ହୋଇଥିଲା ପୁରୀରେ ଇଷ୍ଟଗୋଷ୍ଠୀରେ । ଶ୍ରୀଚୈତନ୍ୟ ରାୟ ରାମାନନ୍ଦଙ୍କୁ ଏହି ନାଟକ ପରୀକ୍ଷା କରିବା ପାଇଁ ଅନୁରୋଧ କଲେ । ରାୟ ରାମାନନ୍ଦ, ରୂପ ଗୋସ୍ୱାମୀଙ୍କର ଲେଖାକୁ ଅମୃତଧାରା ସହିତ ତୁଳନା କରି ଉଚ୍ଛ୍ୱସିତ ପ୍ରଶଂସା କଲେ ଏବଂ ଏହାପରେ 'ବିଦଗ୍ଧ ମାଧବ' ନାଟକ ପ୍ରଚାର ଘଟିଲା । କାଶୀ ମିଶ୍ରଙ୍କ ଗମ୍ଭୀରାରେ ଚୈତନ୍ୟଙ୍କ ସହିତ ସ୍ୱରୂପ ଦାମୋଦର ଅବସ୍ଥାନ କରୁଥିଲେ । ସେ ସର୍ବଦା ଶ୍ୱାସରୋଗରେ ପୀଡ଼ିତ ହୋଇ ଅନେକ କଷ୍ଟଭୋଗ କରୁଥିଲେ ଏବଂ ପଞ୍ଚସଖା ଓ ଚୈତନ୍ୟଙ୍କ ମହତ କୀର୍ତ୍ତନ ଆସରରେ କେଉଁଆଡ଼େ ଯାଇପାରୁ ନ ଥିଲେ । ଚୈତନ୍ୟଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମାଘ ଶୁକ୍ଳ ଏକାଦଶୀରେ ସେ ଶ୍ୱାସରୋଗରେ ମୃତ୍ୟୁବରଣ କଲେ । ଏହା ଖ୍ରୀ: ୧୫୩୩ର ଜାନୁୟାରୀ ମାସ । ଏହି ଦୁଃଖକର ସମ୍ବାଦ ଗୌଡ଼ରେ ଜଣାଇଦେବା ପାଇଁ ଶ୍ରୀଚୈତନ୍ୟ ଟୋଟା ଗୋପୀନାଥ ସେବକ ଗଦାଧର ପଣ୍ଡିତଙ୍କୁ ଗୌଡ଼କୁ ପଠାଇଲେ । ଫଗୁଣ ମାସ ପଣନ୍ତରେ ଗଦାଧର ପଣ୍ଡିତ ଗୌଡ଼କୁ ଗଲେ ସେ ଆଉ ଫେରିଲେନାହିଁ । ସ୍ୱରୂପ ଦାମୋଦରଙ୍କ ତିରୋଧାନର ପ୍ରାୟ ଏକମାସ ପରେ ଫାଲ୍‌ଗୁନ ଶୁକ୍ଳ ଦଶମୀ ତିଥିରେ ବଳରାମ ଦାସ ଇହଲୀଳା ସମ୍ବରଣ କଲେ । ଶ୍ରୀଚୈତନ୍ୟଙ୍କର ଦେହାବସାନ ଘଟିଲା ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା)

ବ୍ରାହ୍ମମୁହୂର୍ତ୍ତରେ । ବୈଶାଖ ଅମାବାସ୍ୟା (ରୁକ୍ମିଣୀ-ଅମାବାସ୍ୟା) ସାୟଂକାଳରେ ସ୍ୱର୍ଣ୍ଣ ବଡ଼ଦାଣ୍ଡରେ କୀର୍ତ୍ତନ କଲାବେଳେ ଚୈତନ୍ୟଙ୍କର ବାମ ପାଦର ବୃଦ୍ଧାଙ୍ଗୁଷ୍ଠିରେ ଆଘାତ ଲାଗିଲା ଓ ରୁଧିର ଝରିଲା । ସେ ମୂର୍ଚ୍ଛା ହୋଇ ପଡ଼ିଗଲେ । ତାଙ୍କୁ ନିଆଗଲା ମନ୍ଦିର ଭିତରକୁ । ଏହି ଆଘାତ ହିଁ ତାଙ୍କ ମୃତ୍ୟୁର କାରଣ । ଜଗନ୍ନାଥ ଦାସ ଚୈତନ୍ୟଙ୍କର ପାଖେ ପାଖେ ରହି ତାଙ୍କର ସେବା କରୁଥାନ୍ତି । ମାତ୍ର ଅକ୍ଷୟ-ତୃତୀୟାର ବ୍ରାହ୍ମ-ମୁହୂର୍ତ୍ତରେ ଚୈତନ୍ୟଙ୍କ ପିଣ୍ଡରୁ ପ୍ରାଣବାୟୁ ଉଡ଼ିଗଲା । ଅନୁମାନରୁ ଜଣାଯାଉଛି, ଖ୍ରୀ: ୧୫୩୩, ଅପ୍ରେଲ ୨୭ ତାରିଖରେ ଚୈତନ୍ୟଙ୍କର ଦେହାବସାନ ଘଟିଲା । ଜଗନ୍ନାଥ ଦାସ ରାୟ ରାମାନନ୍ଦଙ୍କୁ ଡକାଇଲେ । ରାୟ ରାମାନନ୍ଦ ଗଜପତିଙ୍କୁ ତତକ୍ଷଣେ ଡକାଇ ପଠାଇଲେ । ମଧ୍ୟାହ୍ନ ବେଳେ ଗଜପତି ଆସି ମନ୍ଦିରରେ ପ୍ରବେଶ ହେଲେ । ପ୍ରଭାତରୁ ରାୟ ରାମାନନ୍ଦଙ୍କ ଆଦେଶରେ ମନ୍ଦିରର ଦ୍ୱାର ସବୁ ବନ୍ଦ ରହିଥିଲା, ଠାକୁରଙ୍କର ନୀତିକାନ୍ତି ସବୁ ବନ୍ଦ ରହିଥିଲା । ଗଜପତି ଓ ରାମାନନ୍ଦଙ୍କ ମଧ୍ୟରେ ପରାମର୍ଶ ଚାଲିଲା । ରାମାନନ୍ଦ ରାୟ କହିଲେ—ତୁମେ ତ ଚୈତନ୍ୟଙ୍କୁ ପ୍ରଭୁ ବୋଲି ଘୋଷଣା କରିଛ । ତେଣୁ ଏ ପ୍ରଭୁ (ଚୈତନ୍ୟ) ସେ ପ୍ରଭୁ (ଜଗନ୍ନାଥ)ଠାରେ ଲୀନ ହେଲେ ବୋଲି କହିବା ଯଥାର୍ଥ ହେବ । ଦୁହେଁ ପରାମର୍ଶ କରି ଚୈତନ୍ୟଙ୍କର ମୃତ ଦେହକୁ କୋଇଲି-ବୈକୁଣ୍ଠରେ ଗାତ ଖୋଳାଇ ପୋତାଇ ଦେବପାଇଁ ଆଦେଶ ଦେଲେ । କୋଇଲି ବୈକୁଣ୍ଠରେ ନବକଳେବର ବେଳେ ଜଗନ୍ନାଥଙ୍କ ଜୀର୍ଣ୍ଣ କଳେବରମାନ ଗାତରେ ପୋତି ଦିଆଯାଏ । ଚୈତନ୍ୟ ସ୍ୱୟଂ ପ୍ରଭୁ ବୋଲି ଧାରଣା ସୃଷ୍ଟି କରିବା ପାଇଁ ଏପରି କରାଗଲା । ଶବକୁ ମନ୍ଦିର ବାହାରକୁ ଗ୍ରହଣ ଦିଆଗଲାନାହିଁ । ଗୌଡ଼ୀୟ ଭକ୍ତମାନେ ବଙ୍ଗ ନବାବଙ୍କ ନିକଟରେ ଖବର ଦେଇ ପୁଣି ଯୁଦ୍ଧ-ବିଗ୍ରହ ସୃଷ୍ଟି କରିବାର ଆଶଙ୍କା ଥିଲା । ତେଣୁ ଏହି ରାଜନୀତିକ ବିପର୍ଯ୍ୟୟକୁ ଏଡ଼ାଇବା ପାଇଁ ଭକ୍ତମାନଙ୍କ ଉଦ୍ଦେଶ୍ୟରେ ପ୍ରଚାର କରାଗଲା ଯେ ଚୈତନ୍ୟ ପ୍ରଭୁ ଆଉନାହାନ୍ତି, ସେ ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଲୀନ ହୋଇଗଲେ । ପରବର୍ତ୍ତୀ ରଥଯାତ୍ରା ସମୟରେ ଗଜପତି ନିଜେ ଭକ୍ତମାନଙ୍କ ଉଦ୍ଦେଶ୍ୟରେ ଚୈତନ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଲୀନ-ହୋଇଯାଇଥିବା ସମ୍ବାଦ ଘୋଷଣା କଲେ । ଚୈତନ୍ୟଙ୍କର ମୃତ୍ୟୁପରେ ଜଗନ୍ନାଥ ଦାସ ଆଉ ମନ୍ଦିର ଭିତରକୁ ଆସିଲେନାହିଁ, ସମୁଦ୍ରକୂଳରେ ରହିଲେ । ଅଚ୍ୟୁତ ନେମ୍ବାଳକୁ ଚାଲିଗଲେ, ଅନନ୍ତ ନିଜ ସ୍ଥାନକୁ ପଳାଇଲେ । ପରବର୍ତ୍ତୀ ଭାଦ୍ରପଦ କୃଷ୍ଣାଷ୍ଟମୀ (ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ) ସାୟଂକାଳରେ ରାୟ ରାମାନନ୍ଦ ଉତ୍ତରପାର୍ଶ୍ୱ ମଣ୍ଡପରେ ଆସି ବସିଲେ । ହରିବାସର ହେଲେ ହେଁ ସେଦିନକୁ ଚୈତନ୍ୟ ନ ଥିଲେ ବା ପଞ୍ଚସଖାଙ୍କର ସମ୍ମେଳନ ନ ଥିଲା । ହା-କୃଷ୍ଣ ବୋଲି ଉଚ୍ଚାରଣ କରୁ କରୁ ରାୟ-ରାମାନନ୍ଦଙ୍କ ପିଣ୍ଡରୁ ପ୍ରାଣବାୟୁ ଉଡ଼ିଗଲା ।

ଗ୍ରନ୍ଥ ଶେଷରେ ଦୁଇଟିଯାକ ପୋଥିରେ ଲେଖନକାରଙ୍କ ନାମ ନାହିଁ ମାତ୍ର ଲେଖନକାରଙ୍କ ମନ୍ତବ୍ୟ ରହିଛି—"ଏଥେ ବାରତା ଅଛଇ ବିଶେଷ । ଲେଖନକାରର

ନ ଧରବ ଦୋଷ" ଏଥିରେ ଅନେକ ମଙ୍ଗଳଖବର ଥିବାରୁ ଏ ଗ୍ରନ୍ଥର ଆଦୌ ପ୍ରଚାର ହୋଇ ନ ଥିବା ଏଥିରୁ ଅନୁମିତ ହୁଏ । ମାଧବ ପଟ୍ଟନାୟକଙ୍କ ରଚିତ ଆଲୋଚ୍ୟ ଗ୍ରନ୍ଥ ଉକ୍ତ ସମସ୍ତ ବିଷୟର ଅବତାରଣା କରିଥିବା ହେତୁ ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ରୂପେ ମାନ୍ୟତାଲାଭ କରିବା ସମୀଚୀନ । ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ଓଡ଼ିଶାର ନବ୍ୟ ବୈଷ୍ଣବ ଧର୍ମଧାରାର ବହୁ ପ୍ରାମାଣିକ ତଥ୍ୟ ଓ ବିଶ୍ୱାସଯୋଗ୍ୟ ବିବରଣୀ ଏଥିରେ ଯଥାଯଥ ରୂପେ ବର୍ଣ୍ଣିତ ହୋଇଥିବା ଦେଖାଯାଏ ଏବଂ ସେ ସମୟର ବୈଷ୍ଣବୀୟ କ୍ରିୟାକଳାପ ଓ ଉତ୍କଳୀୟ ବୈଷ୍ଣବ ଧର୍ମର ନୂତନ ଅଭିମୁଖ୍ୟ ଉପରେ ଉଜ୍ଜ୍ୱଳ ଆଲୋକପାତ କରିଥାଏ ।

ଡଃ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ
ଡଃ ଘନଶ୍ୟାମ ରଥ

# ବୈଷ୍ଣବ ଲୀଳାମୃତ

ଶ୍ରୀ ଗଣେଶାୟ ନମଃ

ଅବିଘ୍ନମସ୍ତୁ

## ପ୍ରଥମ ଅଧ୍ୟାୟ

ସଚ୍ଚିଦାନନ୍ଦ ଜଗନ୍ନାଥ ॥ ନାମ ତୋ ସର୍ବ ପୁରୁଷାର୍ଥ ।୧।
ସକଳ ତୀର୍ଥ ଏକ କଲୁ ॥ ଚତୁର୍ଦ୍ଧା ରୂପକୁ ଧଇଲୁ ।୨।
ଶ୍ରୀହରେ ରାମକୃଷ୍ଣ ନାମ ॥ ତୋ ଅଙ୍ଗେ ଅଛଇ ଗୋପ୍ୟାନ ।୩।
ବ୍ରହ୍ମାଣ୍ଡ ତୋ ଉଦରେ ଠାବ ॥ ଅଗମ୍ୟ ଶାସ୍ତ୍ରରେ ତୁ ଦେବ ।୪।
ସକଳ ତୀର୍ଥ ତୋ ଚରଣେ ॥ ସର୍ବ ଦେବତା ତୋର ନାମେ ।୫।
ତୁ ଦେବ ଦେବଙ୍କର ଗତି ॥ ମୁଁ କି ବର୍ଣ୍ଣିବି ତୋର ମତି ।୬।
ତୁ ନିତ୍ୟ ସନାତନ ଦେବ ॥ ତୋ ଅଙ୍ଗେ ବିଶୁଦ୍ଧ ପ୍ରଣବ ।୭।
ତୁ ନିତ୍ୟ ସତ୍ୟ ପରଂବ୍ରହ୍ମ ॥ ତୋ ଦେହେ ଠୁଳ ସର୍ବଧାମ ।୮।
ନନ୍ଦ ନିଗମ ଚନ୍ଦ୍ରବାହା ॥ ତୋ ନାମ ପ୍ରାଣୀ ରକ୍ଷି ସାହା ।୯।
ଜଗତପତି ଜଗନ୍ନାଥ ॥ ତୋ ବିହୁଁ ନାହିଁ ଅନ୍ୟ ପଥ ।୧୦।
ତୋ ପାଦ ନିତ୍ୟ ଭେଳାକରି ॥ ପ୍ରାଣୀ ତରନ୍ତି ଭବବାରି ।୧୧।
ପତିତ ଜନ ଉଦ୍ଧାରିବା ॥ ତୋ ସୀମା କେହୁ ବଖାଣିବା ।୧୨।
ଅନନ୍ତ ଅବ୍ୟୟ ଅକ୍ଷୟ ॥ ତୋ ନାମ ଠୁଳ ଶୂନ୍ୟମୟ ।୧୩।

---

୧- ଏଥି ଗ୍ରନ୍ଥାରମ୍ଭରେ ମଙ୍ଗଳାଚରଣ କରିବାକୁ ଯାଇ ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କର ମହିମା କୀର୍ତ୍ତନ କରିଅଛନ୍ତି ।

୨- ଚତୁର୍ଦ୍ଧା ରୂପ—ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ।

୩- 'ହରେ ରାମକୃଷ୍ଣ' ମହାମନ୍ତ୍ରର ଉଲ୍ଲେଖ ଓ ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଏହି ମହାମନ୍ତ୍ର ଭେଦାଣ ପଞ୍ଚସଖା ସାହିତ୍ୟରେ ସାଧାରଣତଃ ପରିଦୃଷ୍ଟ । କବି ଏଠାରେ ନୀଳାଚଳ-ପ୍ରଚଳିତ ମତବାଦର ସୂଚନା ଦେଇଛନ୍ତି ।

୭- ଶ୍ରୀଜଗନ୍ନାଥଙ୍କ ଅଙ୍ଗ ପ୍ରଣବ ବା 'ଅ-ଉ-ମ'ର ସମାହାର—ଏହା ଉତ୍କଳୀୟ ବୈଷ୍ଣବମାନଙ୍କର ମତ ।

୧୩- ଜଗନ୍ନାଥ ଶୂନ୍ୟର ପ୍ରତୀକ—ଏହି ଧାରଣାର ମତ କବି ଏଠାରେ ଉଲ୍ଲେଖ କରିଛନ୍ତି ।

ତୋ ନାମୁ ପ୍ରଣବ ସମ୍ଭୂତ ॥ ତୋ ନାମୁ ସ୍ମୃତିବେଦ ଜାତ । ୧୪ ।
ତୋ ମୂର୍ତ୍ତି ରସଘନମୟ ॥ ସଂସାର ଜନର ଅଭୟ । ୧୫ ।
ତୋ ପାଦେ ଆଶ୍ରା ଦିଅ ମୋତେ ॥ ଦୁଃଖ ନ ରହୁ ଅନ୍ତରୀତେ । ୧୬ ।
ତୋ ଦେହେ ରାଧାକୃଷ୍ଣ ଲୀଳା ॥ ନିତ୍ୟଧାମ ଏ ନିତ୍ୟଖେଳା । ୧୭ ।
ନୀଳାଚଳଟି ନିତ୍ୟ ଧାମ ॥ ଶୁଦ୍ଧ ସାତ୍ତ୍ୱିକ ଅନୁପାମ । ୧୮ ।
ନିତ୍ୟ ଗୋଲକ ନୀଳାଚଳ ॥ ନିତ୍ୟ କୃଷ୍ଣର ଏଥେ ଖେଳ । ୧୯ ।
ଏ ଲୀଳା ନିତ୍ୟ ଶୁଦ୍ଧମୟ ॥ ନୀଳାଚଳରେ ଏ ଉଦୟ । ୨୦ ।
ନିତ୍ୟଧାମକୁ କଲେ ଆଶ୍ରା ॥ ନ ରହେ ପ୍ରାଣୀର ତମିସ୍ରା । ୨୧ ।
ନୀଳାଚଳକୁ ଅଶ୍ରା କରି ॥ ସହାରୁ ପ୍ରାଣୀ ହେଲେ ତରି । ୨୨ ।
ବିଷ୍ଣୁ ଭଗତେ କାଳେ କାଳେ ॥ ଆଶ୍ରିଲେ ତୋ ଧାମ କମଳେ । ୨୩ ।
ଭଗତ ଜନର ବିଶ୍ୱାସ ॥ ତୋ ପାଦେ ଠିଲ ଅବନାଶ । ୨୪ ।
ପ୍ରାଣୀଙ୍କୁ ମୁକ୍ତି ଦେଇ ହେଲେ ॥ ବସାଇ ଗୋଲକ ମଣ୍ଡଳେ । ୨୫ ।
କେ ମାଗୁ ତୋତେ ଅବା ମୁକ୍ତି ॥ ରହୁ ତ ଅଗତିର ଗତି । ୨୬ ।
ଭଗତି ମାର୍ଗେ ଯେ ଭଜଇ ॥ ତୋର ଚରଣେ ଆଶ୍ରାପାଇ । ୨୭ ।
ତୁ ଅଟୁ ଭଗତ ବିଶ୍ୱାସ ॥ କେ କହୁ ତୋର ଆଦିଅନ୍ତ । ୨୮ ।
ଭଗତ ଜନ ଏଥେ ମିଳି ॥ ତୋ ନାମ ଭଜିଗଲେ ଚଳି । ୨୯ ।

---

୧୭- ଶ୍ରୀଜଗନ୍ନାଥଙ୍କ ଶ୍ରୀବିଗ୍ରହରେ ନିତ୍ୟ ରାଧାକୃଷ୍ଣଙ୍କ ଲୀଳା ପରିବ୍ୟକ୍ତ— ଏହା ଉତ୍କଳୀୟ ବୈଷ୍ଣବଙ୍କ ମତ । ଏହି ମତ ଏଠାରେ ପ୍ରତିଧ୍ୱନିତ ।

୧୮- ନୀଳାଚଳକୁ ନିତ୍ୟଧାମ ବୋଲି ଓଡ଼ିଶାର ବୈଷ୍ଣବମାନେ ଘୋଷଣା କରିଥିଲେ । ପଞ୍ଚସଖା ଯୁଗରେ ଏହାର ସପକ୍ଷେ ପ୍ରଚାର ହୋଇଥିଲା । ମାତ୍ର ଓଡ଼ିଶାର ସ୍ୱାଧୀନତା ଲୁପ୍ତ ହେଲାପରେ ଓ ବାରମ୍ବାର ମୋଗଲ ଆକ୍ରମଣରେ ଶ୍ରୀଜଗନ୍ନାଥ ଆକ୍ରାନ୍ତ ହେଲାପରେ ନୀଳାଚଳର ମହତ୍ତ୍ୱ କ୍ଷୁଣ୍ଣ ହେଲା ଓ ଏହି ପରିସ୍ଥିତିର ସୁଯୋଗ ନେଇ ବୃନ୍ଦାବନର ଗୋସ୍ୱାମୀଗଣ ବୃନ୍ଦାବନକୁ ହିଁ ନିତ୍ୟଧାମ ରୂପେ ଘୋଷଣା କଲେ । ନୀଳାଚଳର ମତବାଦ ସେତେବେଳେ ଉତ୍କଳର ସୀମାକୁ ଅତିକ୍ରମ କରିପାରିଲା ନାହିଁ; କାରଣ ପଞ୍ଚସଖାଙ୍କର ଲେଖା ହେଉଛି ଓଡ଼ିଆ ଭାଷାରେ ଏବଂ ଅନ୍ୟପକ୍ଷରେ ଗୋସ୍ୱାମୀଙ୍କ ଲେଖା ହୋଇ ହେଲା ସଂସ୍କୃତରେ ।

୧୯- ନୀଳାଚଳକୁ ନିତ୍ୟ ଗୋଲକ ରୂପେ ପ୍ରତିପାଦନ କରିବା ଓ ଏଠାରେ ନିତ୍ୟ ରାଧାକୃଷ୍ଣଙ୍କ ଲୀଳା ପରିଲକ୍ଷିତ ହେଉଥିବା ପଞ୍ଚସଖାଙ୍କ ମତ ।

୨୫-୨୬ ମୁକ୍ତି ଅପେକ୍ଷା ଭକ୍ତିର ଶ୍ରେଷ୍ଠତ୍ୱ ଏଠାରେ ସୂଚିତ । ସ୍ୱାମୀ ଜଗନ୍ନାଥ ଦାସ ଏହି ମତର ପ୍ରବର୍ତ୍ତକ ବୋଲି ଅନନ୍ତ ମାଧବ ପଟ୍ଟନାୟକ ଲେଖିଛନ୍ତି ।

ଯେ ବା ଅଚ୍ଛନ୍ତି ଭକ୍ତ ଥୋକେ || ତାଙ୍କ ମହିମା ବର୍ଣ୍ଣିବ କେ |୩୦|
ତୋ ପାଦ ଆଶ୍ରି ଯେ ବା ଥିଲେ || ଯେ ଅବା ତୋ ପାଦେ ମିଳିଲେ |୩୧|
ଯେ ଅବା ଥିଲେ ତୋର ଧାମେ || ନାମ କୀର୍ତ୍ତନେ ଭକ୍ତ ମନେ |୩୨|
ଯେ ମହାତପା ବଇଷ୍ଣବ || ତାହାଙ୍କ ଲୀଳା କେ ବର୍ଣ୍ଣିବ |୩୩|
ନୀଳାଚଳର ବଇଷ୍ଣବେ || ଯେ ଲୀଳା ଲଗାଇଲେ ସବେ |୩୪|
ଅପୂର୍ବ ବୈଷ୍ଣବ ଚରିତ || ଶୁଣିବାକୁ କେ ସାମରଥ |୩୫|
କେ କହୁ ବୈଷ୍ଣବ ଚରିତ || ସାକ୍ଷାତେ ଅଟଇ ଅମୃତ |୩୬|
ବର୍ଣ୍ଣିବି ଥୋକେ ବିସ୍ତରଇ || ଶ୍ରୀଜଗନ୍ନାଥ ପଦଧ୍ୟାୟି |୩୭|
ଧନ୍ୟ କରିବି ମୋ ଜୀବନ || ଧନ୍ୟ ମୋର ଜନମ କରମ |୩୮|
ସୁଜନେ ଶୁଣି ତୋଷ ଚିତ୍ତ || ଦୁର୍ଲଭ ବୈଷ୍ଣବ ଚରିତ |୩୯|
ସଂସାରୁ ଯେବେ ହେବ ପାର || ଶୁଣ ଏ ଚରିତ ଗମ୍ଭୀର |୪୦|
ପୂର୍ବେ ଏ ନୋହିଛି ପ୍ରକାଶ || ବର୍ଣ୍ଣିବି ଅବା ମୁଇଁ କିସ |୪୧|
ବୈଷ୍ଣବେ ଏଥି କଲେ ମେଳା || ଶ୍ରୀକୃଷ୍ଣ ନାମ କରି ଭେଳା |୪୨|
ଦୁର୍ଲଭ ତତ୍ତ୍ୱ ବଖାଣିଲେ || ନାମରେ ଭଗତି ଥାପିଲେ |୪୩|
ଶ୍ରୀରାଧା କୃଷ୍ଣେ ଦେଇ ମତି || ନାମ ଉଚ୍ଚାରି ହେଲେ ହୋନ୍ତି |୪୪|
ନାମରେ ତନ୍ମୟ ହୋଇ || ବାହ୍ୟ ବିଷୟ ନ ଜାଣଇ |୪୫|
ହୃଦରେ ଚିନ୍ତି ରାଧାପତି || ଶ୍ରୀଜଗନ୍ନାଥ ଜଗତ୍ପତି |୪୬|
କଲେ ଯେ ଏଥେ ମହାଲୀଳା || ମହାଭାବରେ ମହାଖେଳା |୪୭|
ଦୁର୍ଲଭ ବୈଷ୍ଣବ ଚରିତ || ଥୋକାଏ ବର୍ଣ୍ଣିବି ମୋ ଚିତ୍ତ |୪୮|
ଶୁଣ ସୁଜନେ ସାବଧାନେ || କୀର୍ତ୍ତି ଥାପିବ ଭବଧାମେ |୪୯|
ଦୁର୍ଲଭ ସାଧୁଙ୍କ ଗୋଷ୍ଠି || ମିଳଇ କାହିଁ ସେ ସମ୍ପ୍ରୀନ୍ତ |୫୦|
ଦୁର୍ଲଭ ଏ ସାଧୁ ଚରିତ || ନୀଳାଚଳରେ ପ୍ରକାଶିତ |୫୧|
କହିବି ଥୋକେ ମୋର ଇଷ୍ଟ || ଖଣ୍ଡିବ ଭବ ତାପ କଷ୍ଟ |୫୨|
ବୈଷ୍ଣବ ଜନ ପଦ ରଜ || ମୋ ଶିରେ ପଡ଼ୁ ଅବିରତ |୫୩|
ମୁଁ ହୀନ ମାଧବ ପାମର || ଶୂଦ୍ର କୁଳରେ ଜନ୍ମ ମୋର |୫୪|

---

୩୦- କବି ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରୁ କରୁ ଜଗନ୍ନାଥ ଭକ୍ତମାନଙ୍କର ମହିମାଗାନ କରିବାରେ ପ୍ରଗଲ୍ଭ ହୋଇଉଠିଛନ୍ତି।

୩୪- ନୀଳାଚଳରେ ସମବେତ ବୈଷ୍ଣବଙ୍କ ଲୀଳା ବର୍ଣ୍ଣନା କରିବା କବିଙ୍କର ଅଭିପ୍ରାୟ।

୫୪-୫୭ କବି ମାଧବ ତାଙ୍କ ପରିଚୟ ଏଠାରେ ଦେଇଛନ୍ତି। ତାଙ୍କ ପିତାଙ୍କ ନାମ ଭଗବାନ, ମାତାଙ୍କ ନାମ ଶ୍ରୀଦେବୀ, ଜନ୍ମସ୍ଥାନ ଖଣ୍ଡପଡ଼ା (ବର୍ତ୍ତମାନର ପୁରୀ-ଜିଲ୍ଲାଅନ୍ତର୍ଗତ ଖଣ୍ଡପଡ଼ାଗଡ଼); କରଣ କୁଳରେ ଜନ୍ମ; ସଂଜ୍ଞା ପଟ୍ଟନାୟକ।

ମୋ ପିତା ନାମ ଭଗବାନ || ମାତା ମୋ ହ୍ଲାଦେବୀ ଜାଣ | ୫୫ |
କରଣ ବଂଶେ ଜନ୍ମ ହୋଇ || ପଞ୍ଚନାୟକ ସଙ୍ଗା ବହି | ୫୬ |
ଖଣ୍ଡପଡ଼ା ମୋ ପୂର୍ବସ୍ଥାନ || ଶ୍ରୀକ୍ଷେତ୍ର ବାସେ ଦେଲି ମନ | ୫୭ |
ଗୁରୁ ପଣ୍ଡିତ ଗଦାଧର || ଦୟା ସେ କଲେକି ଅପାର | ୫୮ |
ଗୋପାଳ ମନ୍ତ୍ର ଦୀକ୍ଷା ଦେଲେ || ମୂଢ଼ ଜୀବକୁ ନିସ୍ତାରିଲେ | ୫୯ |
ମୁଁ ଅଟେ ଗଦାଧର ଶିଷ୍ୟ || ଭଗତ ଜନେ ମୋ ବିଶ୍ବାସ | ୬୦ |
ଶ୍ରୀଗୁରୁ ପାଦ ନିତ୍ୟ ସେବି || ଲଭିଲି ଜ୍ଞାନ ଭକ୍ତି ଅର୍ପି | ୬୧ |
ବୈଷ୍ଣବ ସେବା ମୂଳ କଲି || ବୈଷ୍ଣବ ପାଦେ ଚିତ୍ତ ଦେଲି | ୬୨ |
ମୂଳ ମୋ ବଇଷ୍ଣବ ସଙ୍ଗ || ବର୍ଣ୍ଣିବି ବୈଷ୍ଣବ ପ୍ରସଙ୍ଗ | ୬୩ |
ଗୋପୀ ଭାବରେ ଭକ୍ତ ଯାର || କରନ୍ତି ହୃଦେ ସେହୁ ହାର | ୬୪ |
ପୂର୍ବ ଚରିତ ଶୁଣା ଯେତେ || ବର୍ଣ୍ଣିବି କୃଷ୍ଣର ଭଗତେ | ୬୫ |
ପ୍ରତ୍ୟକ୍ଷ କଲି ଯେତେ ଦୃଶ୍ୟ || ତ୍ୟଜିବି କେମନ୍ତେ ମୁଁ ହାସ | ୬୬ |
ବୈଷ୍ଣବ ରାୟ ରାମାନନ୍ଦ || ସୁଜାଣ ସୁଜ୍ଞାନ ପଣ୍ଡିତ | ୬୭ |
ରାମ ରାୟ ସେ ଅନ୍ନଦାତା || ଭଗତ ଉପତତ୍ତ୍ୱ ବେତ୍ତା | ୬୮ |

---

ଭକ୍ତ ଯୌବନରେ ପିତୃମାତୃହୀନ ହୋଇ ଖଣ୍ଡପଡ଼ା ଛାଡ଼ିଥିଲେ ଓ ପୁରୀକ୍ଷେତ୍ରରେ ରାୟ ରାମାନନ୍ଦଙ୍କ ଆଶ୍ରୟରେ ଜୀବନଯାପନ କରୁଥିଲେ। ନନ୍ଦରର ସେବକ ରୂପେ ବୋଧହୁଏ ନିଯୁକ୍ତ ଥିଲେ।

୫୮-୬୦ ପୁରୀରେ ଚୈତନ୍ୟଙ୍କ ସହିତ ଗଦାଧର ପଣ୍ଡିତ ଅବସ୍ଥାନ କରୁଥିଲେ। ଗଦାଧର ଟୋଟା ଗୋପୀନାଥଙ୍କ ପୂଜକ ରୂପେ ଚୈତନ୍ୟଙ୍କ ଦ୍ୱାରା ନିଯୁକ୍ତ ଥିଲେ। ମାଧବ ପଟ୍ଟନାୟକଙ୍କୁ ଗୋପାଳ ମନ୍ତ୍ର ଦୀକ୍ଷା ଦେଇଥିଲେ। ଚୈତନ୍ୟ ଲୀଳାସରେ ମଧ୍ୟ କବି ତାଙ୍କ ଗୁରୁ ଗଦାଧର ପଣ୍ଡିତଙ୍କର ଉଲ୍ଲେଖ କରିଛନ୍ତି।

୬୨- କବି ସମ୍ଭବତଃ ପୁରୀକୁ ଆସୁଥିବା ବୈଷ୍ଣବମାନଙ୍କ ଚର୍ଚ୍ଚା କାର୍ଯ୍ୟରେ ନିଯୁକ୍ତ ଥିଲେ। ଅଗନ୍ତୁକ ବୈଷ୍ଣବମାନଙ୍କ ଚର୍ଚ୍ଚା ଓ ସୁଖାବସ୍ଥାନର ଆୟୋଜନ କରୁ କରୁ ସେ ନିଜେ ବୈଷ୍ଣବ ହୋଇଗଲେ। ଦୁର୍ଲଭ ସାଧୁସଙ୍ଗ ଲଭିକରି ସେ ନିଜକୁ ଧନ୍ୟ ମନେ କରିଛନ୍ତି।

୬୪- ଗୋପୀ ଭାବରେ କୃଷ୍ଣ ଭଜନ ସେତେବେଳେ ନୀଳାଚଳରେ ସୁପ୍ରତିଷ୍ଠିତ ଥିଲା। ଶ୍ରୀଜଗନ୍ନାଥଙ୍କୁ ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣ ରୂପେ ଧ୍ୟାନ କରାଯାଉଥିଲା। ଶ୍ରୀଚୈତନ୍ୟ ଏଠାକୁ ଆସି ଏହି ଗୋପୀଭାବକୁ ଅଙ୍ଗୀକାର କରିଥିଲେ—ଏହାର ସୂଚନା କୃଷ୍ଣଦାସ କବିରାଜ ଦେଇଛନ୍ତି—"ଅତଏବ ଗୋପୀଭାବ କରି ଅଙ୍ଗୀକାର ରାତ୍ରିଦିନ ଚିନ୍ତେ ରାଧାକୃଷ୍ଣେର ବିହାର" ( ଚୈତନ୍ୟ ଚରିତାମୃତ - ମଧ୍ୟ ଲୀଳା, ୯ମ ଅଧ୍ୟାୟ )

୬୮- ରାୟ ରାମାନନ୍ଦ ପୁରୀରେ ସେତେବେଳେ ଥିଲେ ଜଣେ ପ୍ରଧାନ ବୈଷ୍ଣବ।

ବୈଷ୍ଣବ ପଣେ ଅଗ୍ରଗଣ୍ୟ || ତାଙ୍କଠୁଁ ପ୍ରସାଦ ଲଭିଣ ।୬୯।
ଗୁରୁ ଆଶିଷ ପରମାଣି || ଲଭିବ ଚରଣ ସ୍ମରଣି ।୭୦।
ରଚିଲି ଚୈତନ୍ୟ ବିଳାସ || ପ୍ରଭୁର ସନ୍ନ୍ୟାସ ଯେ ରସ ।୭୧।
ରାଜାର ଅଙ୍କ ଚତୁର୍ଦ୍ଦଂଶେ || ରଚିଲି ଚୈତନ୍ୟ ବିଳାସେ ।୭୨।
ଏବରୁ ଅଙ୍କ ଅଠଚାଳିଶ || ଲଭିବ ବୈଷ୍ଣବ ଲୀଳାରସ ।୭୩।
ଶ୍ରୀଗୁରୁ ଚଇତନ୍ୟ ପାଦ || ଶ୍ରୀଗୁରୁ ପାଦ ଜଗନ୍ନାଥ ।୭୪।
ଶ୍ରୀରାମାନନ୍ଦ ରାୟ ସାଧୁ || ଗୁରୁ ସ୍ୱରୂପ ଦାମୋଦର ।୭୫।
ଶ୍ରୀ ବଳରାମ ଯେ ଅଚ୍ୟୁତ || ଅନନ୍ତ ହରି ଯଶୋବନ୍ତ ।୭୬।
ଶ୍ରୀ ଜୀବଦେବ ମହାରଥୀ || ଶ୍ରୀ ରୁଦ୍ରଦେବ ସାମରଥୀ ।୭୭।
ଆଉ ଆଉ ଭକ୍ତ ଯେତେକ || ତାହାଙ୍କ ନାମ ଯେ ଅନେକ ।୭୮।
ସର୍ବେ ହୋଇଣ ଏକ ମେଳ || କୃଷ୍ଣ ରସରେ ମତ୍ତ ତାଳ ।୭୯।
ସଙ୍କୀର୍ତ୍ତନକୁ ଆଶ୍ରେ କଲେ || ନାମକୁ ସର୍ବଦା ଭଜିଲେ ।୮୦।
ସଂକ୍ଷେପି କହିଲି ଏ ରସ || ସୁଜନେ ନ ବହିବ ରୋଷ ।୮୧।
ଶ୍ରୀଜଗନ୍ନାଥ ପାଦଦ୍ୱନ୍ଦ୍ୱ || ଧ୍ୟାୟିଣ କହେ ଶୂଦ୍ରାଧମ ।୮୨।

---

ବୈଷ୍ଣବ ରସତତ୍ତ୍ୱ ବିଶ୍ଳେଷଣରେ ତାଙ୍କର ଜ୍ଞାନ ଗାମ୍ଭୀର୍ଯ୍ୟ ଓ ଭକ୍ତିନିଷ୍ଠା ଥିଲା ଅସାଧାରଣ । ତେଣୁ ତାଙ୍କୁ ରସତତ୍ତ୍ୱବେତ୍ତା କୁହାଯାଇଛି ।

୭୧- ମାଧବ ପଟ୍ଟନାୟକଙ୍କ ଅନ୍ୟ ଏକ ରଚନା 'ଚୈତନ୍ୟ ବିଳାସ' । ଏଥିରେ ଶ୍ରୀଚୈତନ୍ୟଙ୍କ ଜନ୍ମଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ ଓ ନୀଳାଚଳ ଆଗମନ ପର୍ଯ୍ୟନ୍ତ ବିଷୟମାନ ବର୍ଣ୍ଣିତ ।

୭୨- 'ଚୈତନ୍ୟ ବିଳାସ'କୁ କବି ଗଜପତି ପ୍ରତାପରୁଦ୍ରଙ୍କ ୨୪ ଅଙ୍କରେ ଅର୍ଥାତ ଖ୍ରୀ: ୧୫୧୬ରେ ରଚନା କରିଥିବା ଲେଖିଛନ୍ତି ।

୭୩- ରାଜାଙ୍କ ୪୮ ଅଙ୍କ ଖ୍ରୀଷ୍ଟାବ୍ଦ ୧୫୩୫ ସହିତ ସମାନ । ଏହା ଆଲୋଚ୍ୟ "ବୈଷ୍ଣବ ଲୀଳାମୃତ"ର ରଚନା କାଳ ।

୭୪-୭୭ ଶ୍ରୀଚୈତନ୍ୟ, ଜଗନ୍ନାଥ ଦାସ, ରାୟ ରାମାନନ୍ଦ, ସ୍ୱରୂପ ଦାମୋଦର, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ, ହରି ଦାସ, ଯଶୋବନ୍ତ ଦାସ, ଜୀବଦେବ ଆଚାର୍ଯ୍ୟ, ଗଜପତି ପ୍ରତାପରୁଦ୍ରଦେବ, ପ୍ରମୁଖ ବୈଷ୍ଣବମାନଙ୍କର ଉଲ୍ଲେଖ କରି ଏମାନଙ୍କର ସମର୍ଥତା କବି ସୂଚିତ କରିଛନ୍ତି ।

୭୮-୮୦ ଉକ୍ତ ମହାନ ବୈଷ୍ଣବ ସାଧକଗଣ ମିଳିତ ଭାବରେ ଏକତ୍ରିତ ହୋଇ କୃଷ୍ଣରସରେ ମତ୍ତ ତାଳ ଦେଇଥିଲେ ଓ ନାମ ସଙ୍କୀର୍ତ୍ତନ ମାଧ୍ୟମରେ ସର୍ବଦା ନାମ ଭଜନରେ ନିମଜ୍ଜିତ ରହୁଥିବା ବିଷୟ କବି ଏଠାରେ ବର୍ଣ୍ଣନା କରିଛନ୍ତି ।

## ଦ୍ୱିତୀୟ ଅଧ୍ୟାୟ

କୃଷ୍ଣ ଚରଣେ ଚିତ୍ତ ଦେଇ || ରହାସ ବର୍ଣ୍ଣିବ ଥୋକାଇ । ୧ ।
ଗୋପୀମାନଙ୍କ କେଳି ନୃତ୍ୟ || ରସ ନାମର ଅଟେ ଯୋଗ୍ୟ । ୨ ।
ରସ ଏ ଲୀଳା ନୋହେ ଶେଷ || ନିତ୍ୟ ଧାମର ଏ ଯେ ରସ । ୩ ।
ନିତ୍ୟ ଧାମ ଯେ ନୀଳାଚଳ || ଏଥେ ରସ ନୃତ୍ୟ ପ୍ରଚଳ । ୪ ।
ରାଧାକୃଷ୍ଣ ଏ ମେଳ ବପୁ || ଜଗନ୍ନାଥ ଯେ ସର୍ଜିବାକୁ । ୫ ।
ସ୍ୱାମୀ ଯେ ମେଳା ଉଆଇଲ || ରହାସ ନାମଟି ସେ ଦେଲ । ୬ ।
ଏଥେ ଜପ ଯେ ତପ ଯୋଗ || ଭଗତ ସ୍ତବ ଅନୁରାଗ । ୭ ।
ସବୁକୁ ଆଣି ମେଳାଇଲ || ରହାସ ବୋଲିଣ ବୋଇଲ । ୮ ।
ରହାସ ନାମ ସଙ୍କୀର୍ତ୍ତନ || ନାମ ହୁଁ ନୋହେ ଏଟି ଭିନ୍ନ । ୯ ।
ଏଥେ ଝାଞ୍ଜ ମୃଦଙ୍ଗ ଗିନି || କରତାଳ ଯେ ଜୋଡ଼ା ପୁଣି । ୧୦ ।
କୃଷ୍ଣ ରସ ଯେ ଗୀତ ହୋଇ || ଗୀତଗୋବିନ୍ଦ କର୍ଣ୍ଣାମୃତ ଚଉଇ । ୧୧ ।
ଦକ୍ଷିଣୀ ପଦ ମେଳ ଧରି || ନାଚନ୍ତି ସଙ୍ଗ ତ୍ର ତ୍ରାସ୍ତେ କରି । ୧୨ ।
ଝାଞ୍ଜ ମୃଦଙ୍ଗ କଲରୋଳେ || ନାଚନ୍ତି ଚଳଣ ଶଯ୍ୟଳେ । ୧୩ ।
ଆକାଶ ଅବନୀ ଏକାକାର || ପୃଥିବୀ ଦ୍ରବେ ଜଳଧାର । ୧୪ ।
ରସସ୍ଥଳୀର ମଧ୍ୟରେ || ମଣିମୟ ମଣ୍ଡପ ବରଜେ । ୧୫ ।
ମଣ୍ଡପ ମଧ୍ୟେ ସିଂହାସନ || ରାଧାକୃଷ୍ଣ ତହିଁ ଆସୀନ । ୧୬ ।
ଚଉପାଶେ କରମ୍ବି ତରେ || ଅଛନ୍ତି ସଖୀମାନେ ଧୀରେ । ୧୭ ।

---

୧-୫ ନିତ୍ୟଧାମ ନୀଳାଚଳରେ ରହାସର ପ୍ରଚଳନ ସମ୍ପର୍କରେ କବି ଏଠାରେ ବିବରଣୀ ଦେଇଛନ୍ତି । ରହାସ = ନାମ ସଙ୍କୀର୍ତ୍ତନ ।

୧୧- ରହାସରେ ଝାଞ୍ଜ ମୃଦଙ୍ଗ ଗିନିର ବ୍ୟବହାର ହେଉଥିଲା ଏବଂ ଜୟଦେବଙ୍କ ଗୀତଗୋବିନ୍ଦ ଓ ବିଲ୍ୱମଙ୍ଗଳଙ୍କ ଶ୍ରୀକୃଷ୍ଣ କର୍ଣ୍ଣାମୃତର ପଦମାନ ଗାନ କରାଯାଉଥିଲା । ଚୈତନ୍ୟ ଓଡ଼ିଶାକୁ ଆସିବା ପୂର୍ବରୁ ଏଠାରେ ରହାସ କରାଯାଉଥିଲା । ରହାସରେ ଜଗନ୍ନାଥ ଦାସାଦି ଭକ୍ତମାନେ ଗୀତଗାଇ ନୃତ୍ୟ କରୁଥିଲେ ।

୧୪-୨୫ ବଟଗଣେଶ ମୂଳେ ଗୋଟିଏ ରହାସ ମଣ୍ଡପ ନିର୍ମିତ ହୋଇଥିଲା । ଜଗନ୍ନାଥ ଦାସଙ୍କ ନିର୍ଦ୍ଦେଶରେ କହ୍ନାଇ ଖୁଣ୍ଟିଆ ଏହାକୁ ନିର୍ମାଣ କରିଥିଲେ । ମଣ୍ଡପ ମଧ୍ୟରେ କ୍ଷୁଦ୍ର ସିଂହାସନ, ସିଂହାସନ ଉପରେ ରାଧାକୃଷ୍ଣ ମୂର୍ତ୍ତି । ଚତୁଃପାର୍ଶ୍ୱରେ

ଅଷ୍ଟ ସଖୀଏ ନାମ ଖ୍ୟାତ ॥ ଅଛନ୍ତି ଚୌପାଶେ ସଙ୍ଗତ ।୧୮।
ମଧ୍ୟ ଭାଗେଣ ରାସକୁଞ୍ଜ ॥ ରାସ ଲୀଳାର ଏ ପ୍ରପଞ୍ଚ ।୧୯।
ତହିଁ ବଂଶୀଧ୍ୱନି ଝରଇ ॥ ଗୋପୀଙ୍କି ମୋହ ସେ କରଇ ।୨୦।
ଚଉପାଶରେ ଭକ୍ତଗଣେ ॥ ରାହାସ ରଚଲେ ନିପୁଣେ ।୨୧।
ବଟଗଣେଶ ସମୀପରେ ॥ ରାହାସ ମଣ୍ଡପ ହସ୍ତଗଲେ ।୨୨।
କଲେକ ରାସ ଅହର୍ନିଶ ॥ ଭଗତଜନଙ୍କ ଆଶ୍ୱାସ ।୨୩।
ଝାଞ୍ଜ ମୃଦଙ୍ଗ କଳରୋଳ ॥ ଗମ୍ଭୀର ମଧ୍ୟ ସେ ଚହଳ ।୨୪।
କହ୍ନାଇ ଏହା ନିର୍ମାଣିଲ ॥ ସ୍ୱାମୀ ରାହାସ ଶିକ୍ଷା ଦେଲ ।୨୫।
ବଲରାମ ଅଚ୍ୟୁତ ଯଶୋବନ୍ତ ॥ ଅନନ୍ତ ସଖାପଣେ ଖ୍ୟାତ ।୨୬।
ଗୋପାଳ ଗୁରୁ ସେ କହ୍ନାଇ ॥ ରାସ ମଣ୍ଡପେ ମେଳ ହୋଇ ।୨୭।
ରଚନ୍ତି ସଙ୍କୀର୍ତ୍ତନ ଛନ୍ଦ ॥ ରାତ୍ର ଦିବସ ନ ଜାଣନ୍ତି ।୨୮।
ପୁରାଣ ପାଠ ଏଥେ ହୋଇ ॥ ସ୍ୱାମୀ ଭାଗବତ ରଚଇ ।୨୯।
ତତ୍ତ୍ୱ ପ୍ରସଙ୍ଗ ଚର୍ଚ୍ଚା କରେ ॥ କୃଷ୍ଣର ଲୀଳା ମଧୁରରେ ।୩୦।
ରାହାସ ତହିଁ ଏ ଥଇଲ ॥ ଆଦ୍ୟେ କେ ଏହା ଭିଆଇଲ ।୩୧।
ଆପଣେ ବୋଲିବ ବା ମୋତେ ॥ ଯାହା ଶୁଣିଲି ସାଧୁ ମୁଖେ ।୩୨।
ଥୋକାଏ ଏଥି ବଖାଣିବ ॥ ଦୋଷ ନ ଧର ମନେ ଭାଉ ।୩୩।
ପୂର୍ବେ ଯେ ଥିଲ ଏକ ରାଜା ॥ ସୁଖେ ପାଳଇ ଜନପ୍ରଜା ।୩୪।
ଚୂଡ଼ଙ୍ଗଦେବ ଖ୍ୟାତନାମ ॥ ବୀର ସାହସୀ ପରାକ୍ରମ ।୩୫।
ଭଗତ ଶ୍ରେଷ୍ଠ ଅଟେ ସେହି ॥ ଶ୍ରୀଜଗନ୍ନାଥଙ୍କ ଚରେଇ ।୩୬।

---

ଅଷ୍ଟସଖୀ—ମଣ୍ଡପ ମଧ୍ୟଭାଗରେ ଏକ ରାସକୁଞ୍ଜରେ ରାସଲୀଳାର ସମଗ୍ର ଦୃଶ୍ୟ ପ୍ରକଟିତ। ଏଠାରେ ପଞ୍ଚସଖା କୀର୍ତ୍ତନ କରୁଥିଲେ—ଗୋପାଳ ଗୁରୁ ଓ କହ୍ନାଇ ଖୁଣ୍ଟିଆ ମଧ୍ୟ ଯୋଗ ଦେଉଥିଲେ। ସ୍ୱାମୀ ଏଠାରେ ଭାଗବତ ରଚନା କରୁଥିଲେ ଓ ଧର୍ମପ୍ରାଣ ନରନାରୀଙ୍କୁ ଭାଗବତର ଭକ୍ତିତତ୍ତ୍ୱ ବୁଝାଉଥିଲେ। ଚୈତନ୍ୟ ପୁରୀକୁ ଆସିବାର କେତେବର୍ଷ ତଳୁ ଏହା ହୋଇଥିଲା।

୩୧- କବି ଏଠାରେ ରାହାସର ପରମ୍ପରା ନିର୍ଦ୍ଦେଶ କରିଛନ୍ତି ଏବଂ ପ୍ରଥମେ ଏହା କିପରି ଏଠାରେ ଆରମ୍ଭ ହେଲା ତାହାର ବିବରଣୀ ଦେଇଛନ୍ତି। ଏ ସମ୍ପର୍କରେ ସେ ଲୋକ ମୁଖରୁ ଯାହା ଶୁଣିଛନ୍ତି ତାହାକୁ ହିଁ ଲିପିବଦ୍ଧ କରିଛନ୍ତି।

୩୫- ଚୂଡ଼ଙ୍ଗଦେବ = ଗଙ୍ଗବଂଶୀୟ ସମ୍ରାଟ ଚୋଡ଼ଗଙ୍ଗଦେବ (ଖ୍ରୀ: ୧୦୭୮-୧୧୪୭) ଖ୍ରୀ: ୧୧୧୨ରେ ସେ ଓଡ଼ିଶା ଅଧିକାର କରିଥିଲେ।

ଶଙ୍ଖାରଲ ଜୀର୍ଣ୍ଣ ଦେଉଳେ || କୀର୍ତ୍ତି ସେ ରଖିଲ ଶସ୍ତୁଳେ ।୩୭।
ଗର୍ଭଗୃହ ସେ ନିର୍ମିଣିଲ || ବହୁତ ଧନ ବ୍ୟୟ କଲ ।୩୮।
ଶ୍ରୀଜଗନ୍ନାଥର ମହିମା || କ୍ଷେତ୍ରବର ଏ ତାର ସୀମା ।୩୯।
ବୃଦ୍ଧକାଳେ ଏ କୀର୍ତ୍ତିଥାପି || ପ୍ରତିଷ୍ଠା କଲକ ସଙ୍କଳ୍ପି ।୪୦।
ବିମୂର୍ତ୍ତି ପ୍ରତିଷ୍ଠା ବେଳରେ || ପୁତ୍ରକୁ ଯୁବରାଜ କରେ ।୪୧।
ବିମୂର୍ତ୍ତି ପ୍ରତିଷ୍ଠା ହୋଇବ || କାମାର୍ଣ୍ଣବକୁ ପଦ ଦେବ ।୪୨।
ଚିନ୍ତେଇ ଏହା ମାନସରେ || ଉତ୍ସବ କଲ ଅଡ଼ମ୍ବରେ ।୪୩।
ଗୋଦାବରୀ ନଦୀ କୂଳର || ମୃତ୍ତିକା ଅଣାଇ ଟଲ୍ଲୁର ।୪୪।
ମୃଦଙ୍ଗ ନିର୍ମିଣିଲ ତହିଁ || କୀର୍ତ୍ତନ ରସେ ମନଦେଇ ।୪୫।
ଝାଞ୍ଜ ମୃଦଙ୍ଗ ସଙ୍ଗେ ଗିନି || କୀର୍ତ୍ତନ ଆରମ୍ଭ ସେ ପୁଣି ।୪୬।
ବିମୂର୍ତ୍ତି ପ୍ରତିଷ୍ଠା ହୋଇଲ || କାମାର୍ଣ୍ଣବକୁ ରଜା କଲ ।୪୭।
କୀର୍ତ୍ତନ ଗଦ୍ ଗଦ୍ ନାଦେ || ମନ ଥାପିଲ ହରିପାଦେ ।୪୮।
ନାଚୁଣୀ ମାହାରୀ ଯୋଗାଇଲ || ନାଟ ହୋଇଲ ହରିଲୀଳା ।୪୯।
ମନ୍ଦିର ବିମୂର୍ତ୍ତି ଭିତର || ଦେବଦାସୀଙ୍କ ନୃତ୍ୟଘେର ।୫୦।
ହରିର ସ୍ତୁତି ସହିତରେ || ମୃଦଙ୍ଗ ଝାଞ୍ଜ କରତାଳେ ।୫୧।
ମାହାରୀମାନ ନୃତ୍ୟ କଲେ || ରହାସ ନୃତ୍ୟ ଏ ବୋଇଲେ ।୫୨।
ଦେଖିଣ ଦେବ ଗଙ୍ଗେଶ୍ୱର || ସନ୍ତୋଷ ଲଭିଲ ମନର ।୫୩।
କାଳେ ସେ ରଜା ସ୍ୱର୍ଗ ଗଲ || ମାନବ କୀର୍ତ୍ତି ସେ ଥାପିଲ ।୫୪।
ଏଥୁ ଅନ୍ତରେ ଶୁଣ ଜନେ || ଗୀତଗୋବିନ୍ଦ ପଣ୍ଡମାଣେ ।୫୫।
ବିପ୍ର ସେ ଜୟଦେବ ନାମ || କ୍ଷେତ୍ରବରକୁ ଆଗମନ ।୫୬।
ଦେନ୍ଦୁଲି ଶାସନ ତା ଗ୍ରାମ || ପ୍ରାଚୀ ନଦୀର ତଟ ପୁଣ ।୫୭।
ନିଆଳି ମାଧବ ସମୀପେ || ଭଗତି କଲ ନାନା ରୂପେ ।୫୮।

---

୩୭- ଶ୍ରୀଜଗନ୍ନାଥଙ୍କର ଏକ ପ୍ରାସାଦ ପୂର୍ବରୁ ଥିଲ; ତାହା ଜରାଜୀର୍ଣ୍ଣ ଅବସ୍ଥାକୁ ଆସି-ଯାଇଥିଲ । ଚୋଡ଼ଗଙ୍ଗଦେବ ଏହି ଜୀର୍ଣ୍ଣ ଦେଉଳର ସଂସ୍କାର କାର୍ଯ୍ୟ ସମ୍ପାଦନ କଲେ । ସଂଖାରଲେ = ସଂସ୍କାର କଲେ ।

୩୮- ଚୋଡ଼ଗଙ୍ଗଦେବ ଶ୍ରୀମନ୍ଦିରର କେବଳ ଗର୍ଭଗୃହ ଅଂଶଟି ଓ ତତ୍‌ସଂଲଗ୍ନ ଜଗମୋହନ ଅଂଶ ନିର୍ମାଣ କରିଥିଲେ । ଗର୍ଭଗୃହ = ବିମାନ; ଜଗମୋହନ = ପ୍ରବେଶଦ୍ୱାର ( Entrance Hall )

୪୦- ମନ୍ଦିର ନିର୍ମାଣ ବେଳକୁ ଚୋଡ଼ଗଙ୍ଗଦେବଙ୍କର ବାର୍ଦ୍ଧକ୍ୟ ଅବସ୍ଥା ।

୪୧- କାମାର୍ଣ୍ଣବଦେବ (ଖ୍ରୀ: ୧୧୪୭-୧୧୫୬) ଚୋଡ଼ଗଙ୍ଗଦେବଙ୍କର ଜ୍ୟେଷ୍ଠପୁତ୍ର ।

| | | |
|---|---|---|
| ଶାସ୍ତ୍ର ପୁରାଣେ ବିଚକ୍ଷଣ ॥ | ଭକ୍ତି ମାର୍ଗେ ତାର ମନ | ।୫୯। |
| ଗୀତ ସେ ରଚିବ ବୋଇଲା ॥ | କ୍ଷେତ୍ରବାସଙ୍କୁ ମନ ଦେଇ | ।୬୦। |
| ଶ୍ରୀଜଗନ୍ନାଥର ସମୀପେ ॥ | ଶୁଦ୍ଧ ସାତ୍ତ୍ୱିକ ମତରବେ | ।୬୧। |
| ରଚିଲା ଶ୍ରୀଗୀତଗୋବିନ୍ଦ ॥ | ଲଭିଲା ପରମ ଆନନ୍ଦ | ।୬୨। |
| ଶ୍ରୀରାଧା ମାଧବର ଲୀଳା ॥ | ମଧୁର ସ୍ୱରରେ ଗାଇଲା | ।୬୩। |
| ପତ୍ନୀ ତାହାର ପଦ୍ମାବତୀ ॥ | ଗୀତର ତାଳେ ସେ ନୃତ୍ୟନ୍ତି | ।୬୪। |
| ରହାସ ନୃତ୍ୟ କଲା ଜାଣି ॥ | ନାଟ ସେ କଲେକ ନାଚୁଣୀ | ।୬୫। |
| ଭଗବନ୍ତ ଧନ୍ୟ ଧନ୍ୟ କଲେ ॥ | ଭଗତ ଭାବେ ଭୋଳ ହେଲେ | ।୬୬। |

---

୪୪-୪୮ ଚୋଡ଼ଗଙ୍ଗଦେବ ବାର୍ଦ୍ଧକ୍ୟରେ ଉପନୀତ ହେବାରୁ ତାଙ୍କ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ଦେବଙ୍କୁ ଉତ୍ତରାଧିକାରୀ ରୂପେ ଯୌବରାଜ୍ୟ ଅର୍ପଣ କଲେ । କାମାର୍ଣ୍ଣବଦେବଙ୍କ ଯୌବରାଜ୍ୟ ପଦରେ ଅଭିଷେକ ଓ ଶ୍ରୀମନ୍ଦିରର ପ୍ରତିଷ୍ଠା—ଏ ଦୁଇଟି ଉତ୍ସବ ଏକ ସଙ୍ଗରେ ପୁରୀ ମନ୍ଦିରରେ ସମ୍ପନ୍ନ ହୋଇଥିବା କବି ବର୍ଣ୍ଣନା କରିଛନ୍ତି । ଖ୍ରୀ: ୧୧୪୭ର ଦୁଇ ଚାରିବର୍ଷ ପୂର୍ବରୁ ଏହି ଉତ୍ସବ ଆୟୋଜିତ ହୋଇ-ଥାଇପାରେ । ଏଥିରୁ ପୁରୀ ମନ୍ଦିରର ନିର୍ମାଣକାଳ ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଧାରଣା ମିଳେ । ଏହି ଦୁଇଟି ଉତ୍ସବ ଏକ ସଙ୍ଗରେ ଅନୁଷ୍ଠିତ ହେଲା ବେଳେ ଗୋଦାବରୀ ନଦୀକୂଳରୁ ମୃତ୍ତିକା ଅଣାଇ ସେଥିରେ ମୃଦଙ୍ଗ ତିଆରି କରାଗଲା ଓ ସେଥିରେ ପୁରୀ ମନ୍ଦିରରେ ନାମ ସଙ୍କୀର୍ତ୍ତନ କରାଗଲା । ଗୋଦାବରୀ ନଦୀ-କୂଳରେ ମୃତ୍ତିକା ଆଣିବାର ଉଲ୍ଲେଖରୁ ଓଡ଼ିଶାରେ ନାମ ସଙ୍କୀର୍ତ୍ତନର ଆରମ୍ଭ ମୂଳରେ ଦକ୍ଷିଣୀ ଅଳବାର ଭକ୍ତ ଗୋଷ୍ଠୀର ନାମ ସଙ୍କୀର୍ତ୍ତନ ପରମ୍ପରା ଅନୁସୃତ ହୋଇଥିବା ଅନୁମିତ ହୁଏ ।

୪୯- ଶ୍ରୀମନ୍ଦିରରେ ହରିଲୀଳା ନୃତ୍ୟ ଓ ଗାନ କରି ଗଙ୍ଗେଶ୍ୱରଦେବ ଦକ୍ଷିଣରୁ ନାଚୁଣୀ ମାହାରୀମାନ ଯୋଗାଇଲେ । ଦକ୍ଷିଣର ଶ୍ରୀକୂର୍ମମନ୍ଦିରରେ ଗଙ୍ଗବଂଶୀୟ ରାଜାମାନେ ଏହି ପ୍ରଥା ପ୍ରଚଳନ କରାଇଥିଲେ । ନାଚୁଣୀ ମାହାରୀମାନଙ୍କୁ ଦେବଦାସୀ କୁହାଯାଉଥିଲା ।

୫୨· ଶ୍ରୀମନ୍ଦିରରେ ମାହାରୀମାନଙ୍କ ନୃତ୍ୟକୁ କବି ଏଠାରେ 'ରହାସ' ଆଖ୍ୟା ପ୍ରଦାନ କରିଛନ୍ତି ।

୬୧- ଶ୍ରୀଜଗନ୍ନାଥ ମନ୍ଦିରରେ କବି ଜୟଦେବଙ୍କ ଗୀତଗୋବିନ୍ଦ ରଚନା ସମ୍ପର୍କରେ କବି ଏଠାରେ ଉଲ୍ଲେଖ କରିଛନ୍ତି ।

୬୪-୬୫ କବି ଜୟଦେବଙ୍କ ପତ୍ନୀ ନର୍ତ୍ତନ-କଳା-କୁଶଳିନୀ ପଦ୍ମାବତୀଙ୍କର ଗୀତଗୋବିନ୍ଦର ତାଳେ ତାଳେ ନୃତ୍ୟକୁ କବି 'ରହାସ' ଆଖ୍ୟା ଦେଇଛନ୍ତି ।

ଗୀତଗୋବିନ୍ଦ ନାଟ ସେବା ॥ ମନ୍ଦିରେ ପ୍ରତ୍ୟହ ହୋଇବା ।୬୭।
ରାଜା ସେ ସେବା ଭିଆଇଲ ॥ କେନ୍ଦୁଲି ଶାଢ଼ୀ ଯୋଗାଇଲ ।୬୮।
ଶ୍ରୀଗୀତଗୋବିନ୍ଦ ରସ ଏ ॥ ଶ୍ରୀଜଗନ୍ନାଥର ପ୍ରିୟ ଏ ।୬୯।
ବୋଲି କଲକ ଏ ଭିଆଣ ॥ ଭଗତେ ହେଲେ ତୋଷମନ ।୭୦।
କାଳେ ସେ କବି ସ୍ୱର୍ଗଗଲ ॥ କ୍ଷେତ୍ରବରେ ତା ଗତି ହେଲ ।୭୧।
ଗୀତଗୋବିନ୍ଦ ନାଟ ପୁଣ ॥ ନାଟ ମନ୍ଦିର କଲ ଭିଆଣ ।୭୨।
ରହାସ ନୃତ୍ୟର ନିମିତ୍ତ ॥ ଗୀତଗୋବିନ୍ଦ କଲେ ନୃତ୍ୟ ।୭୩।
ଭୀମଦେବର ଏ ଭାରତ ॥ କାଳେ ସେ ଗଲ କୀର୍ତ୍ତି ଥାପି ।୭୪।
ଏଥୁ ଅନ୍ତରେ ଶୁଣ ରସ ॥ ଶ୍ରୀଭଗବତ ଗୀତ ରସ ।୭୫।
ଶ୍ରୀଧର ନାମେ ବିପ୍ରବର ॥ ମରେଇ ଗ୍ରାମେ ଜନ୍ମ ତାର ।୭୬।
ଭାଗବତ ଦୀପିକା ରଚିତ ॥ ଭକତି ମାର୍ଗେ ତାର ମତ ।୭୭।
ରେମୁଣା କଟକେଣ ରହି ॥ ଗୋପୀନାଥ ମୂର୍ତ୍ତି ସେବଇ ।୭୮।
ପଢ଼ଇ ଗୋପାଳ ତାପିନୀ ॥ ପଇପଲେ ସୂକ୍ଷ୍ମ ବଖାଣି ।୭୯।
ଭକତି ମାର୍ଗେ ତାର ଭାବ ॥ ବଶ କରଇ ଲୋକ ସର୍ବ ।୮୦।
ଶ୍ରୀକ୍ଷେତ୍ରୁ ସେହୁ ଦୀକ୍ଷା ନେଇ ॥ ଅଦ୍ୱୈତ ମତରେ ଚଳଇ ।୮୧।
ଅଟେ ସେ ଶଙ୍କର ସନ୍ନ୍ୟାସୀ ॥ ପୂର୍ବଣ କରେ ଉଦାନଶି ।୮୨।
ମତ ତା ଭାଗବତ ଅର୍ଥେ ॥ ଶାସ୍ତ୍ର କଲଇଂ ନାନା ମତେ ।୮୩।
ଭକତି ମାର୍ଗ କର୍ମ ଜ୍ଞାନ ॥ ଏ ସର୍ବ ନୋହେ ପରଭିନ୍ନ ।୮୪।
ଜ୍ଞାନ ବ୍ୟସକେ ଭକ୍ତି ଅଛି ॥ ଭକ୍ତି ବିନେ ଜ୍ଞାନ କାହିଁଛି ।୮୫।

---

୬୭-୭୪ ଗଙ୍ଗବଂଶୀୟ ସମ୍ରାଟ ଅନଙ୍ଗଭୀମଦେବ ତୃତୀୟ (କେତେ ଐତିହାସିକ କେବଳ ଭୀମଦେବ ବୋଲି ଲେଖିଛନ୍ତି—ରାଜତ୍ୱ ସମୟ—ଖ୍ରୀ: ୧୨୧୧-୧୨୩୮) ଗୀତଗୋବିନ୍ଦ ଗାନ ଓ ନୃତ୍ୟକୁ ଶ୍ରୀମନ୍ଦିରରେ ଏକ ନିର୍ଦ୍ଦିଷ୍ଟ ସେବା ରୂପେ ପ୍ରବର୍ତ୍ତନ କଲେ । ମାଦଳାପାଞ୍ଜି ଏହାକୁ " ଗୀତଗୋବିନ୍ଦ ଦେଳଭି କଲେ " ବୋଲି ଲେଖିଛନ୍ତି । ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କର ଅତି ପ୍ରିୟ ମନେକରି ରାଜା କେନ୍ଦୁଲି ଶାଢ଼ୀ ଯୋଗାଇଲେ ଏବଂ ସେହିଦିନ ଠାରୁ ଏ ପ୍ରଥା ଚଳି ଆସୁଅଛି । ଅନଙ୍ଗଭୀମ-ଦେବ ତୃତୀୟଙ୍କୁ କବି ନାଟମନ୍ଦିରର ନିର୍ମାତା ରୂପେ ଉଲ୍ଲେଖ କରିଛନ୍ତି । ବିମାନ ଓ ଜଗମୋହନ ସହିତ ଏହି ରାଜା ନାଟମନ୍ଦିର ମିଶାଇଲେ ।

୭୬-୮୧ ରେମୁଣା ନିକଟବର୍ତ୍ତୀ ମରେଇ ଗ୍ରାମ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ବୋଲି କବି ଲେଖିଛନ୍ତି । ରେମୁଣା କଟକରେ ରହି ଶ୍ରୀଧର ସ୍ୱାମୀ ଗୋପୀନାଥଙ୍କୁ ପୂଜା କରୁଥିଲେ । ଗୋପାଳତାପିନୀ ପଢ଼ିବା ଓ ପୈପଲାଦ ସଂହିତା ବ୍ୟାଖ୍ୟା କରିବାରେ ତାଙ୍କର ପାରଦର୍ଶିତା ଏଠାରେ ସୂଚିତ ।

୮୫- ଜ୍ଞାନ ଅପେକ୍ଷା ଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ଶ୍ରୀଧରଙ୍କ ବୈଶିଷ୍ଟ୍ୟ ।

| | | | | |
|---|---|---|---|---|
| ଭାଗବତ ମୂର୍ତ୍ତିରେ ଭାବ | ॥ | ଶ୍ରୀକୃଷ୍ଣେ ଶରଣ ପଶିବ | । ୮୬ । |
| ଶ୍ରୀଧର କଲ ଭାଗବତ | ॥ | ତାହା ଶୁଣିଲେ ସର୍ବଲୋକ | । ୮୭ । |
| କାଶୀ ନବଦ୍ୱୀପ ଶ୍ରୀରଙ୍ଗ | ॥ | ପଣ୍ଡିତ ମିଳି କଲେ ଅଙ୍ଗ | । ୮୮ । |
| ଜ୍ଞାନ ଭଗତକୁ ମିଶାଇ | ॥ | କହ ପର୍ଯ୍ୟନ୍ତ ଏହା ଚଳି | । ୮୯ । |
| ସନ୍ନ୍ୟାସୀଏ ଅର୍ଥ ବୁଝିଲେ | ॥ | ଶ୍ରୀଧରେ ଧନ୍ୟ ଧନ୍ୟ କଲେ | । ୯୦ । |
| ଲେଖାଇ ନେଲେ ପୋଥି ଯେତେ | ॥ | ଦୀପିକା ଭାବାର୍ଥ ସହିତେ | । ୯୧ । |
| ଭଗତ ଭାବ ସମ୍ପାଶଲ | ॥ | ଜ୍ଞାନରେ ଜଳାଞ୍ଜଳି ଦେଲ | । ୯୨ । |
| ଭଗତ ମାର୍ଗେ ଯେ ଭ୍ରମଇ | ॥ | ଅବଶ୍ୟ କୃଷ୍ଣ ସେ ଲଭଇ | । ୯୩ । |
| କୃଷ୍ଣ ବହୁନେ ନର୍କେ ପଡ଼େ | ॥ | ଭାଗବତର ଅର୍ଥ ବାଢ଼େ | । ୯୪ । |
| ନାମ କୀର୍ତ୍ତନ ମଠ ଖୋଲେ | ॥ | ରହଇ ନଶି ଉଜାଗରେ | । ୯୫ । |
| ନୃସିଂହ ମନ୍ତ୍ରରାଜ ଜପି | ॥ | ପ୍ରସାଦ ଲଭେ ଶିବ ସେବ | । ୯୬ । |
| ସ୍ୱାମୀ ରହଇ କପିଳାସେ | ॥ | ମହାନ୍ତ ଅଟଇ ବଶେଷେ | । ୯୭ । |
| ବ୍ରହ୍ମସ୍ୱାମ୍ମୀ ମଠ ଅଧୀଶ | ॥ | ନାମ ଶ୍ରୀଧର ସ୍ୱାମୀ ପାଦ | । ୯୮ । |
| ମାଧବ ପୂଜା ତାର ମୂଳ | ॥ | ଉମାଧବରେ ମତ ଦୃଢ଼ | । ୯୯ । |
| ଶ୍ରୀଧର ଚରିତ ଦୁର୍ଲଭ | ॥ | ଜାଣି ପ୍ରତାପ ଭାନୁଦେବ | । ୧୦୦ । |
| ଶ୍ରୀଧର କଲ ଦବ୍ୟ ପୂଜା | ॥ | ମାଳାଧିକାର ଶ୍ରୀମୂର୍ତ୍ତି ସେବା | । ୧୦୧ । |
| ଶୁଣ ଭଗତେ ଅନ୍ୟ ରସ | ॥ | ବର୍ଣ୍ଣିବ ଥୋକାଏ ବଶେଷ | । ୧୦୨ । |
| ରହାସ ନାଟ ଏ ହୋଇଲ | ॥ | ଗୀତଗୋବିନ୍ଦ ଗୁଁବେ ଖେଳା | । ୧୦୩ । |
| ମିଳଇ ଚଳି ଶ୍ୱାନ ଏକ | ॥ | ଦେଖି ବରସ ସର୍ବ ଲୋକ | । ୧୦୪ । |
| ରାଜାରେ ଯାଇ ଜଣାଇଲେ | ॥ | ଶ୍ୱାନ ପ୍ରବେଶିଲ ବୋଇଲେ | । ୧୦୫ । |
| ମେଳ ଅଟଇ ଚହଟଗ | ॥ | ପାଚେରୀ ପକାଅରୁ ବେଗ | । ୧୦୬ । |
| ରାଜା ବୋଇଲ ଭଲ ହେଲ | ॥ | ପାଚେରୀ ପଡ଼ିବ ବୋଇଲ | । ୧୦୭ । |

୮୮-୯୮ ଶ୍ରୀଧର ସ୍ୱାମୀ ତାଙ୍କ ବଖ୍ୟାତ ଭାବାର୍ଥ ଦୀପିକା ଟୀକା ଶ୍ରୀକ୍ଷେତ୍ରରେ ରଚନା କଲେ । ଭାରତର ବଭିନ୍ନ ଅଞ୍ଚଳରୁ ପଣ୍ଡିତମାନେ ଆସି ଶ୍ରୀଧରଙ୍କ ଟୀକାର ଅର୍ଥ କଲେ ଓ ଏହାର ପ୍ରାମାଣିକତା ସ୍ୱୀକାର କଲେ । ଶ୍ରୀଧର କପିଳାସର ବ୍ରହ୍ମସ୍ୱାମ୍ମୀ ମଠର ମହନ୍ତ ଥିଲେ । ଗଙ୍ଗବଂଶୀୟ ରାଜା ପ୍ରତାପଭାନୁଦେବ ତୃତୀୟ (ଖ୍ରୀ: ୧୩୫୨-୧୩୭୮) ଶ୍ରୀଧରଙ୍କୁ ମାଳାଧିକାର ଅର୍ପଣ କରି ସମ୍ମାନିତ କରିଥିଲେ ।

୧୦୪-୧୧୧ ମନ୍ଦିରରେ ଶ୍ୱାନ ପ୍ରବେଶ କରିବାରୁ ସେବକମାନଙ୍କ ଅନୁରୋଧରେ ସୂର୍ଯ୍ୟବଂଶୀୟ ସମ୍ରାଟ କପିଳେନ୍ଦ୍ରଦେବ (ଖ୍ରୀ: ୧୪୩୫-୧୪୬୭) ମେଘନାଦପାଚେରୀ ନିର୍ମାଣ କରିଥିଲେ । ରାଜାଙ୍କର ପରିଶ୍ରମ ବଜୟ ନାଟକ ଶ୍ରୀମନ୍ଦିରରେ ଅଭିନୀତ ହେଲ ।

ମେଘନାଦପାଚେରି ପଡ଼ିଲା ॥ ବରଷକେ ଏ ଶେଷ ହେଲା ।୧୦୮।
ପରଶୁରାମ ବିଜୟ ନାଟ ॥ ମନ୍ଦିରେ ହୋଇଲା ପ୍ରକଟ ।୧୦୯।
ଦେଖିଣ ସର୍ବେ ହେଲେ ତୋଷ ॥ ରାଜା ସମ୍ଭାଷିଲେ ବିଶେଷ ।୧୧୦।
କପିଳେଶ୍ୱର ଦେବର କୀର୍ତ୍ତି ॥ ବୋଲି ଘୋଷିଲେ ଦିନରାତି ।୧୧୧।
ତାହାର ଔରସେ ଜନ୍ମିଲା ॥ ପୁରୁଷୋତ୍ତମ ଦେବ ଭଲା ।୧୧୨।
ଭୋଗମଣ୍ଡପ ତା'ର କୀର୍ତ୍ତି ॥ ରାହାସ ନୃତ୍ୟ ତା'ର ମତି ।୧୧୩।
ସେବକେ ବୋଇଲେ ତୁ ବଡ଼ ॥ ସେବକ ଅଟୁ ପ୍ରଭୁର ।୧୧୪।
ପ୍ରଭୁର ସେବାକାର୍ଯ୍ୟ କର ॥ ବଡ଼ ସେବା ତୁ ପରିହର ।୧୧୫।
ବଡ଼ ସେବାରେ ସମାର୍ଜନା ॥ ଚଳାଅ ତାହା ତୁଇ ପୁଣି ।୧୧୬।
ରଥ ବେଳର ଏହୁ ସେବ ॥ ପ୍ରଭୁର ସେବକ କରିବ ।୧୧୭।
କର୍ପୂର ଚନ୍ଦନ ଅଗୁରୁ ॥ ଜଳରେ ସିଞ୍ଚିଲେ ସୁଗ୍ରରୁ ।୧୧୮।
ରାଜା ସୁବର୍ଣ୍ଣ ସମାର୍ଜନୀ ॥ ଧରି ବୁଲାଇ ରଥେ ପୁଣି ।୧୧୯।
ଦେଖି ସେବକେ କଲେ ଧନ୍ୟ ॥ ପ୍ରଭୁର ସେବକ ଏ ଜାଣ ।୧୨୦।
ଛେରା ପହଁରା ଏହୁ ନାମ ॥ ପୁରୁଷୋତ୍ତମର ଭିଆଣ ।୧୨୧।
ନାଚୁଣୀ ସପରଦା ଦେଲା ॥ ରାହାସ କରିହୋ ବୋଇଲା ।୧୨୨।
ଜଗନ୍ନାଥ ବଳଭଦ୍ରର ॥ ମନ ତୋଷିଲା ନିରନ୍ତର ।୧୨୩।
ସାଲୁଆ ନରସିଂଘା ଭୂଲେ ॥ ଯୁଦ୍ଧ ଯେ କଲା ରାଜା ହେଲେ ।୧୨୪।
ଆଣିଲା ତା କନ୍ୟା ହରଣେ ॥ ବିଭା ହୋଇଲେ ସନମାନ ।୧୨୫।
ସେବକେ ଧନ୍ୟ ଧନ୍ୟ କଲେ ॥ ପ୍ରଭୁର ବିଜୟ ବୋଇଲେ ।୧୨୬।
ଜଗା ବଳିଆ ଦୁଇ ପୁଣ ॥ କଳା ଧଳା ଘୋଡାରେ ଚଢ଼ିଣ ।୧୨୭।
ଯୁଦ୍ଧ ଥାନକୁ ବୋଲି ଗଲେ ॥ ରାଜାର ପାଇକ ଜିଣିଲେ ।୧୨୮।
ତେଣୁ ସେ ଯୁଦ୍ଧେଣ ଜିଣିଲା ॥ ରୂପବତୀକୁ ବିଭାହେଲା ।୧୨୯।
ଜଗନ୍ନାଥର କୃପା ବନେ ॥ ପାଇଲା ଏତେ ସନମାନେ ।୧୩୦।
କହଇ ମାଧବ ଯେ ଦାସ ॥ କୃଷ୍ଣଚରଣ କରି ଆଶ ।୧୩୧।

---

୧୧୨-୧୨୨ ଗଜପତି ପୁରୁଷୋତ୍ତମଦେବ (ଖ୍ରୀ: ୧୪୬୭-୧୪୯୭) ସେବକମାନଙ୍କ ଗୁହାରେ ରଥଯାତ୍ରା ବେଳେ ଛେରାପହଁରାର ପ୍ରବର୍ତ୍ତନ କଲେ; ଭୋଗମଣ୍ଡପ ନିର୍ମାଣ କଲେ । ଶ୍ରୀଜଗନ୍ନାଥଙ୍କର ସର୍ବଶ୍ରେଷ୍ଠ ସେବକ ରୂପେ ଗଜପତି ରାଜା ସର୍ବଶ୍ରେଷ୍ଠ ସେବାକାର୍ଯ୍ୟ (ସମାର୍ଜନୀ ଚାଳନା) ପ୍ରବର୍ତ୍ତନ କଲେ । ଏଥିରେ ସେବକେ ସନ୍ତୁଷ୍ଟ ହେଲେ । ଏକ ନାଚୁଣୀ ସମ୍ପ୍ରଦାୟ ରାହାସ କରିବା ପାଇଁ ଦେଲେ । ବୋଧହୁଏ ଏହାକୁ ଜୟ-ବିଜୟ ଶିଳାଲେଖରେ "ଦଣ୍ଡଠାକୁର ଦେଲ ସପରଦା" ବୋଲି ଉଲ୍ଲେଖ କରାଯାଇଛି ।

୧୨୪- କାଞ୍ଚିରାଜା ସାଲୁ ନରସିଂହଙ୍କ ସହିତ ଯୁଦ୍ଧ ଓ ପଦ୍ମାବତୀ ହରଣ ପ୍ରସଙ୍ଗ ।

# ତୃତୀୟ ଅଧ୍ୟାୟ

ସାଧୁ ଏ ଶୁଣ ଅପୂର୍ବ କଥା ॥ ଗୀତଗୋବିନ୍ଦର ମାଧୁର୍ଯ୍ୟ । ୧ ।
ଜୟଦେବ ଯେ ଗୀତ କଲେ ॥ ଶ୍ରୀମୁଖରେ ସ୍ୱାଦ ହୋଇଲେ । ୨ ।
ବହୁତ କାଳନ୍ତୁ ଏ ନାଟ ॥ ହୋଇଲା ଶ୍ରୀମୁଖରେ ପ୍ରକଟ । ୩ ।
ଦିବାକର ସେ ବିପ୍ରବର ॥ ପଣ୍ଡିତ ପଣେ ଆସୁପାର । ୪ ।
ସଭାରେ ପାଇଲା ଆସନ ॥ ଗୀତଗୋବିନ୍ଦ ରଚେ ପୁଣ । ୫ ।
ରାଜାଙ୍କ ଅଟେ ପ୍ରିୟ ପାତ୍ର ॥ ରଚିଲା ଏକ ଗୀତ ନାଟ । ୬ ।
ରାଜାର ନାମେଣ ଭଣିଲା ॥ ବହୁତ ମେଳଣି ପାଇଲା । ୭ ।
ଶ୍ରୀଗୀତଗୋବିନ୍ଦ ନାଟ ଏ ॥ ଅଭିନବ ଗୀତ ବୋଲାଏ । ୮ ।
ଆଗ ଗୀତଗୋବିନ୍ଦ ନାଟ ॥ ରାଜାର ନିଷେଧ ପ୍ରକଟ । ୯ ।
ରାଜାର ଗୀତନାଟ ହେବ ॥ ଆଗ ପଦକୁ ନ ବୋଲିବ । ୧୦ ।
କାଳେ ସେ ରାଜା ସ୍ୱର୍ଗ ଗଲା ॥ ରାଜାର ଗୀତେ ବିଘ୍ନ ହେଲା । ୧୧ ।
ଜୀବଦେବ ସେ ବିପ୍ରବର ॥ ବିଦ୍ୟାବିବାଦେ ମତିଧାର । ୧୨ ।
ରୁଦ୍ରଦେବଙ୍କୁ ଜଣାଇଲା ॥ ଏ ନାଟ ନୋହୁଇଛି ଭଲ । ୧୩ ।
ସେବକ ବୋଇଲେ କେମନ୍ତା ॥ ଏ ନାଟ ସେ ନାଟ ନୋହନ୍ତା । ୧୪ ।
ଦୁଇ ପୋଥି ଶ୍ରୀମୁଖରେ ଦେଲେ ॥ ଭଲ ଭେଲ ବାଛ ବୋଇଲେ । ୧୫ ।
ଶ୍ରୀମୁଖରେ ପୋଥି ରଖାଇ ॥ କବାଟ କିଳିଲେକ ତହିଁ । ୧୬ ।
ଅନ୍ୟ ଦିବସ ପ୍ରଭାତରେ ॥ ସେବକ ଦେଖିଲେ ଚକ୍ଷୁରେ । ୧୭ ।
ବଡ଼ଠାକୁର ଗୀତପୋଥି ॥ ତଳରେ ଅଛଇଟି ଲୋଟି । ୧୮ ।

---

୪-୧୯ ଦିବାକର ବିପ୍ରବର = କବି ଚନ୍ଦ୍ରରାୟ ଦିବାକର ମିଶ୍ର । ପୁରୁଷୋତ୍ତମ ଗଜପତିଙ୍କ ଦରବାରରେ ସେ 'ଅଭିନବ ଗୀତଗୋବିନ୍ଦ' ରଚନା କରି ରାଜାଙ୍କ ନାମରେ ଭଣିତା କରିଥିଲେ । ଜୟଦେବଙ୍କ ଗୀତଗୋବିନ୍ଦ ଗାନ ପ୍ରତି ନିଷେଧାଦେଶ ପ୍ରଚାର ହେଲା । ସେବକେ ଏଥିରେ ସନ୍ତୁଷ୍ଟ ନ ଥିଲେ । ପୁରୁଷୋତ୍ତମ ଗଜପତିଙ୍କ ସ୍ୱର୍ଗାରୋହଣ ପରେ ଅର୍ଥାତ୍ ୧୪୯୭ ପରେ ସେବକେ ପୁଣି ଜୟଦେବଙ୍କ ଗୀତଗୋବିନ୍ଦ ଚଳାଇବାର ଯତ୍ନ କଲେ । ଉଭୟ ଗୀତ-ଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଶ୍ରୀମୁଖରେ ଥୋଇ କବାଟ କିଳାଗଲା । ପ୍ରଭାତରେ ଦେଖାଗଲା, ଜୟଦେବଙ୍କ ଗୀତଗୋବିନ୍ଦ ଉପରେ ଅଛି । ତହୁଁ ଗଜପତି ପ୍ରତାପରୁଦ୍ର ଉଭୟ ଗୀତଗୋବିନ୍ଦର ଗାୟନ ଲାଗି ବ୍ୟବସ୍ଥା କଲେ । ଶ୍ରୀମନ୍ଦିର ଜୟବିଜୟ ଦ୍ୱାରରେ ଏହି ରାଜାଦେଶ ଉତ୍କୀର୍ଣ୍ଣ ହୋଇଅଛି । ଏଠାରେ କବିଙ୍କ ବର୍ଣ୍ଣନା ସହିତ ଜୟବିଜୟ ଶିଳାଲେଖ ପାଠର ସାମଞ୍ଜସ୍ୟ

ଜୟଦେବର ଗୀତ ନାଟ || ଉପରେ ଅଛଇ ପ୍ରକଟ ।୯।
ସେବକେ ଯାଇ ଜଣାଇଲେ || ଶ୍ରୀରୁଦ୍ରଦେବ ଆଦେଶିଲେ ।୧୦।
ଏ ନାଟ ସେ ନାଟ ହୋଇବ || କାହାକୁ ଗ୍ରହଣ ନ ଦେବ ।୧୧।
ବଡ଼ଠାକୁର ଗୀତନାଟ || ଠାକୁର ହେଉଥିବେ ଖଟ ।୧୨।
ସକାଳଠାରୁ ସନ୍ଧ୍ୟା ଧୂପ || ବଡ଼ସିଂଘାରେ ଶେଷ ହେବ ।୧୩।
ଅନ୍ୟ ବେଳରେ ଗୀତକର || ଶ୍ରୀଗୀତଗୋବିନ୍ଦ ଉତ୍ତର ।୧୪।
ବଡ଼ଠାକୁର ସଂପ୍ରଦା || କପିଳେଶ୍ୱର ଠାକୁର ସଂପ୍ରଦା ।୧୫।
ପୁରୁଣା ନାଚୁଣୀ ସଂପ୍ରଦା || ତେଲିଙ୍ଗୀ ନାଚୁଣୀ ସଂପ୍ରଦା ।୧୬।
ନାଚୁଣୀ ଏମାନ ଗାଇବେ || ବଡ଼ଠାକୁର ଗୀତ ବୋଲିବେ ।୧୭।
ଏ ନାଟ ବିତରକେ ଜାଣ || ଶ୍ରୀଗୀତଗୋବିନ୍ଦ ଗାୟଣ ।୧୮।
ମଧୁର ଜୟଦେବ ଗୀତ || ବୈଷ୍ଣବ ଗାଆଣ ମାନନ୍ତ ।୧୯।
ଗାଇବେ ଏହୁ ରସ ଗୀତ || ଶିଖିବେ ଯେତେ ଅଶିକ୍ଷିତ ।୨୦।
ଏ ତହୁଁ ଆନ ଗୀତ ନ ହେବ || ପଣ୍ଡିତ୍ତା ସାବଧାନ ହେବ ।୨୧।
ରାଜାର ଏହୁଟି କଳନା || ପ୍ରସ୍ଥଳେ ସେବକେ ସିନା ।୨୨।
ଜୟବିଜୟ ଦ୍ୱାରଶ୍ରେ || ଖୋଳାଇଲେ ଲେଖା ପଥରେ ।୨୩।
ଜୟଦେବର ରସ ଗୀତ || ତା ତହୁଁ କାହିଁ ଅନ୍ୟଗୀତ ।୨୪।
ଏବସମାନ ସେ ବୋଲିବେ || ବୈଷ୍ଣବ ସେବକେ ରଖିବେ ।୨୫।
ରାଜାର ଚଉଅଙ୍କେ ଜାଣ || ଏହୁଟି ହୋଇଲା ଭିଆଣ ।୨୬।
କବିଚନ୍ଦ୍ର ରାୟ ଦିବାକର || ରାଜାକୁ ବୋଲେ ସେ ସତ୍ତ୍ୱର ।୨୭।

---

ଅନୁ । ବଡ଼ଠାକୁର = ପୁରୁଷୋତ୍ତମ ଗଜପତି । ବଡ଼ଠାକୁର ଗୀତନାଟ = ପୁରୁଷୋତ୍ତମ ଗଜପତିକୃତ ଅଭିନବ ଗୀତଗୋବିନ୍ଦ ।

୧୧-୧୭ ସନ୍ଧ୍ୟାଧୂପଠାରୁ ବଡ଼ସିଂଘାର ପର୍ଯ୍ୟନ୍ତ ବଡ଼ଠାକୁରଙ୍କ ଗୀତଗୋବିନ୍ଦ ଗାନ କରାଯିବ ଏବଂ ଅବଶିଷ୍ଟ ସମୟରେ ଜୟଦେବଙ୍କ ଗୀତଗୋବିନ୍ଦ ଗାନ କରାଯିବ— ଏହି ରାଜାଦେଶ ପ୍ରଚାର କରାଗଲା । ବଡ଼ଠାକୁରଙ୍କ ପ୍ରଦତ୍ତ ନାଚୁଣୀ ସମ୍ପ୍ରଦାୟ, କପିଳେଶ୍ୱର ଠାକୁରଙ୍କ ପ୍ରଦତ୍ତ ନାଚୁଣୀ ସମ୍ପ୍ରଦାୟ, ପୁରୁଣା ନାଚୁଣୀ ସଂପ୍ରଦାୟ ଓ ତେଲିଙ୍ଗୀ ନାଚୁଣୀ ସଂପ୍ରଦାୟ—ଏହି ଚାରି ସମ୍ପ୍ରଦାୟ ଉକ୍ତ ସମୟରେ କେବଳ ବଡ଼ଠାକୁରଙ୍କ ଗୀତଗୋବିନ୍ଦ ଗାନ କରିବେ । ଏହା ବ୍ୟତୀତ ଅବଶିଷ୍ଟ ସମୟରେ ଜୟଦେବଙ୍କ ଗୀତଗୋବିନ୍ଦ ହିଁ ଗାନ କରାଯିବ ।

୨୬- ରାଜାଙ୍କ ଚଉଅଙ୍କ = ୧୪୯୯ ଖ୍ରୀ: ।

୨୭- କ୍ରମେ ଦେଖାଗଲା ଜୟଦେବଙ୍କ ଗୀତଗୋବିନ୍ଦ ସନ୍ଧ୍ୟାଧୂପ ପରେ ମଧ୍ୟ ଗାନ କରାଗଲା । ଏଥିରେ କବିଚନ୍ଦ୍ର ରାୟ ଦିବାକର ଅପମାନିତ ବୋଧକରି ପ୍ରତିବାଦ

| | | | |
|---|---|---|---|
| ସେ ରାଜା ଏଥେ ଗୋଳକଲେ | ‖ | ସେବକେ କଥା ନ ମାନିଲେ | ।୩୮। |
| ରାଜା ସେ ଜାଣିଣ ମହନ | ‖ | କବିଚନ୍ଦ୍ର ସେ ଅପମାନ | ।୩୯। |
| ଛାଡ଼ିଲ ରାଜାର ମୁହାଁସ | ‖ | ଚଳି ଗଲକ ସେ ସ୍ୱଦେଶ | ।୪୦। |
| ଜୀବଦେବ ମହାହରଷ | ‖ | ସେବକେ ହୋଇଲେ ସନ୍ତୋଷ | ।୪୧। |
| ଏ ତହୁଁ କହୁଡନ ଗଛେ | ‖ | ବଡ଼ଠାକୁର ଗୀତଗୋବିନ୍ଦେ | ।୪୨। |
| ପୋଥିରେ କୋଣ ବନ୍ଧାହେଲ | ‖ | ସେଥେ କେହୁ ନ ରସେ ଭଲ | ।୪୩। |
| ସବୁ ବୈଷ୍ଣବ ସପରଦା | ‖ | ଜୟଦେବର ଗୀତ ସୁଧା | ।୪୪। |
| ଦେଖିଲେ ଏହୁ ନାଟ ହେଲ | ‖ | ଅନ୍ୟ ଗୀତ ହିଁ ନ ଚଳିଲ | ।୪୫। |
| ସକଳେ ହେଲେକ ସନ୍ତୋଷ | ‖ | ଭଗତ ସ୍ୱବେ ପ୍ରମୋଦିତ | ।୪୬। |
| ଏଥୁ ଅନ୍ତରେ ଶୁଣ ରସ | ‖ | ପ୍ରେମଧନକୁ ଯେବେ ଆଶ | ।୪୭। |
| ମାଧବେନ୍ଦ୍ର ନାମେ ବୈଷ୍ଣବ | ‖ | ତାହାର ଚରିତ ଦୁର୍ଲଭ | ।୪୮। |
| ନୃସିଂହ ନାମେ ଏକ ରାଜା | ‖ | ଗୋବର୍ଦ୍ଧନ ଭରେ ତରସ୍ତ | ।୪୯। |
| ଆଣିଲ ଗୋପାଳ ମୂରତି | ‖ | ରେମୁଣା କଟକେ ବସତି | ।୫୦। |
| ଗୋପାଳ ମୂର୍ତ୍ତି ସେ ଥାପିଲ | ‖ | ଅନେକ ଭୋଗ ଅରପିଲ | ।୫୧। |
| କାଳେ ଅଇଲ ମାଧବେନ୍ଦ୍ର | ‖ | ସାଧୁ ବଇଷ୍ଣବେ ସୁଖ୍ୟାତ | ।୫୨। |
| ଗୋପାଳ ମୂର୍ତ୍ତି ସନ୍ନିଧିରେ | ‖ | ମୂର୍ଚ୍ଛାଗଲ ସେ ମଠଘରେ | ।୫୩। |
| ଏଡ଼େକ ଲାବଣ୍ୟ ମୂରତି | ‖ | ସୁରଭି ଯୁଗଳ ପୀରତି | ।୫୪। |

---

କଲେ; ମାତ୍ର କିଛି ଫଳ ନ ହେବାରୁ ସେ ରାଜଦରବାର ପରିତ୍ୟାଗ କରି ସ୍ୱଦେଶକୁ ଚାଲିଗଲେ। ଏଥିରେ ଜୀବଦେବ ଆଚାର୍ଯ୍ୟ ଓ ତାଙ୍କ ସମର୍ଥକମାନେ ସନ୍ତୁଷ୍ଟ ହେଲେ।

୪୮-୫୨ ମାଧବେନ୍ଦ୍ର ପୁରୀ ରେମୁଣା କଟକକୁ ଆସି ଶ୍ରୀଗୋପୀନାଥଙ୍କୁ ଭକ୍ତି ଅର୍ପଣ କରିବା ବିଷୟ ଏଠାରେ ବର୍ଣ୍ଣିତ। ଗଙ୍ଗବଂଶୀୟ ରାଜା ନୃସିଂହ (ବୋଧହୁଏ ନରସିଂହ-ଦେବ ପ୍ରଥମ ବା ଦ୍ୱିତୀୟ) ବୃନ୍ଦାବନ ନିକଟସ୍ଥ ଗିରିଗୋବର୍ଦ୍ଧନରୁ ଏକ ଗୋପାଳ ବିଗ୍ରହ ଆଣି ରେମୁଣା କଟକରେ ସ୍ଥାପନ କରିଥିଲେ ଏବଂ ଅନେକ ଭୋଗରାଗ ବ୍ୟବସ୍ଥା ଦେଇଥିଲେ। ସେ କାଳରୁ ରେମୁଣା କଟକ ପ୍ରସିଦ୍ଧି ଅର୍ଜନ କରିଥିଲା। ଏହା ଥିଲା ଗଜପତି ରାଜାମାନଙ୍କର ଏକ ସାମୟିକ ରାଜଧାନୀ।

୫୩-୬୫ ସେବକେ ଭକ୍ତପ୍ରବର ମାଧବେନ୍ଦ୍ର ପୁରୀଙ୍କୁ ନ ଚିହ୍ନି ଭୋଗ ଦେଲେନାହିଁ ଏବଂ ଦେଉଳ ଦ୍ୱାର କିଳି ଚାଲିଗଲେ। ରାତ୍ରିକାଳରେ ମାଧବେନ୍ଦ୍ର ଦେଉଳ ବାହାରେ ଅଭୁକ୍ତ ରହିଲେ। ରାତ୍ରିରେ ସ୍ୱପ୍ନରେ ଶ୍ରୀଗୋପୀନାଥଙ୍କ ଆଦେଶ ପାଇ ସେବକ ଦେଉଳ ଦ୍ୱାର ଫିଟାଇ ଦେଖିଲା, ଠାକୁର ଆପଣା ଭକ୍ତ ପାଇଁ କ୍ଷୀର କୁଡୁଆ ଅଞ୍ଚଳ ତଳେ ଲୁଚାଇ ରଖିଛନ୍ତି। ଭକ୍ତ ତଦ୍‌ଗତ ଚିତ୍ତରେ

ଗୋପାଳ ମୂର୍ତ୍ତିକି ଅନାଇ ॥ ନଶି ବଞ୍ଚଇ ଅନଦ୍ର ହୋଇ ।୫୫।
ସେବକେ ନ ଦେଲେକ ଭୋଗ ॥ ମାଧବ ଛାଡ଼ି ତା ସଙ୍ଗ ।୫୬।
କବାଟ କଲ ଗଲେ ଘରେ ॥ ମାଧବ ରହେ ଅଭ୍ୟନ୍ତରେ ।୫୭।
ଅର୍ଦ୍ଧରାତ୍ରରେ ସ୍ୱପ୍ନ ହେଲ ॥ ସେବକ ଦ୍ୱାର ଫିଟାଇଲ ।୫୮।
ଦେଖିଲ ଅଞ୍ଚଳ ଉହାଡ଼େ ॥ କ୍ଷୀରଭୋଗ କୁଡ଼ୁଆ ନବାଡ଼େ ।୫୯।
ଗୋପାଳର କୃପା ଦେଖିଣ ॥ ସେବକ ଆଚମ୍ବିତ ପୁଣ ।୬୦।
ପଧୀଂର ପ୍ରଣିପାତ ହେଲ ॥ ଗୋପାଳ ମହିମା ବୋଇଲ ।୬୧।
ଡକା ପାରିଲ ଉଚସ୍ୱରେ ॥ ଭଗତ କେ ଅଛ ଏଠାରେ ।୬୨।
ଗୋପାଳ ନାମ ଧରି ଡାକେ ॥ ମାଧବ ଉଠଇ ସବେଗେ ।୬୩।
ସେବକ ଖଣ୍ଡ ତଳେ ଥୋଇ ॥ ମାଧବ ପାଦେଣ ପଡ଼ଇ ।୬୪।
ତୁ ଅଟୁ ଗୋପାଳର ପ୍ରିୟ ॥ ଭଗତ ଶ୍ରେଷ୍ଠ ହେଗ ନଅ ।୬୫।
ତୋ ଠାଇଁ କଲି ମୁଁ ଅପ୍ରାଧ ॥ ପାଇଲ ଗୋପାଳ ଆଦେଶ ।୬୬।
ଭୁଞ୍ଜି ତୁ ଯବେ ଏ ପ୍ରସାଦ ॥ ପ୍ରସାଦ ଲୁହଇ ଅମୃତ ।୬୭।
ମାଧବ ଭୁଞ୍ଜେ ତୋଷଚିତ୍ତେ ॥ ଗୋପାଳ ନାମ ସୁରି ହୃଦେ ।୬୮।
ପ୍ରଭାତୁ ଉଠିଣ ସେବକ ॥ ମାଧବ ପାଦେ ପଡ଼ିଲକ ।୬୯।
ଶୁଣିଲେ ଏହା ସର୍ବଜନ ॥ ମିଳିଲେ ମାଧବେ ତକ୍ଷଣ ।୭୦।
ଏତେ ଭଗତ କାହିଁଥିଲ ॥ କେତେ ପୁଣ୍ୟ ଏ କରିଥିଲ ।୭୧।
ଗୋପାଳ ଭଗତର ଲଗି ॥ କ୍ଷୀର ଚୋର ଏ ବୋଲିବାକ ।୭୨।
ସର୍ବେ ହୋଇଣ ଏକମେଳ ॥ ମାଧବ ପାଦେ ମଥ ଢାଳି ।୭୩।
କଲେକ କୀର୍ତ୍ତନ ଯେ ତହିଁ ॥ ମାଧବେ ଭରମ୍ଭିତ ହୋଇ ।୭୪।
କ୍ଷୀରଚୋରା ଏ ଗୋପୀନାଥ ॥ ଲୋକରେ ହେଲକ ପ୍ରଘଟ ।୭୫।
ଅନେକ ବରଷ ଯାପିଲ ॥ କ୍ଷୀରଚୋରରେ ଧ୍ୟାନ କଲ ।୭୬।
ରାଘବ ଈଶ୍ୱର ଶିଷ୍ୟ ତାର ॥ ଆସି ମିଳିଲେ ରେମୁଣାର ।୭୭।

---

କ୍ଷୀର କୁଡ଼ୁଆ ହାତରେ ଧରି ସେବକ ବାହାରକୁ ଆସି ମାଧବେନ୍ଦ୍ରଙ୍କର ସନ୍ଧାନ କଲ ଏବଂ ପ୍ରସାଦ ଅର୍ପଣ କରିବା ସଙ୍ଗେ ସାଷ୍ଟାଙ୍ଗ ପ୍ରଣିପାତ କଲ । ତତ୍ପର ଦିନ ପ୍ରଭାତରେ ଏ ଘଟଣା ପ୍ରଚାରିତ ହେବାପରେ ଲୋକେ ମାଧବେନ୍ଦ୍ରଙ୍କୁ ବହୁମାନ୍ୟ କଲେ ଏବଂ ତାଙ୍କ ଗୁଣପଟେ ଘେରିଯାଇ କୀର୍ତ୍ତନ କଲେ । ସେହିଦିନଠୁ ଶ୍ରୀଗୋପୀନାଥଙ୍କୁ ଭକ୍ତଗଣ 'କ୍ଷୀରଚୋରା' ଆଖ୍ୟା ପ୍ରଦାନ କଲେ ଏବଂ ରେମୁଣା ହେଲ ମାଧବେନ୍ଦ୍ରପୁରୀଙ୍କ ପ୍ରଚାର କାର୍ଯ୍ୟକଳାପର ମୁଖ୍ୟ କେନ୍ଦ୍ର ।

୭୭- ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟଦ୍ୱୟ— ଈଶ୍ୱରପୁରୀ ଓ ରାଘବେନ୍ଦ୍ର ପୁରୀ ରେମୁଣାରେ ଉପସ୍ଥିତ ହେଲେ ଏବଂ ଗୁରୁଙ୍କ ସହିତ ସମ୍ମିଳିତ ହେଲେ ।

ଭବାନନ୍ଦ ସେ ଆମନ୍ତ୍ରିଲ ॥ ଆସ ତୁ ମୋ ଗ୍ରାମେ ବୋଇଲ ।୭୮।
ପୁରସ୍ତମ ନନ୍ଦ ମାର୍ଗେଣ ॥ • ବେଣ୍ଟପୁର ଗ୍ରାମେ ବିଶ୍ରାମ ।୭୯।
ମାଧବ ଈଶ୍ୱର ରାଘବ ॥ ଅତିଥି ଗୁରୁ ଶିଷ୍ୟ ସବ ।୮୦।
ଭବାନନ୍ଦର ପୁରେ ହେଲେ ॥ କୀର୍ତ୍ତନ ବେଣ୍ଟପୁରେ କଲେ ।୮୧।
ମୃଦଙ୍ଗ ଗିନି ତାଳ ଦେଇ ॥ ହରି ନାମ କୀର୍ତ୍ତନ ଟେକ୍ରେଇ ।୮୨।
ରହିଲେ ତହିଁ ପକ୍ଷ ଏକ ॥ ଫଗୁଣ ମାସ ସୃଣଅଙ୍କ ।୮୩।
ଏଥି ଅନ୍ତରେ ଶୁଣ ରସ ॥ କ୍ଷୁଦ୍ର ଏ ଚରିତ ବିଶେଷ ।୮୪।
ମୋହର ଗ୍ରାମ ଖଣ୍ଡପଡ଼ା ॥ ବୟସ ଏକାଇଶ ହେଲ ।୮୫।
ପିତାମାତା ମୋ କାଳ ହେଲେ ॥ ବସ୍ତ୍ରିବ କପଟ ମୁଁ ଭଲେ ।୮୬।

---

୭୮- ଭବାନନ୍ଦ ପଟ୍ଟନାୟକ ଗଜପତି ପୁରୁଷୋତ୍ତମଦେବଙ୍କ ଦ୍ୱାରା ମେଦିନୀପୁରର (ମନ୍ଦାରଗଡ଼) ଶାସକ ରୂପେ ନିଯୁକ୍ତ ଥିଲେ । ରାଜକାର୍ଯ୍ୟରୁ ଅବ୍ୟାହତି ନେଲାପରେ ବୋଧହୁଏ ଆଧ୍ୟାତ୍ମିକ ଭାବ ପ୍ରତି ଆସକ୍ତ ହୋଇଥିଲେ । ସେ ଘଟଣାକ୍ରମେ ନିଜ ଗ୍ରାମ ବେଣ୍ଟପୁରକୁ ପ୍ରସିଦ୍ଧ ବୈଷ୍ଣବ ସାଧକ ମାଧବେନ୍ଦ୍ରପୁରୀଙ୍କୁ ଆମନ୍ତ୍ରଣ କଲେ । ମାଧବେନ୍ଦ୍ର ତାଙ୍କର ଦୁଇ ଶିଷ୍ୟ ଈଶ୍ୱର ଓ ରାଘବଙ୍କ ସହିତ ପୁରୀ ଯିବା ବାଟରେ ବେଣ୍ଟପୁର ଗ୍ରାମରେ ଅବସ୍ଥାନ କରି ଭବାନନ୍ଦଙ୍କର ଆତିଥ୍ୟ ଗ୍ରହଣ କଲେ ଓ କୀର୍ତ୍ତନ କଲେ ।

୮୩- ବେଣ୍ଟପୁରରେ ସେମାନେ ପନ୍ଦର ଦିନ ଭବାନନ୍ଦଙ୍କର ଅତିଥି ହୋଇଥିଲେ । ଫଗୁଣ ମାସ ସୃଣଅଙ୍କ = ଖ୍ରୀ: ୧୪୯୯, ମାର୍ଚ୍ଚ ମାସ ।

୮୪-୧୧୩ କବି ଏଠାରେ ଆପଣାର କ୍ଷୁଦ୍ର ଚରିତ ବର୍ଣ୍ଣନା କରିଛନ୍ତି । ଜନ୍ମସ୍ଥାନ ଖଣ୍ଡପଡ଼ା ଛାଡ଼ି ସେ କିପରି ପୁରୀ ଆସିଲେ ଏବଂ ରାୟ ରାମାନନ୍ଦଙ୍କ ସହିତ ମିଳିତ ହେଲେ, ତାହାର ରୋମାଞ୍ଚକର ବର୍ଣ୍ଣନା ଏଠାରେ ପ୍ରଦତ୍ତ । ପିତାମାତାଙ୍କର କାଳ ହେଲାପରେ ସେ ଜନ୍ମସ୍ଥାନ ଖଣ୍ଡପଡ଼ାରେ ଜୀବନଧାରଣର କୌଣସି ପନ୍ଥା ନ ପାଇ ପୁରୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସେତେବେଳକୁ ତାଙ୍କୁ ଏକୋଇଶ ବର୍ଷ ବୟସ । କବିଙ୍କ ବର୍ଣ୍ଣନା ଅନୁସାରେ ରାଜାଙ୍କ ସୃଣଅଙ୍କ ଅର୍ଥାତ ଖ୍ରୀ: ୧୪୯୯ ବେଳକୁ ତାଙ୍କୁ ୨୧ ବର୍ଷ ବୟସ ହୋଇଥିଲା—ଅତଏବ କବିଙ୍କର ଜନ୍ମ ଖ୍ରୀ: ୧୪୯୯-୨୧ = ୧୪୭୮ ଖ୍ରୀ:ରେ ହୋଇଥିବାର ଜଣାଯାଉଅଛି । ଖଣ୍ଡପଡ଼ାରୁ ବାହାରି ସେ ଦଶଦିନଠାରେ ବେଣ୍ଟପୁର ଗ୍ରାମରେ ପହଞ୍ଚିଥିଲେ ଏବଂ ସେହି ଗ୍ରାମରେ ଭବାନନ୍ଦ ରାୟଙ୍କ ଆମନ୍ତ୍ରଣ କ୍ରମେ ଉପସ୍ଥିତ ଥିବା ଭକ୍ତ ପ୍ରବର ମାଧବେନ୍ଦ୍ର ପୁରୀ ଓ ତାଙ୍କ ସହିତ ଥିବା ତାଙ୍କର ଦୁଇ ଶିଷ୍ୟ ଈଶ୍ୱରପୁରୀ ଓ ରାଘବପୁରୀଙ୍କ କୀର୍ତ୍ତନ ଦେଖିଲେ । ଏଥିରେ ସେ ଏତେ ବିହ୍ୱଳ ହେଲେ ଯେ, ତତ୍ପର ଦିନ ପ୍ରଭାତରେ ସେ ମାଧବେନ୍ଦ୍ର ପୁରୀଙ୍କୁ ଦଣ୍ଡବତ

ସଂସାରେ ଦରିଦ୍ରଟି ମୁହିଁ || ଶାଖା ସୋଦର ନାହିଁ କେହି | ୮୭ |
କରିବି କଣ ଭାଳିଲିଁ || ଭକ୍ତି ଏ ମନରେ ପଶଇ | ୮୮ |
ଯିବାକୁ କ୍ଷେତ୍ରେ ମନ ଦେଲି || ହୃଦରେ ସାହସ ଧଇଲି | ୮୯ |
ପ୍ରଭାତୁ ଗ୍ରାମରୁ ବାହାରି || ହେଲି ମୁଁ ପଥିକ ବାଟରି | ୯୦ |
ଗ୍ରାମ ପର୍ବତ ବନ ବଣ || କେତେ ଯେ ଅତିକ୍ରମି ପୁଣ | ୯୧ |
ଯେ ଯାହା ଦିଏ ମୁଁ ଭୁଞ୍ଜଇ || ତହିଁକି ବାରଣ ନ ଥଇ | ୯୨ |
ଦଶଦିନରେ ଆସି ହେଲି || ବେଣ୍ଟପୁର ଗ୍ରାମେ ଭ୍ରମିଲି | ୯୩ |
ହେଲା ସାୟଂକାଳ ମୁହୂର୍ତ୍ତ || ମାଧବ ରାଘବ ସମେତ | ୯୪ |
ଭବାନନ୍ଦର ଦ୍ୱାର ଘରେ || କୀର୍ତ୍ତନ କରଇ ସରାଗେ | ୯୫ |
କୀର୍ତ୍ତନ ଦେଖିଲି ମୁଁ ଯେବେ || ରତ ଅନନ୍ତ ମତ ଦୃଢ଼େ | ୯୬ |
ପ୍ରଭାତୁ ଗଲି ମୁଁ ସଧୀରେ || ପଡ଼ିଲି ଗୋସାଇଁ ପୟରେ | ୯୭ |
ବୋଇଲି ପ୍ରଭୁ ରକ୍ଷାକର || ମୁଁ ତୋର ପାଦର କିଙ୍କର | ୯୮ |
କୀର୍ତ୍ତନ ଦଳେ ମୋତେ ନିଅ || ହରି ନାମ ମୋତେ ଶିଖାଅ | ୯୯ |
ମାଧବ ଗୋସାଇଁ ଶୁଣିଲେ || ଉଠ ଉଠ ବୋଲି ବୋଇଲେ | ୧୦୦ |
ମସ୍ତକେ ମୋର ହାତ ଦେଲେ || ପିଠିରେ ହାତ ବୁଲାଇଲେ | ୧୦୧ |
ବୋଇଲେ ବାଳୁତ ତନୟ || କୀର୍ତ୍ତନେ ତୋର କାର୍ଯ୍ୟ କିସ | ୧୦୨ |
ଯାଅ ତୁ ଭବାନନ୍ଦ ପାଶ || ତୋର ଉଦନ୍ତ ସେ ବୁଝିବ | ୧୦୩ |
ଭବାନନ୍ଦର ପାଶେ ହେଲି || ପୟରେ ଦଣ୍ଡବତ କଲି | ୧୦୪ |
ଭବାନନ୍ଦ ଯେ ବରଗିଲ || ରମାନନ୍ଦଙ୍କୁ ବୋଲି ବୋଇଲ | ୧୦୫ |
ରମାନନ୍ଦ ତା ଜ୍ୟେଷ୍ଠ ସୁତ || ବସଇ ହୋଇ ପୋଥିହସ୍ତ | ୧୦୬ |
ମୁଁ ଯାଇ ଜଣାଇଲି ଦୁଃଖ || ସ୍ନେହେ ସେ ମୋତେଟି ନିରେଖ | ୧୦୭ |
ବୋଇଲେ ରହ ତୁ ମୋ ପାଶ || କରଣ ପିଲ ତୁ ବିଶେଷ | ୧୦୮ |
ଝିଗ୍ରି ତୁ କାହିଁ ଏଥେ ରହ || ପାଠ ପଢ଼ିଲର ଦଶେ ମୁହଁ | ୧୦୯ |
ପାଠ ମୁଁ କିଛି ପଢ଼ିନାହିଁ || ପଢ଼ାଇଲ ପାଠ ନିଠାଇ | ୧୧୦ |

---

ପ୍ରଣାମ କରି ତାଙ୍କ କୀର୍ତ୍ତନ ଦଳରେ ନେବା ପାଇଁ ଅନୁରୋଧ କଲେ । ମାତ୍ର ଭବାନନ୍ଦଙ୍କୁ ସାକ୍ଷାତ କରିବା ପାଇଁ ମାଧବେନ୍ଦ୍ର ପୁରୀ ନିର୍ଦ୍ଦେଶ ଦେଲେ ଏବଂ ଭବାନନ୍ଦ ନିର୍ଦ୍ଦେଶ ଦେଲେ ଜ୍ୟେଷ୍ଠ ପୁତ୍ର ରମାନନ୍ଦଙ୍କୁ ଭେଟିବା ପାଇଁ । ଏହି ଯୁବକଟିର ପରିଚୟ ପାଇ ରମାନନ୍ଦ ତାଙ୍କୁ ନିଜ ପାଖରେ ରଖାଇଲେ ଏବଂ କିଛି ପାଠ ମଧ୍ୟ ଶିଖାଇଲେ । ସେହି ସମୟଠୁ ଅର୍ଥାତ ୧୪୯୯ରୁ ମାଧବ ପଟ୍ଟନାୟକ ରାୟ ରମାନନ୍ଦଙ୍କର ବ୍ୟକ୍ତିଗତ ସହାୟକ ରୂପେ କାର୍ଯ୍ୟ କରି ଆସୁଥିଲେ ।

ପଢ଼ିଲି ପାଠ ମୁଁ ଥୋଡ଼ାଏ || ଧରିଲି ତାଳପତ୍ର ଖେଦାଏ ।୧୧୧।
ବୋଇଲି ମୋ ପାଖେ ତୁ ଥିବୁ || ମୋହର ବେଉର ବୁଝିବୁ ।୧୧୨।
ରହିଲି ତାଙ୍କ ଅନୁସରେ || ଭାଗ୍ୟକୁ ଏକ ଗ୍ରନ୍ଥ ପଢ଼ି ।୧୧୩।
ମାଧବପୁରୀ କ୍ଷେତ୍ରେ ଗଲେ || ରେମୁଣା କଟକେ ହୋଇଲେ ।୧୧୪।
ଗୋପୀନାଥ ମୂର୍ତ୍ତି ସମୀପେ || କୀର୍ତ୍ତନ କରୁଥାଇ ନିତ୍ୟେ ।୧୧୫।
ପ୍ରେମରେ ମତ୍ତ ଜର ଜର || ନୟନୁ ଝରେ ଅଶ୍ରୁଧାର ।୧୧୬।
ତାଳେ ସେ କଲେ ସ୍ୱର୍ଗବାସ || ଫଗୁଣ ମାସ ପାଞ୍ଚଅଙ୍କ ।୧୧୭।
ରାଜା ସେ ବହୁ ଦୁଃଖ କଲେ || ଭବାନନ୍ଦଙ୍କୁ ହକାରିଲେ ।୧୧୮।
ବୋଇଲେ ମାଧବ ଗୋସାଇଁ || ସ୍ୱର୍ଗ ଚଳିଲେ ନାମ ଗାଇ ।୧୧୯।
ଧନ୍ୟ ତା ଜୀବନ ବୈଷ୍ଣବ || ଧନ୍ୟ ତା କୀର୍ତ୍ତି ଥାପିଲେ ।୧୨୦।
ବହୁତ ଦୁଃଖ ସେହୁ କଲେ || ସଦଗତି ହୋଉ ବୋଇଲେ ।୧୨୧।
ବର୍ତ୍ତିବ ରାମରାୟ ପୋଥା || ପଣ୍ଡିତ ପଣେ ସାମରଥା ।୧୨୨।
ରଚିଲେ ବହୁ ନାଟଗୀତ || ଜଗନ୍ନାଥ ବଲ୍ଲଭ ନାମେ ତ ।୧୨୩।
ରାଜାର କରେ ଅରପିଲେ || ରାଜା ସେ ଧନ୍ୟ ଧନ୍ୟ କଲେ ।୧୨୪।
ରାଜା ଯେ ସନ୍ମତ ହେଲେ || ଗୀତ ନାଟକର ବୋଇଲେ ।୧୨୫।
ଆଠଅଙ୍କ ଫଗୁଣ ମାସର || ଜଗନ୍ନାଥ ବଲ୍ଲଭ ଉତ୍ସବ ।୧୨୬।
ଦୋଳଉତ୍ସବ ଦେଉଳରେ || ପାଞ୍ଚଦିନ ନାଟ ମନ୍ଦିରେ ।୧୨୭।
ହେଲାକ ଏହୁ ନାଟଗୀତ || ରାଜା ସେ ଲଭିଲେ ହରଷ ।୧୨୮।
ରାୟ ପଦ ରାମାନନ୍ଦରେ || ଦେଲେକ ରାଜା ସଭାରେ ।୧୨୯।
ସୁନାର ଛଡ଼ି ଏକ ଦେଲେ || ରାଧାକୃଷ୍ଣ ଭଗତ ସ୍ନେହେ ।୧୩୦।
ରାୟର ନାଟକ ଦେଖିଣ || ସେବକେ କଲେ ଧନ୍ୟ ଧନ୍ୟ ।୧୩୧।
ନଅ ଅଙ୍କରେ ଅଙ୍କ ହେଲେ || ରାଜମନ୍ତ୍ରୀ ପାଅ ବୋଇଲେ ।୧୩୨।

---

୧୧୭- ରାଜାଙ୍କ ପାଞ୍ଚଅଙ୍କ ଫଗୁଣ ମାସ = ଖ୍ରୀ: ୧୫୦୦, ମାର୍ଚ୍ଚ ମାସ—ରେମୁଣା କଟକରେ ଗୋପୀନାଥଙ୍କ ଦେଉଳରେ ମାଧବେନ୍ଦ୍ରପୁରୀଙ୍କ ତିରୋଧାନ ଘଟିଲା ।

୧୨୬- ରାମାନନ୍ଦଙ୍କ ସଙ୍ଗୀତ ନାଟକ 'ଜଗନ୍ନାଥ ବଲ୍ଲଭ' ଗଜପତି ପ୍ରତାପରୁଦ୍ରଦେବଙ୍କୁ ଉତ୍ସର୍ଗ କରାଗଲା ଏବଂ ମନ୍ଦିରରେ ଏହାର ଅଭିନୟ ଲାଗି ରାଜା ଅନୁମତି ଦେଲେ । ଏହି ବିଖ୍ୟାତ ନାଟକର ରଚନା କାଳ ରାଜାଙ୍କ ଅଠଅଙ୍କ ଫଗୁଣ ମାସ = ୧୫୦୨, ମାର୍ଚ୍ଚ ମାସ । ମାର୍ଚ୍ଚ ମାସର ଦୋଳ ଉତ୍ସବ ବେଳେ ପାଞ୍ଚଦିନ ଧରି ଏହା ଶ୍ରୀମନ୍ଦିରରେ ଅଭିନୀତ ହୋଇଥିଲା । ରାମାନନ୍ଦଙ୍କୁ 'ରାୟ' ପଦ ଦିଆଗଲା । ରାଜା ଏକ ସୁନା ଛଡ଼ି ଉପହାର ଦେଲେ ।

୧୩୨- ରାଜାଙ୍କ ନଅଅଙ୍କ = ଖ୍ରୀ: ୧୫୦୩ । ରାୟ ରାମାନନ୍ଦଙ୍କୁ ରାଜମହେନ୍ଦ୍ରୀର

ରାଜମହେନ୍ଦ୍ରୀ ରାଜ୍ୟ ବୃହତ୍ || ସେ ରାଜ୍ୟ ଲୋକ ଅସନ୍ତୋଷ |୧୩୩|
ରାମ ରାୟ ଯେ ରାଜା ହେଲେ || ରାଜମହେନ୍ଦ୍ରୀ ଦେଶର ବୁଝିଲେ |୧୩୪|
ମୋତେ ଯେ ସେହୁ ଦୟା କଲେ || ଆସ ତୁ ସଙ୍ଗେଣ ବୋଇଲେ |୧୩୫|
ରାଜ ର ସପ୍ତୋଦଶ ଅଙ୍କେଣ || ଦୁର୍ଭିକ୍ଷ ଦେଲକ ଲକ୍ଷଣ |୧୩୬|
ବହୁତ ଲୋକ କଷ୍ଟ ଗଲେ || ସଇନୀ ଅଭୁକ୍ତ ରହିଲେ |୧୩୭|
ରାମରାୟଙ୍କ ଯତ୍ନ ଫଳେ || ବଞ୍ଚିଲେ ମାନବ ଶସ୍ୟଲେ |୧୩୮|
ଭବାନନ୍ଦ ଯେ ସ୍ୱର୍ଗ ଗଲେ || ରାମାନନ୍ଦ ଦୁର୍ବଳ ଚିନ୍ତା କଲେ |୧୩୯|
ଗୋପୀନାଥ ଯେ ବାଣୀନାଥ || ରାଜକାର୍ଯ୍ୟକୁ ଯୋଗ୍ୟପାତ୍ର |୧୪୦|
କଳାନିଧି ଯେ ସୁଧାନିଧି || ଶେଷ ବିଦ୍ୟାକୁ ଦେଲେ ବୁଦ୍ଧି |୧୪୧|
ଲଗତ ରାୟ ରାମାନନ୍ଦ || ରାଜସଦନ କୀର୍ତ୍ତନ ଆନନ୍ଦ |୧୪୨|
ଗୋଦାବରୀ ଘାଟେ ସ୍ନାନ || କରଇ ନାମ ସେ ଭଜନ |୧୪୩|
ସାଧୁ ବୈଷ୍ଣବ ସଙ୍ଗ ମେଳେ || ପଢ଼ଇ ଗୀତ ନାଟ ଖେଳେ |୧୪୪|
ଜୟଦେବର ଗୀତପୋଥି || ଶ୍ଲୋକଙ୍କ ରଚିତ |୧୪୫|
ନାଟକର ରଚି ଲୁଚଇ || ନାମ ଭଜନେ ମନ ଦେଇ |୧୪୬|
ରାଧାକୃଷ୍ଣ ପ୍ରେମେ ମଜଇ || ତା ବିନୁ ଆନ ନ ଜାଣଇ |୧୪୭|
ରାଜା ଆସିଣ ତରଜିଲେ || ସଇନୀ ଭେଳାଅ ବୋଇଲେ |୧୪୮|
ଗଳାରେ ଲଗିଲଟି ଫାଶ || ତୁ ବୋଲ୍ ଏବେ କୃଷ୍ଣ ରସ |୧୪୯|
ଏତେବେଳେ ଏ ଭଲ ନୋହେ || ସଇନୀ ହଜାଅ ବେଢ଼ାଏ |୧୫୦|
କହଇ ମାଧବ ଯେ ଦାସ || ଶୁଣ ଭକତେ ଆଦରସ |୧୫୧|

---

ଶାସକ ପଦରେ ନିଯୁକ୍ତ କରିଥିଲେ। କବି ମାଧବ ପଟ୍ଟନାୟକ ତାଙ୍କର ବ୍ୟକ୍ତିଗତ ସହାୟକ ରୂପେ ରାଜମହେନ୍ଦ୍ରୀ ଗଲେ।

୧୩୬- ରାଜାଙ୍କ ସପ୍ତୋଦଶ ଅଙ୍କ = ଖ୍ରୀ: ୧୫୦୬। ଏ ବର୍ଷ ଦୁର୍ଭିକ୍ଷ ହୋଇଥିଲା। ଭବାନନ୍ଦ ରାୟଙ୍କର ମୃତ୍ୟୁ ହୋଇଥିଲା। ରାମାନନ୍ଦଙ୍କର ଅନ୍ୟ ଚାରି ଭାଇ ମଧ୍ୟରୁ ଗୋପୀନାଥ ଓ ବାଣୀନାଥ ରାଜକାର୍ଯ୍ୟରେ ନିଯୁକ୍ତ ହେଲେ ଏବଂ କଳାନିଧି ଓ ସୁଧାନିଧି ବୋଧହୁଏ ମୁଖ୍ୟରେ ରାଜାଙ୍କର ସହାୟକ ହେଲେ।

୧୪୨-୧୪୭ ରାଜମହେନ୍ଦ୍ରୀର ଶାସକ ରୂପେ ରାମାନନ୍ଦଙ୍କର ଅସଫଳତା ଏବଂ ବୈଷ୍ଣବ-ଜନୋଚିତ କାର୍ଯ୍ୟକଳାପ ଏଠାରେ ବର୍ଣ୍ଣିତ।

୧୪୮-୧୫୦ ଶାସକ ଅପେକ୍ଷା ରାମାନନ୍ଦ ଥିଲେ ଅଧିକ ଧାର୍ମିକ ଓ ପଣ୍ଡିତ। ତେଣୁ ଗଜପତି ତାଙ୍କୁ ତର୍ଜନା କଲେ ଏବଂ ସୈନ୍ୟସାମନ୍ତ ନେଇ ହଜାର ରହିବାକୁ ନିର୍ଦ୍ଦେଶ ଦେଲେ।

# ଚତୁର୍ଥ ଅଧ୍ୟାୟ

ରୁଦ୍ରଦେବ ଯେ ଗଜପତି || ପ୍ରତାପଦେବେ ନ ଜାଣନ୍ତି | ୧ |
ବିଷ୍ଣୁ ଅଂଶରୁ ସେହୁ ଜାତ || ସୂର୍ଯ୍ୟବଂଶୀ ଯେ ନାମ ଖ୍ୟାତ | ୨ |
ତ୍ରିଭୁବନରେ ଜଣେ ନୃପ || ବଢ଼ାଇ ତାହାର ଅମାପ | ୩ |
ସକଳ ରାଜା ବଶ କଲେ || ବେଣ୍ଟ ଭିଆଣେ ତରଜିଲେ | ୪ |
ମହା ପ୍ରତାପୀ ମହା ତେଜା || ସୁଖେ ପାଳଇ ଜନପ୍ରଜା | ୫ |
ସହସ୍ରେ ବୀର ଘଣ୍ଟ ଘେନ || ଦକ୍ଷିଣେ ଚଳନ୍ତ ପୁଣି | ୬ |
ଉଦୟଗିରି ଚନ୍ଦ୍ରଗିରିରେ || କଟକ କଲ୍ଲ ପ୍ରତାପରେ | ୭ |
ପନ୍ଦର ଅଙ୍କେ କୃଷ୍ଣରାୟ || ସଙ୍ଗତେ ଯୁଦ୍ଧେ ହପରାୟ | ୮ |
ଉତ୍ତରୁ ଗଜ ଇସିମାଲ || ଚହଟି ଅଇଲ କ୍ଷେତ୍ରବୋଲ | ୯ |
ପ୍ରଭୁଙ୍କୁ ଘେନଇ ବୋଇଲ || ମହାସଙ୍କଟ ଉପୁଜିଲ | ୧୦ |

---

୧-୭ ଗଜପତି ପ୍ରତାପରୁଦ୍ରଙ୍କ ବ୍ୟକ୍ତିତ୍ୱ ସମ୍ପର୍କୀୟ ସୂଚନା ଏଠାରେ ବର୍ଣ୍ଣିତ । ବେଣ୍ଟଭିଆଣ = ସୈନ୍ୟବାହିନୀର ଯୁଦ୍ଧଯାତ୍ରା ଲାଗି ଜଙ୍ଗଲ କାଟି ରାସ୍ତା ତିଆରି କରିବା କାମ । ସୈନ୍ୟମାନେ ଯୁଦ୍ଧଯାତ୍ରା କରିବା ପୂର୍ବରୁ ଏକ ଦଳ ଆଗୁଆ ସୈନ୍ୟ ଏହି କାମ କରୁଥିଲେ । ଏହି ଦଳକୁ 'ବେଣ୍ଟକାରଦଳ' ବା ଅଗୁଆ ଦଳ କୁହାଯାଉଥିଲା । କୃଷ୍ଣଦେବ ରାୟଙ୍କ ସହିତ ପରବର୍ତ୍ତୀ ସମୟରେ ହୋଇଥିବା ଯୁଦ୍ଧର ପୂର୍ବ ପ୍ରସ୍ତୁତି ସମ୍ପର୍କୀୟ ସୂଚନା ଏଠାରେ ବୋଧହୁଏ କବି ଦେଇଛନ୍ତି । ଉଦୟଗିରି ଓ ଚନ୍ଦ୍ରଗିରି ସେତେବେଳେ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

୮- ରାଜାଙ୍କ ପନ୍ଦର ଅଙ୍କ = ଖ୍ରୀ: ୧୫୦୯ । କୃଷ୍ଣଦେବ ରାୟ ବିଜୟନଗର ସାମ୍ରାଜ୍ୟର ସିଂହାସନ ଆରୋହଣ କଲୁ କରୁ ଆକ୍ରମଣ ଆରମ୍ଭ କଲେ । ପ୍ରତାପରୁଦ୍ର ବିଜୟନଗର ବିରୁଦ୍ଧରେ ଲିପ୍ତ ହେଲେ ଏବଂ ଦକ୍ଷିଣରେ ଅବସ୍ଥାନ କରୁଥିଲେ ।

୯- ଉତ୍ତରରୁ ବଙ୍ଗ ସୁଲତାନ ଗାଜୀ ଇସମାଇଲ ପୁରୀ ପର୍ଯ୍ୟନ୍ତ ମାଡ଼ି ଆସି ଶ୍ରୀବିଗ୍ରହମାନଙ୍କୁ ଅପହରଣ କରିବାକୁ ଚେଷ୍ଟାକଲେ । ମାତ୍ର ସେବକମାନେ ବିଗ୍ରହମାନଙ୍କୁ ହାତୀ ପିଠିରେ ନେଇ ଚତୁରତା ସହକାରେ ଚିଲିକା ହ୍ରଦ ମଧ୍ୟରେ ଚଢ଼େଇଗୁମ୍ଫାରେ ଲୁଚାଇଲେ । ନୃସିଂହ ପରିବଡ଼ୁ ନାମରେ ଜଣେ ବ୍ୟକ୍ତି ଏ କାର୍ଯ୍ୟ ସମ୍ପାଦନ କରିଥିଲେ । ଜଣେ 'ପାଇ' ହରପା ଦେଇଙ୍କୁ ଯାଇ କୃଷ୍ଣାବେଣୀ ନଦୀ କୂଳରେ ଅବସ୍ଥାନ କରୁଥିବା ଗଜପତି ରାଜାଙ୍କୁ ଏ ସମ୍ବାଦ ଦେଲେ ।

ସେବକେ ନେଇ ଲୁଚାଇଲେ ॥ ଗଡ଼ କେଙ୍କଲେ ଯାଇ ହେଲେ ।୧୧।
ଛତ୍ରୀରେ ବସାଇ ଶଗଡ଼ ॥ ଚଳେ ନୃସିଂହ ଉପରସ୍ଥ ।୧୨।
ଚିଲିକା ହ୍ରଦ ମଧ୍ୟର ॥ ଚଢ଼େଇ କୂର୍ମାକ ଭିତର ।୧୩।
ଶତ୍ରୁମାନ ଲୁଚିଲେ ॥ ପାଶେକ ଦକ୍ଷିଣେ ରହିଲେ ।୧୪।
କୃଷ୍ଣାବେଣୀ ନଦୀ କୂଳର ॥ ରାଜାଙ୍କୁ ବୋଲେ ସମାଚାର ।୧୫।
ଶୁଣି ପ୍ରତାପ ନୃପବର ॥ କ୍ରୋଧେ ବଚନ ଉଚ୍ଚାର ।୧୬।
ମୁଁ ଆଜ୍ଞା ଏହାଙ୍କ ବେଭାର ॥ ପ୍ରଭୁଙ୍କୁ ଯବନେ ଅର୍ପିଲ ।୧୭।
ଚଢ଼େଇ ବୁଢ଼ା ବୋଲ ଆଣି ॥ ଶୁଣି ଅମୂଲ୍ୟ ନୃପମଣି ।୧୮।
ଗଡ଼ କେଙ୍କଲେ ଆସି ମିଳେ ॥ ଦର୍ଶନ କରଇ କାତରେ ।୧୯।
ବୋଇଲ ପ୍ରଭୁ କୃପା କର ॥ ଏ ରାଜ୍ୟ ଅଟଇ ତୋହର ।୨୦।
ତୋ ବଳେ ମୁହିଁ ବଳୀୟାର ॥ ସଂହର ଯବନ କ ଶୂର ।୨୧।
ଜଗନ୍ନାଥ ନାମ ମାଳା କରେ ॥ ଚଳଇ ନୃପ ଝରତରେ ।୨୨।
ମ୍ଲେଚ୍ଛମାନଙ୍କୁ ଘଉଡ଼ିଲ ॥ ମନ୍ଦାରଗଡ଼ ବୋଲି ଗଲ ।୨୩।
ଲେଉଟି ଅଇଲ ଭୂରିତ ॥ ଦକ୍ଷିଣେ ଗମିଲ ଯାବନ୍ତ ।୨୪।
ସମର ହେଲ ଘୋରତର ॥ ନୃପତି ହେଲେକ କାତର ।୨୫।
ବୋଇଲେ ପ୍ରଭୁ ରକ୍ଷାକର ॥ ଏ ରାଜ୍ୟ ଅଟଇ ତୋହର ।୨୬।
ସଦାନାମକୁ ସୁମରଇ ॥ ପ୍ରଭୁର ପାଦେ ଚିତ୍ତ ଦେଇ ।୨୭।
ଏ କାଳେ କ୍ଷେତ୍ରେ ଆସି ମିଳେ ॥ ନବୀନ ସନ୍ତ ଭକ୍ତମେଳେ ।୨୮।

---

ରାଜା ଏଥିରେ ବିଚଳିତ ହୋଇ ଗଡ଼ କେଙ୍କଲକୁ (ବୋଧହୁଏ ଅଧୁନାତନ ବଙ୍କାଡ଼ ଗଡ଼) ଆସି ଶ୍ରୀଜଗନ୍ନାଥଙ୍କ ଦର୍ଶନ କଲେ ଏବଂ ରାଜ୍ୟର ସୁରକ୍ଷା ସକାଶେ ଆଜ୍ଞାମାଳ ପାଇ ଯବନ ହାତରୁ ରାଜ୍ୟର ସୁରକ୍ଷା ପାଇଁ ପଣ କଲେ। ମନ୍ଦାରଗଡ଼ ପର୍ଯ୍ୟନ୍ତ ସୈନ୍ୟଚାଳନା କରି ଯବନମାନଙ୍କୁ ଘଉଡ଼ାଇ ଦେଲେ ଏବଂ ଦକ୍ଷିଣ ଯାତ୍ରା କଲେ। ଏହା ବୋଧହୁଏ ଖ୍ରୀ: ୧୬୦୯-୧୦ର ଘଟଣା।

୨୮-୩୦ ଏତେବେଳେ ଶ୍ରୀକୃଷ୍ଣ ଚୈତନ୍ୟ ନୀଳାଚଳ ଧାମରେ ଆସି ପଦାର୍ପଣ କଲେ। ସେ ଏକାକୀ ଜଗନ୍ନାଥ ମନ୍ଦିରକୁ ପ୍ରବେଶ କଲେ ଏବଂ ପ୍ରେମଭାବର ଆବେଶରେ ମନ୍ଦିର ମଧ୍ୟରେ ଅଚେତନ ହୋଇପଡ଼ିଲେ। ଦୈବ ଯୋଗକୁ ମନ୍ଦିରରେ ବାସୁଦେବ ସାର୍ବଭୌମ ଥିଲେ। ସେ ଏହି ନୂତନ ଆଗନ୍ତୁକ ସନ୍ନ୍ୟାସୀଙ୍କୁ ସାଷ୍ଟାମ୍ କରାଇଲେ ଏବଂ ନିଜ ଭବନକୁ ନେଇଗଲେ। କିଛି ସମୟ ପରେ ବୋଧହୁଏ ପଛରେ ପଡ଼ିଯାଇଥିବା ଚୈତନ୍ୟଙ୍କର ସହଚରମାନେ ଆସି ପ୍ରବେଶ ହେଲେ ଏବଂ ସାର୍ବଭୌମଙ୍କ ଗୃହରେ ସମସ୍ତେ ସମ୍ମିଳିତ ହୋଇ ପୁଣି ଦେଉଳକୁ

ନାମ ତା କୃଷ୍ଣ ଚଇତନ୍ୟ ॥ ସାକ୍ଷାତ ଈଶ୍ୱର ସମାନ ।୨୯।
ଜଗନ୍ନାଥଙ୍କୁ ସେ ଦେଖିଣ ॥ ପ୍ରେମରେ ହୋଏ ଅଚେତନ ।୩୦।
ସାର୍ବଭୌମ ସେ ଦେଖିଲେ ॥ ସାଷ୍ଟାଙ୍ଗ ପତନ କରାଇଲେ ।୩୧।
ଆପଣା ଭବନକୁ ନେଲେ ॥ ଭଗତ ଜନେ ଆସି ହେଲେ ।୩୨।
ଗଲେ ଦେଉଳେ ଦରଶନେ ॥ ପ୍ରସାଦ ଭୁଞ୍ଜିଲେ ଆପଣେ ।୩୩।
କ୍ଷେତ୍ରେ ଏକ ମାସ ଅବଧି ॥ ଶାସ୍ତ୍ର ଚରଚ୍ଚା କଲେ ବୁଦ୍ଧି ।୩୪।
ମାସକ ରହିଲେ କ୍ଷେତ୍ରର ॥ ଦେଉଳେ କରଇ ସଞ୍ଚାର ।୩୫।
ବଟ ଗଣେଶ ମୂଳେ ବସେ ॥ ଜଗନ୍ନାଥ ଦାସ ପ୍ରତକ୍ଷେ ।୩୬।
ରହାଇ ମଣ୍ଡପ ନିର୍ମାଣି ॥ ରାଧାକୃଷ୍ଣ ମୂର୍ତ୍ତି ଥାପଣି ।୩୭।
ଭାଗବତ ରଚନା କରେ ॥ ଭଗତେ ଶୁଣନ୍ତି ସଧୀରେ ।୩୮।
ଭାଗବତର ଭାବ ଯେତେ ॥ ମଧୁର ସ୍ୱରେ ଗାଏ ନିତ୍ୟେ ।୩୯।
ଅନେକ ସନ୍ତ ଅବକାଶେ ॥ ଭଗତେ ଶୁଣନ୍ତି ସେ ହରଷେ ।୪୦।
ଭାଗବତ ଅର୍ଥ ବଖାଣେ ॥ ଆସି ମିଳିଲେ ଚଇତନ୍ୟେ ।୪୧।
ଭାଗବତ ଅର୍ଥ ଶୁଣିଲେ ॥ ସ୍ୱାମୀର ଭାବ ସେ ବୁଝିଲେ ।୪୨।
ନୟନ ଅଶ୍ରୁ ଝର ଝର ॥ ଅଙ୍ଗେଣ ପୁଲକ ଅପାର ।୪୩।
ଜଗନ୍ନାଥର ଏତେ ଭାବ ॥ ଚୈତନ୍ୟ କଲେ ତାହା ଠାବ ।୪୪।
ବୋଇଲେ ତୁ ଭଗତ ଶ୍ରେଷ୍ଠ ॥ ଅଗଧ ଭାବେ ମତ ପୁଷ୍ଟ ।୪୫।

---

ଯାଇ ଜଗନ୍ନାଥଙ୍କୁ ଦର୍ଶନ କଲେ । ଏହି ରୂପେ ଚୈତନ୍ୟଙ୍କର ଶ୍ରୀକ୍ଷେତ୍ର ଆଗମନ ଓ ଏଠାରେ ଅବସ୍ଥାନର ସମସ୍ତ ଏକ ମାସ ବୋଲି କବି ଏଠାରେ ସୂଚନା ଦେଇଛନ୍ତି ।

୩୬-୫୦ ବଟଗଣେଶ ମୂଳରେ ଜଗନ୍ନାଥ ଦାସ ଏକ କ୍ଷୁଦ୍ର ମଣ୍ଡପ ନିର୍ମାଣ କରି ସେଥିରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ସ୍ଥାପନ କରି ତାହାର ସମ୍ମୁଖରେ ବସି ପ୍ରତ୍ୟହ ଭାଗବତ ରଚନା କରିବା ସଙ୍ଗେ ସଙ୍ଗେ ଭାଗବତର ଅର୍ଥ ଲୋକଙ୍କୁ ବୁଝାଉଥିଲେ । ଭାଗବତ ପାଠ କଲାବେଳେ ତାଙ୍କ ସର୍ବାଙ୍ଗରେ ସାତ୍ତ୍ୱିକ ଭାବମାନ ପ୍ରକାଶ ପାଉଥିଲା । ଦିନେ ସନ୍ଧ୍ୟା ସମୟରେ ଚୈତନ୍ୟ ଆସି ଭାଗବତ ଶୁଣିଲେ ଏବଂ ଜଗନ୍ନାଥଙ୍କ ସାତ୍ତ୍ୱିକ ଭାବମାନ ଲକ୍ଷ୍ୟ କଲେ । ଏଥିରେ ସେ ଏତେଦୂର ମୁଗ୍ଧ ହୋଇପଡ଼ିଲେ ଯେ ଦୁହେଁ ଅଢ଼େଇ ପ୍ରହର ପର୍ଯ୍ୟନ୍ତ କୋଳାଗ୍ରତ ଅବସ୍ଥାରେ ରହିଲେ । ଚୈତନ୍ୟ କହିଲେ— ତୁମର ଏ ପ୍ରେମଭାବ ମୁଁ ଅନ୍ୟ କେଉଁଠାରୁ ପାଇନାହିଁ; ତେଣୁ ତୁମର ସଙ୍ଗ ମୁଁ ଛାଡ଼ିବି ନାହିଁ । ଜଗନ୍ନାଥ ଦାସଙ୍କୁ ଚୈତନ୍ୟ ଆଦରରେ ସ୍ୱାମୀ ବୋଲି ସମ୍ବୋଧନ କଲେ ଏବଂ ଜଗନ୍ନାଥ ଚୈତନ୍ୟଙ୍କୁ ପ୍ରଭୁ ବୋଲି ସମ୍ବୋଧନ କଲେ । ଏହିଠାରୁ ଉଭୟଙ୍କ ମଧ୍ୟରେ ଗଭୀର ତାଦାତ୍ମ୍ୟ ଭାବ ଜାତ ହେଲା ।

ତୋ ଭାବ ମୁଁ କାହୁଁ ପାଇବି || ତୋହର ସଙ୍ଗ ନ ଛାଡ଼ିବି | ୪୬ |

ଅଢ଼େଇ ପ୍ରହର ପର୍ଯ୍ୟନ୍ତେ || ଦୁହେଁ ରହିଲେ କୋଳାଗ୍ରତେ | ୪୭ |

ଦୁହେଁ ଏକତ୍ର ଠାବେ ବସି || ପରସ୍ପରକୁ ପ୍ରଶଂସନ୍ତି | ୪୮ |

ସ୍ୱାମୀ ତୁ ବୋଇଲ ଚୈତନ୍ୟ || ପ୍ରଭୁ ତୁ ବୋଇଲ ଆପଣ | ୪୯ |

ସମୁଦ୍ରେ ନଦୀ ଯେ ମିଶିଲ || ଭାବ ତରଙ୍ଗ ଉଚ୍ଛୁଳିଲ | ୫୦ |

ସାର୍ବଭୌମ ସଙ୍ଗେ ମିଳଣ || କଲେକ ଶାସ୍ତ୍ର ଯେ ପଠନ | ୫୧ |

ମହାତାର୍କିକ ନ୍ୟାୟବେତ୍ତା || ସାର୍ବଭୌମ ଯେ ମହାବୋଦ୍ଧା | ୫୨ |

ପ୍ରଭୁ ସଙ୍ଗତେ ତର୍କବାଦ || କଲେକ ଶେଷେ ସେ ବହୁତ | ୫୩ |

ପ୍ରଭୁଙ୍କ ଭକତି ଦେଖିଲ || ଅନ୍ତର ପ୍ରଭୁର ପ୍ରେମ ଶିଳ | ୫୪ |

ଭକତି କଥା ପରସଙ୍ଗେ || ପ୍ରଭୁ ସାତ୍ତ୍ୱିକ ଭାବ ଅଙ୍ଗେ | ୫୫ |

କମ୍ପଇ ଓଠ ସ୍ୱେଦ ଅଙ୍ଗ || ବେପଥୁ ଭାବ ନୃତ୍ୟରଙ୍ଗ | ୫୬ |

ଦେଖିଣ ସାର୍ବଭୌମ ବୋଲେ || ତୁ କି ହୋ ପ୍ରଭୁ ସ୍ୱୟଂ ହେଲେ ! ୫୭ |

ଭକତି ଭାବ ମୁଁ ନ ଜାଣେ || ଶୁଷ୍କ ଅନ୍ତରେ ଯଉମାଣେ | ୫୮ |

ପ୍ରଭୁ ସଙ୍ଗତେ କାଳକ୍ଷେପି || ପ୍ରଭୁ ବୋଇଲ ତୀର୍ଥ ଯିବି | ୫୯ |

ଦକ୍ଷିଣ ଦେଶ ଯେବେ ଯିବ || ରାମରାୟ ସଙ୍ଗ ଲଭିବ | ୬୦ |

ସେ ଜାଣେ ଭକତିର ତତ୍ତ୍ୱ || ରାଗମାର୍ଗେ ତା ମହତ୍ତ | ୬୧ |

କୃଷ୍ଣ କଥା ମୁଁ ନ ଜାଣଇ || ରାମ ରାୟ ସବୁ ଜାଣଇ | ୬୨ |

ଯେବେ ଦକ୍ଷିଣ ଦେଶ ଯିବ || ରାମ ରାୟେ ଅବଶ୍ୟ ଭେଟିବ | ୬୩ |

ଗଲ ସେ ଦକ୍ଷିଣ ଭ୍ରମଣ || ମିଳିଲ ଗୋଦାବରୀ କୂଳେଣ | ୬୪ |

---

୫୧-୬୩ ବାସୁଦେବ ସାର୍ବଭୌମଙ୍କ ସହିତ ଶ୍ରୀଚୈତନ୍ୟଙ୍କର ଶାସ୍ତ୍ରାଲୋଚନା ପ୍ରସଙ୍ଗ ଏଠାରେ ବର୍ଣ୍ଣିତ । ଦୁହେଁ ବିଦ୍ୟା ବିବାଦରେ ରତ ହେଲେ; ମାତ୍ର ଭକ୍ତିତତ୍ତ୍ୱ ପ୍ରସଙ୍ଗ ଆଲୋଚନା କାଳରେ ଶ୍ରୀଚୈତନ୍ୟଙ୍କ ସାତ୍ତ୍ୱିକ ବିକାରମାନ ସାର୍ବଭୌମଙ୍କୁ ଚମତ୍କୃତ କଲା । ଚୈତନ୍ୟଙ୍କର ଭଗବତ୍ତ୍ୱ ସାର୍ବଭୌମ ସ୍ୱୀକାର କଲେ । ମାତ୍ର ଭକ୍ତିତତ୍ତ୍ୱ ସେ କିଛି ଜାଣନ୍ତି ନାହିଁ ବୋଲି କହିଲେ । ଏ ଢଗରେ ରାୟ ରାମାନନ୍ଦଙ୍କ ପାଣ୍ଡିତ୍ୟକୁ ସାର୍ବଭୌମ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଦକ୍ଷିଣକୁ ଯାଇ ରାଜମହେନ୍ଦ୍ରୀର ଶାସକ ରାୟ ରାମାନନ୍ଦଙ୍କୁ ଭେଟିବା ପାଇଁ ପରାମର୍ଶ ଦେଲେ । ଏଠାରେ ଶ୍ରୀଚୈତନ୍ୟଙ୍କର ଷଡ଼ଭୁଜ ପ୍ରଦର୍ଶନ ଓ ସାର୍ବଭୌମଙ୍କ ଉଦ୍ଧାର କରିବା ବିଷୟ ନାହିଁ । ଏହା ବୋଧହୁଏ କୃଷ୍ଣ ଦାସ କବିରାଜଙ୍କର ପରବର୍ତ୍ତୀ ସଂଯୋଜନା ।

୬୪-୮୦ ଚୈତନ୍ୟ ଗୋଦାବରୀ ନଦୀକୂଳରେ ପହଞ୍ଚିଲେ । ସାର୍ବଭୌମଙ୍କ ପରାମର୍ଶ

ସ୍ନାନ ଶଉଚ ହୋଇଅଛୁ ॥ ବୃକ୍ଷ ମୂଳେ ଆସନ ପାରିଛୁ ।୬୫।
ସ୍ୱଭାବେ ଗଉର ତା କାନ୍ତି ॥ ବାଳସୂର୍ଯ୍ୟଙ୍କୁ ଆଣେ ଭ୍ରାନ୍ତି ।୬୬।
ସୁବର୍ଣ୍ଣେ ନିର୍ମିଲ ପରି ॥ ଦିଶଇ ଅଙ୍ଗ ତାର ଗୋରି ।୬୭।
ବାହୁ ଲମ୍ବଇ ଜାନୁ ପରି ॥ ଆୟତ ଲୋଚନ ଉଗ୍ରଣ ।୬୮।
ବ୍ରହ୍ମତେଜ ଯେ ସ୍ଫୁଟଇ ॥ ଅଧରୁ ମଧୁହାସ ସ୍ଫୁରଇ ।୬୯।
ଏକାଳେ ରାମରାୟ ଚଳେ ॥ ନଦୀ ଘାଟରେ ଅଙ୍ଗ ମାଜେ ।୭୦।
ସଙ୍ଗତେ ପରିବାର ଜନ ॥ ବାଜଇ ଢମକ ନିଶାଣ ।୭୧।
ଘାଟରୁ ଉଠେ ରାମରାୟ ॥ ହାନ୍ଦୋଳାରେ ବସେକ ରାୟ ।୭୨।
ବୃକ୍ଷ ମୂଳରୁ ଉଠି ଧାଇଁ ॥ ଚୈତନ୍ୟ ଆସିଣ ମିଳଇ ।୭୩।
ତୁମେ କି ଅଟ ରାମରାୟ ॥ ଦିଶୁଅଛ ରାଜା ପରାୟ ।୭୪।
ତକ୍ଷଣେ ଦୁହେଁ କୋଳ ହେଲେ ॥ ମେଘେ ବିଦ୍ୟୁତ କି ମିଶିଲେ ।୭୫।
ତୁମରେ ଆସି ମୁଁ ମିଳିଲି ॥ ଭାଗ୍ୟକୁ ମୋହର ଦେଖିଲି ।୭୬।
ରାମରାୟ ଯେ ବୋଲେ ତବେ ॥ ଅସ ହୋ ମୋହର ସମୀପେ ।୭୭।
ଅତିଥି ହୋଇ ଏଠେ ରହ ॥ କରିବା ଶାସ୍ତ୍ର ପରିଚୟ ।୭୮।
ଭାଗ୍ୟକୁ ମୋହର ଅଇଲ ॥ ସାଧୁର ସଙ୍ଗ ମୋତେ ଦେଲ ।୭୯।
ଦୁହେଁ ଆଳାପେ ରତ ହେଲେ ॥ ଦଶଦିନ କାଳ ଯାପିଲେ ।୮୦।
ପଦ୍ମରେ ରୋଚ ନାନା ଅର୍ଥ ॥ ରାମରାୟ କହେ ଉଦନ୍ତ ।୮୧।

---

ଅନୁସାରେ ରାୟ ରାମାନନ୍ଦଙ୍କ ସାକ୍ଷାତ କରି ଭକ୍ତିତତ୍ତ୍ୱ ଶିକ୍ଷା କରିବା ତାଙ୍କର ଉଦ୍ଦେଶ୍ୟ । ଚୈତନ୍ୟ ନିତ୍ୟକର୍ମମାନ ଶେଷକରି ବୃକ୍ଷ ମୂଳରେ ଆସନ ପକାଇ ବସିଛନ୍ତି । ତାଙ୍କର କନକ-ଗୌରକାନ୍ତି ବାଳସୂର୍ଯ୍ୟର ଭ୍ରାନ୍ତି ସୃଷ୍ଟି କରୁଛି । ଆଜାନୁଲମ୍ବିତ ବାହୁ ଓ ଆୟତ ଲୋଚନ ଦର୍ଶକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସର୍ବାଙ୍ଗରୁ ବ୍ରହ୍ମତେଜ ବିଚ୍ଛୁରିତ ହେଉଛି ଏବଂ ଅଧରରୁ ମଧୁହାସ ସ୍ଫୁରୁଛି । ଏହି ସମୟରେ ରାୟ ରାମାନନ୍ଦ ଗୋଦାବରୀ ଘାଟ ସ୍ନାନ କରିବା ଲାଗି ଦଳବଳେ ହାନ୍ଦୋଳାରେ ବିଜେକଲେ । ସ୍ନାନ ସାରି ସେ ହାନ୍ଦୋଳାକୁ ଯାଉଛନ୍ତି—ଏହି ସମୟରେ ଚୈତନ୍ୟ ବୃକ୍ଷ ମୂଳରୁ ଉଠି ଧାଇଁଲେ । ତୁମେ ରାମାନନ୍ଦ ରାୟ ? ଏହି ପ୍ରଶ୍ନ ପରେ ଦୁହେଁ ପରସ୍ପରକୁ ଆଲିଙ୍ଗନ କଲେ । ଉଭୟେ ଉଭୟଙ୍କ ସାକ୍ଷାତ ଲାଭ କରିଥିବାରୁ ନିଜ ନିଜ ଭାଗ୍ୟକୁ ପ୍ରଶଂସା କଲେ । ଆତିଥ୍ୟ ଗ୍ରହଣ କରିବା ପାଇଁ ଚୈତନ୍ୟ ସମ୍ମତ ହେଲେ । ରାମାନନ୍ଦ କହିଲେ—ତୁମେ ଏଠାରେ ମୋର ଅତିଥି ହୋଇ ରହ, ତୁମକୁ ଶାସ୍ତ୍ର ସହିତ ପରିଚୟ କରାଇବ । ଏ ଶାସ୍ତ୍ର ହେଉଛି ବୈଷ୍ଣବ ରସଶାସ୍ତ୍ର ଓ ଭକ୍ତିତତ୍ତ୍ୱ ।

୮୧-୮୬ ପଦ ଏଠାରେ ରାୟ ରାମାନନ୍ଦ-ଚୈତନ୍ୟ ମିଳନର ତତ୍ତ୍ୱମାନ ସଂକ୍ଷେପରେ

ଭକ୍ତ ମାର୍ଗର ଯେ ବିଧି || ରାଗ ମାର୍ଗର ଯେ ଅବଧି ।୮୨।
ବହୁତ ତତ୍ତ୍ୱ ବଖାଣିଲେ || ବହୁତ ସମାଧାନ ଦେଲେ ।୮୩।
ଗୋପୀ ଭକ୍ତ ଭାବ ଯେତେ || ଭାଗବତର ଶ୍ଳୋକ ଅର୍ଥେ ।୮୪।
ସାଧ୍ୟ ସେ ନିରୂପଣ କଲେ || ଭଜନ ଉପାୟ ବାଛିଲେ ।୮୫।
ବ୍ରହ୍ମସଂହିତା କର୍ଣ୍ଣାମୃତ || ଜୟଦେବ ଗୀତଗୋବିନ୍ଦ ।୮୬।
ରାଗ ମାର୍ଗର ଭାବ ଯେତେ || ସବୁ ସେ ବୋଇଲେ ଭଣିତେ ।୮୭।
ଭକତ ଭାବ ସର୍ବସ୍ପର୍ଶୀ || କହିଲେ ପ୍ରେମ ପରଶଂସି ।୮୮।
ପ୍ରେମ ହିଁ ଅଟେ ପୁରୁଷାର୍ଥ || ଭକ୍ତ ମାର୍ଗର ପର୍ଯ୍ୟନ୍ତ ।୮୯।
ରାୟ କହିଲେ କାନ୍ତାପ୍ରେମ || ଭଜନ ମାର୍ଗ ଏ ଉତ୍ତମ ।୯୦।
କାନ୍ତାଭାବେଣ କୃଷ୍ଣଭଜ || ସାଧନ ମାର୍ଗର ଏ ଶେଷ ।୯୧।
ତଥାପି ଗୋରା ନ ବୁଝିଲେ || ଆଗେ ବାଟ କହ ବୋଇଲେ ।୯୨।
ଶେଷେ ରାମରାୟ ଭଣଇ || ରାଧା ପ୍ରେମ ସାଧ୍ୟ ଅଟଇ ।୯୩।
ମଧୁର ରାଧାର ଯେ ଭାବ || ରାୟ କହିଲେକ ସରବ ।୯୪।
କୃଷ୍ଣ ଶକ୍ତି ଅଟଇ ତିନ || ସନ୍ଧିନୀ ସମ୍ବିନ୍ନୀ ହ୍ଲାଦିନୀ ।୯୫।
ହ୍ଲାଦିନୀ ଅଟଇ କୃଷ୍ଣର || ସ୍ୱରୂପ ଶକ୍ତି ଏ ବେଭାର ।୯୬।
ହ୍ଲାଦିନୀ ଆନନ୍ଦ ଅଟଇ || କୃଷ୍ଣଙ୍କୁ ଆନନ୍ଦ ଦିଅଇ ।୯୭।
ହ୍ଲାଦିନୀ ଶକ୍ତିଟି ରାଧିକା || ପ୍ରେମରେ ହୋଇଅଛି ନିଶଙ୍କା ।୯୮।

---

ବର୍ଣ୍ଣନା କରିଛନ୍ତି । ରାୟ ରାମାନନ୍ଦଙ୍କ ପକ୍ଷରେ ତତ୍ତ୍ୱ ବିଶ୍ଳେଷଣରେ ପ୍ରଧାନ ଅବଲମ୍ବନ ଥିଲା ଭାଗବତ, ବ୍ରହ୍ମସଂହିତା, କୃଷ୍ଣକର୍ଣ୍ଣାମୃତ ଓ ଗୀତଗୋବିନ୍ଦ । ଦଶଦିନ କାଳ ଉଭୟଙ୍କ ମଧ୍ୟରେ ଚର୍ଚ୍ଚା ଚାଲିଲା । ରାମାନନ୍ଦ ଅନେକ ବିଷୟ କହିଲେ । ସେ ସବୁ ପରେ ବୈଷ୍ଣବ ଭକ୍ତିତତ୍ତ୍ୱ ଓ ରସତତ୍ତ୍ୱର ମୂଳଭିତ୍ତି ରୂପେ ପରିଗଣିତ ହୋଇଛି ଏବଂ ଷଡ଼୍‌ ଗୋସ୍ୱାମୀ ଓ କୃଷ୍ଣଦାସ କବିରାଜ ଏହି ତତ୍ତ୍ୱ ଗୁଡ଼ିକୁ ଭିତ୍ତି କରି ପରେ ବୃନ୍ଦାବନରେ ବସି ବିଶାଳ ବୈଷ୍ଣବ ଶାସ୍ତ୍ରର ସୁରମ୍ୟ ପ୍ରାସାଦ ନିର୍ମାଣ କରିଅଛନ୍ତି ।

୮୭-୯୨ ରାଗମାର୍ଗର ସକଳ ତତ୍ତ୍ୱ ରାମାନନ୍ଦ ବ୍ୟାଖ୍ୟାନ କଲେ । ପ୍ରେମକୁ ପୁରୁଷାର୍ଥ ରୂପେ ପ୍ରତିପାଦନ କରି ଏହା ଭକ୍ତି ମାର୍ଗର ଶେଷକଥା ବୋଲି ପ୍ରକାଶ କଲେ । କାନ୍ତାପ୍ରେମକୁ କୃଷ୍ଣଭଜନର ସର୍ବଶ୍ରେଷ୍ଠ ସାଧନ ବୋଲି କହିଲେ । ତଥାପି ଚୈତନ୍ୟ ନ ବୁଝିଲା ପରି ରହିଲେ ଏବଂ ଆଗେ ବାଟ କହ ବୋଲି ଅନୁରୋଧ କଲେ ।

୯୩-୧୦୫ ରାଧାର ପ୍ରେମକୁ ଶ୍ରେଷ୍ଠ ସାଧ୍ୟ ବୋଲି ପ୍ରକାଶ କଲେ । ରାଧା ଭାବର ମାଧୁର୍ଯ୍ୟ ନାନା ଭାବରେ ବିଶ୍ଳେଷଣ କଲେ । କୃଷ୍ଣଙ୍କର ତ୍ରିବିଧ ଶକ୍ତି-ସନ୍ଧିନୀ, ସମ୍ବିନ୍ନୀ ଓ

ଆନନ୍ଦ ଆହ୍ଲାଦିନୀ ରାଧା || କୃଷ୍ଣଙ୍କର ମୋହକ ସର୍ବଦା | ୯୯ |
ଆହ୍ଲାଦିନୀର ସାର ପ୍ରେମ || କୃଷ୍ଣ ଅଟନ୍ତି ଜୀବନ | ୧୦୦ |
ସକଳ କାନ୍ତା ଶିରୋମଣି || ମହାଭାବର ସ୍ୱରୂପିଣୀ | ୧୦୧ |
କୃଷ୍ଣ ତା ଭିତରେ ବାହାରେ || କୃଷ୍ଣ ଦେଖଇ ସକଳରେ | ୧୦୨ |
ମହାଭାବ ଅଟଇ ଦୁଇ || ରୂଢ଼ ଅଧିରୂଢ଼ ବୋଲଇ | ୧୦୩ |
ଅଧିରୂଢ଼ ମହାଭାବର || ଚରମ ମାଦନ ବେଭାର | ୧୦୪ |
ରାଧା ଅଟଇଟି ମାଦନ || ମହାଭାବ ଏ ନିରୂପଣ | ୧୦୫ |
ମହାଭାବ ଏ ଚିନ୍ତାମଣି || ରାଧାର ସ୍ୱରୂପ ବଖାଣି | ୧୦୬ |
ଏକ ସେ ଲୀଳା ବେଳଭାଗ || ରାଧାର ଭାବ ଅନ୍ତରଙ୍ଗ | ୧୦୭ |
ରାଧାଭାବେ ଅନୁଗତ ହୋଇ || ଅବଶ୍ୟ କୃଷ୍ଣ ସେହୁ ପାଇ | ୧୦୮ |
ତା ତତ୍ତ୍ୱ ନାହିଁ ଅନ୍ୟ ବାଟ || ଏହୁଟି ଶାସ୍ତ୍ରର ପ୍ରକଟ | ୧୦୯ |
କୃଷ୍ଣ ବିରହେ ରାଧା ଝୁରେ || ଚକ୍ଷୁରୁ ଲୋତକ ସେ ଝରେ | ୧୧୦ |
ଗୋବିନ୍ଦ ବିରହର ବାଧା || ତା ତତ୍ତ୍ୱ ନାହିଁ ଅନ୍ୟ ପନ୍ଥା | ୧୧୧ |
ଯେ ଭାବେ ଯେ କୃଷ୍ଣ ଭଜଇ || ଅବଶ୍ୟ କୃଷ୍ଣ ସେ ଲଭଇ | ୧୧୨ |
କହିଲି ଏ ପରମତତ୍ତ୍ୱ || ଭଜନ ମାର୍ଗର ପର୍ଯ୍ୟନ୍ତ | ୧୧୩ |
ଆଉ କି ଅଛି ତୋର ଶଙ୍କା || ପଚାର ହୋଇଣ ନିଶଙ୍କା | ୧୧୪ |
ତୁମେ କି ଅଟ ସ୍ୱୟଂ ପ୍ରଭୁ || ମୋ ଚିତ୍ତ ଆସିଣ ନବାଡୁ | ୧୧୫ |
ତୁ ଅଟ ରାଧା ଅବତାର || ସ୍ୱରୂପ ଆସ୍ୱାଦ ତୋହର | ୧୧୬ |
ପ୍ରଭୁ ବୋଲନ୍ତି କହ କହ || ରାଧାର ଭାବ ଯେ ଦୁସହ | ୧୧୭ |
ଶୁଣିବ ତୋର ମୁଖୁ ମୁହିଁ || ସଂଶୟ ଖଣ୍ଡିବ ତତୋଇ | ୧୧୮ |
ରାମରାୟ ସେ ଶ୍ଲୋକ ପଢ଼େ || ପହିଲହି ରାଗନୟନ ଭଙ୍ଗଭେଳେ | ୧୧୯ |
କମ୍ପିଲା ପ୍ରଭୁର ସର୍ବାଙ୍ଗ || ଲୋତକେ ଭିଜାଇଣ ବକ୍ଷ | ୧୨୦ |
ବେପଥୁ ଭାବେ ଅଙ୍ଗରାଗ || କଦମ୍ବ କେଶର ପ୍ରାୟେକ | ୧୨୧ |
ରାମରାୟ ମୁଖେ ହାତ ଦେଇ || ବୋଇଲେ ହେଉହେଲ କହ | ୧୨୨ |
ରାୟଙ୍କୁ ଆଲିଙ୍ଗନ କଲ || ତାଳେ ସେ ସାଷ୍ଟାମ ହୋଇଲ | ୧୨୩ |
କହିଲ ସେ ପରମ ତତ୍ତ୍ୱ || ଖଣ୍ଡିଲ ସଂଶୟ ଅଶେଷ | ୧୨୪ |

---

ହ୍ଲାଦିନୀ । ହ୍ଲାଦିନୀ କୃଷ୍ଣଙ୍କର ସ୍ୱରୂପ ଶକ୍ତି । ହ୍ଲାଦିନୀ ଶକ୍ତି ଆନନ୍ଦମୟୀ । ଶ୍ରୀରାଧା ହିଁ ଏହି ହ୍ଲାଦିନୀ ଶକ୍ତିର ନାମାନ୍ତର । ହ୍ଲାଦିନୀ ଶକ୍ତି ବଳରେ ରାଧା ମହାଭାବମୟୀ । ମହାଭାବ ପୁଣି ଦ୍ୱିବିଧ-ରୂଢ଼ ଓ ଅଧିରୂଢ଼ । ଅଧିରୂଢ଼ ମହାଭାବ ମାଦନାଖ୍ୟ । ଶ୍ରୀରାଧା ହିଁ ଏହି ମାଦନାଖ୍ୟ ମହାଭାବ ।

୧୦୭-୧୧୯ ରାଧା ଭାବରେ କୃଷ୍ଣ ଭଜନକୁ ରାୟ ରାମାନନ୍ଦ ସର୍ବଶ୍ରେଷ୍ଠ ଭଜନ ମାର୍ଗ ବୋଲି ନିରୂପଣ କଲେ । ତଥାପି ଆଉ କିଛି ସଂଶୟ ଥାଇପାରେ ବୋଲି ପ୍ରଶ୍ନ

ପ୍ରଭୁ ବୋଇଲେ ତୁ ମୋ ଗୁରୁ ॥ ଶିଖିଲି ତତ୍ତ୍ୱ ତୋ ମୁଖରୁ ।୧୨୫।
ଗୁରୁ ପରାଏ ପୁରୁଥିବ ॥ କ୍ଷଣେ ମନରୁ ନ ଛାଡ଼ିବ ।୧୨୬।
ରାୟ ବୋଇଲେ ଶୂଦ୍ରାଧମ ॥ ମୁ ଛାର ଶାସ୍ତ୍ରର ପ୍ରମାଣ ।୧୨୭।
ଗୁରୁ ପଣରେ ଗଣ ଭାବି ॥ ଅଧମ ମୁହିଁ କି ଅଟଇ ।୧୨୮।
ପ୍ରଭୁ ବୋଇଲେ ଶିକ୍ଷା ଦେଲ ॥ ଦୁର୍ଲଭ ତତ୍ତ୍ୱ ଉପଦେଶିଲ ।୧୨୯।
ତୁମର ମହିମା ଶୁଣିଲି ॥ ତୁମରଠାକୁ ଯେ ଅଇଲି ।୧୩୦।
ପ୍ରତ୍ୟକ୍ଷ କଲି ସର୍ବ ତତ୍ତ୍ୱ ॥ ପ୍ରେମଧନ ଯେ ରସାବର୍ତ୍ତ ।୧୩୧।
ହ୍ଲାଦିନୀ ଶକ୍ତିର ଯେ କଥା ॥ ଏ ମାନ କାହିଁ କି ମିଳନ୍ତା ।୧୩୨।
ଗୁରୁ ମୋର ହେଲ ଆଜହିଁ ॥ ଦ୍ୱିଜରେ ଶୂଦ୍ର ଭ୍ରମ ଉପୁଜଇ ।୧୩୩।
ଏମନ୍ତେ ଦଣ୍ଡବତ କଲେ ॥ ତଦନ୍ତେ ଦକ୍ଷିଣ ଗମିଲେ ।୧୩୪।

---

କରିବାକୁ କହିଲେ ଏବଂ ତତ୍ ସହିତ କହିଲେ—ତୁମେ ହିଁ ସ୍ୱୟଂ ପ୍ରଭୁ । ତୁମେ ହେଉଛ ରାଧା-ଅବତାର ଏବଂ ସ୍ୱରୂପ ଆସ୍ୱାଦନ କରିବା ତୁମର ମୂଳ ଅଭିପ୍ରାୟ । ଚୈତନ୍ୟ ତାପରେ କାତର ଭାବରେ ପ୍ରଶ୍ନ କଲେ - ରାଧାର କୃଷ୍ଣ ବିରହ ବ୍ୟଥା ସମ୍ପର୍କରେ ହିଁ କହ । ତାହା ମୋ ପକ୍ଷରେ ଦୁଃସହ ହେଲେ ମଧ୍ୟ ମୁଁ ତାହା ହିଁ ତୁମଠାରୁ ଶୁଣିବାକୁ ଚାହୁଁଛି । ତାପରେ ରାମାନନ୍ଦ ତାଙ୍କର ରଚିତ ପଦ "ପହିଲହି ରାଗ ନୟନ ଭଙ୍ଗ ଭେଲ" ଇତ୍ୟାଦି ଗାନ କଲେ । ଏଥିରେ ଚୈତନ୍ୟ ଏତେଦୂର ତନ୍ମୟ ହୋଇପଡ଼ିଲେ ଯେ, ତାଙ୍କର ଦେହରେ ସାତ୍ତ୍ୱିକ ଭାବମାନ ଦେଖାଗଲା—କଦମ୍ବ କେଶର ପରି ତାଙ୍କର ଲୋମମାନ ଟାଙ୍କୁରି ଉଠିଲା । ରାମାନନ୍ଦଙ୍କ ମୁଖରେ ହାତଦେଇ ଆଉ ଅଧିକ ଅଗ୍ରସର ନ ହେବା ପାଇଁ ଅନୁରୋଧ କଲେ ଏବଂ ବ୍ୟାକୁଳ ଭାବରେ ରାମାନନ୍ଦଙ୍କୁ କୋଳ କଲେ । କହିଲେ - ତୁମେ ମୋତେ ପରମତତ୍ତ୍ୱ କହିଲ; ମୋର ବହୁ ସଂଶୟ ଖଣ୍ଡନ କଲ । ତୁମେ ଆଜିଠାରୁ ମୋର ଗୁରୁ ହେଲ । ତୁମକୁ ମୁଁ ସର୍ବଦା ଗୁରୁ ରୂପେ ସ୍ମରଣ କରୁଥିବି । ରାୟ କହିଲେ— ମୁଁ ଶୂଦ୍ରାଧମ, ଏହି ତତ୍ତ୍ୱ ବର୍ଣ୍ଣନାରେ ମୁଁ କେବଳ ନିମିତ୍ତ ମାତ୍ର । ଏ ସମ୍ପର୍କରେ ମୁଁ ଶାସ୍ତ୍ରୀୟ ସିଦ୍ଧାନ୍ତ ହିଁ ତୁମକୁ କହିଲି । ତେଣୁ ତୁମର ଗୁରୁ ହେବାର ମୋ ପକ୍ଷରେ ଧୃଷ୍ଟତା ମାତ୍ର । ଚୈତନ୍ୟ କହିଲେ ତୁମର ମହିମା ଶୁଣି ମୁଁ ତୁମ ନିକଟକୁ ଆସିଲି । ପ୍ରେମଧନ, ରସତତ୍ତ୍ୱ, ରାଧାଭାବ, ହ୍ଲାଦିନୀ ଶକ୍ତି କଥା ମୁଁ କୌଣସିଠାରୁ ଜାଣିପାରି ନ ଥାନ୍ତି । ତୁମଠାରୁ ହିଁ ପ୍ରଥମେ ମୁଁ ଏହି ତତ୍ତ୍ୱ ଶିକ୍ଷା କଲି । ତେଣୁ ତୁମେ ଆଜିଠାରୁ ମୋର ଗୁରୁ ହେଲ । ତୁମେ ପ୍ରକୃତରେ ଜଣେ ବ୍ରାହ୍ମଣ । ତୁମର ଶୂଦ୍ରତ୍ୱ ଏକ ଭ୍ରମ ମାତ୍ର ।

୧୩୪-୧୩୫ ଚୈତନ୍ୟ ରାଜମହେନ୍ଦ୍ରୀରେ ରାମାନନ୍ଦଙ୍କ ସହିତ ଦଶଦିନ ଯାପନ କରି ଏ ସମସ୍ତ ତତ୍ତ୍ୱ ଶିକ୍ଷା କଲାପରେ ଦକ୍ଷିଣକୁ ଯାତ୍ରାକଲେ । ସେତୁବନ୍ଧ,

[ ଅଣଚାଳିଶ ]

ସେତୁବନ୍ଧ ସେ ରାମେଶ୍ୱର ॥ ଶ୍ରୀରଙ୍ଗ ଉଡ଼ୁପି ଶଙ୍କର ।୧୩୫।
ପୀଠମାନନ୍ତ କେତେ ହେଲ ॥ ପ୍ରୟାଗେ ଆସିଣ ମିଳିଲ ।୧୩୬।
ଅନେକ ତୀର୍ଥମାନ ଭ୍ରମି ॥ ହରିନାମରେ ଅନୁକ୍ରମି ।୧୩୭।
କୃଷ୍ଣକଥା ସେ ରସସାର ॥ କୀର୍ତ୍ତନ ନାମ ସେ ପ୍ରସାର ।୧୩୮।
ଆସି ହେଲ ରାଜମହେନ୍ଦ୍ରୀର ॥ ରାମରାୟଙ୍କୁ ବୋଲେ ଚଳ ।୧୩୯।
ଏଥେଟି ନରହରି କ୍ଷଣେ ॥ ରାଜକାର୍ଯ୍ୟ ତ୍ୟଜ ତକ୍ଷଣେ ।୧୪୦।
ବସିବା ନୀଳାଚଳେ ଧନ ॥ ତୋ ବିନା ବନ୍ଧୁ ଅକାରଣ ।୧୪୧।
ରାୟ ବୋଇଲ ହେଉ ହେଲ ॥ ଆଗେ ଯାଅ ବୋଲି ବୋଇଲ ।୧୪୨।
ପ୍ରଭୁ ସେ କେହ୍ନଟି ଅଇଲ ॥ ନୀଳାଚଳରେ ଆସି ହେଲ ।୧୪୩।
ରାଜାର ଊନବିଂଶ ଅଙ୍କେଣ ॥ ରାୟ ମିଳଇ ନୀଳାଚଳେଣ ।୧୪୪।
ରାଜା ବୋଇଲ ଭଲ ହେଲ ॥ ମନ୍ଦିର ଭାର ସମର୍ପିଲ ।୧୪୫।
ମନ୍ଦିର ହାନୀ ଲଭ ବୁଝ ॥ ଏଥେ ତୋହର ସିନା କାର୍ଯ୍ୟ ।୧୪୬।
ରାମରାୟ ସେ ଅଙ୍ଗୀକାର ॥ ବୁଝଇ ମନ୍ଦିର ବେଭାର ।୧୪୭।
ଶ୍ରୀଜୀବଦେବଙ୍କୁ ହକାର ॥ ତୁ ଯାଅ ରାଜମହେନ୍ଦ୍ରଦଣ୍ଡ ।୧୪୮।

---

ରାମେଶ୍ୱର, ଶ୍ରୀରଙ୍ଗନାଥ, ଉଡ଼ୁପି ପ୍ରଭୃତି ପୀଠମାନ ଅତିକ୍ରମ କରି ସେ ପ୍ରୟାଗରେ ପହଞ୍ଚିଲେ । ପ୍ରୟାଗରୁ ସେ ନୀଳାଚଳକୁ ନ ଆସି ଗଲେ ରାଜମହେନ୍ଦ୍ରୀକୁ । ଏହା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ରାମାନନ୍ଦଙ୍କୁ କହିଲେ— ବନ୍ଧୁ ! ତୁମ ବିନା ନୀଳାଚଳରେ ବାସ କରିବା ମୋ ପାଇଁ ନିଷ୍ଫଳ ମନେ ହେବ । ତେଣୁ ତୁମେ ରାଜକାର୍ଯ୍ୟ ତ୍ୟଜି ନୀଳାଚଳ ଚଳ । ସେଠାରେ ଦୁହେଁ ଏକତ୍ର ବାସ କରି କୃଷ୍ଣକଥା ଆଲୋଚନାରେ କାଳଯାପନ କରିବା । ଶାସନଗତ କାରଣରୁ ରାମାନନ୍ଦ ସେତେବେଳକୁ ଶାସକ ପଦରୁ ବିଦାୟ ନେବା ପାଇଁ ରାଜାଦେଶ ବା ଇଙ୍ଗିତ ପାଇ ସାରିଥିଲେ । ଚୈତନ୍ୟଙ୍କୁ ଆଗେ ପଠାଇ ଦେଇ ରାମାନନ୍ଦ ପରେ ଆସି ନୀଳାଚଳରେ ଉପସ୍ଥିତ ହେଲେ ।

୧୪୪ । ରାଜାଙ୍କ ଊନବିଂଶ ଅଙ୍କ = ଖ୍ରୀ: ୧୫୧୨ । ରାୟ ରାମାନନ୍ଦ ପୁରୀକୁ ଫେରି-ଆସି ମନ୍ଦିର ପ୍ରଶାସନ ଦାୟିତ୍ୱ ଗ୍ରହଣ କଲେ । ମନ୍ଦିର ହାନି ଲାଭ ବୁଝିବା କାର୍ଯ୍ୟରେ ରାଜାଙ୍କ ଦ୍ୱାରା ସେ ନିଯୁକ୍ତ ହେଲେ । ରାଜମହେନ୍ଦ୍ରୀର ଶାସକ ପଦ ଅପେକ୍ଷା ମନ୍ଦିର ପ୍ରଶାସନ ଦାୟିତ୍ୱ ବହନ କରିବା ପାଇଁ ରାମାନନ୍ଦଙ୍କ ଯୋଗ୍ୟତା ଅଧିକ ଅନୁକୂଳ ବୋଲି ଗଜପତି ଏପରି ପରିବର୍ତ୍ତିତ ଆଦେଶ ଦେଇଥିବା ଏଥିରୁ ସ୍ପଷ୍ଟ ଜଣାଯାଏ ।

୧୪୮-୧୫୬ ରାଜା ଶ୍ରୀଜୀବଦେବଙ୍କୁ ରାଜମହେନ୍ଦ୍ରୀର ଶାସକ ନିଯୁକ୍ତ କଲେ ଏବଂ ଏହି ଅବକାଶରେ 'ବାହିନୀପତି' (ଏକ ସାମରିକ ଉପାଧି—ପାଞ୍ଚ ହଜାର ସୈନ୍ୟର ଚାଳକ) ଉପାଧି ଦେଲେ । ଆଗରେ ସେ ଭକ୍ତ ଭାଗବତ ମହାକାବ୍ୟ ଓ ଭକ୍ତ

ସେଠାଇଁ ରାଜକାର୍ଯ୍ୟ ତୁଚ୍ଛ || ସଜ୍ଜନଙ୍କ ସଙ୍ଗେ ରଙ୍ଗ |୧୪୯|
ଜୀବଦେବଙ୍କୁ ପଦ ଦେଲ || ବାହୁବଳପତ୍ର ବୋଲଲ |୧୫୦|
ଜୀବଦେବ ଯେ ସାମରଥା || ଭଗତ ସବେ ମହାବୋଧା |୧୫୧|
ରାଜସ୍ୱରୁ ଯେ ଅଟଇଟି || କବି ଡିଣ୍ଡିମ ବୋଲଇଟି |୧୫୨|
ବହୁତ କାବ୍ୟ ନାଟ କଲ || କବିତା ଶକ୍ତି ପ୍ରକାଶିଲ |୧୫୩|
ରଚିଲ ଭଗତ ବୈଭବ || ଉଷାହରଣ ଯେ ରୂପକ |୧୫୪|
ଦେଖୁଥିଲେ ନାଟ ଏତୁ ହେଲ || ରାଜାର ମେଳଣି ଲଭିଲ |୧୫୫|
ରହିଲ ରାଜମହେନ୍ଦ୍ରୀରେ || ସଜ୍ଜନବଳ ଠୁଳ କରେ |୧୫୬|
ରାମରାୟ ଯେ କ୍ଷେତ୍ରେ ରହି || ସାଧୁ ବୈଷ୍ଣବେ ସମଜଇ |୧୫୭|
ରଚିଲେ ମଣ୍ଡପ ସେ ଏକ || ଉତ୍ତର ପାର୍ଶ୍ୱ ସମୀପ |୧୫୮|
ତହିଁ ବୈଷ୍ଣବେ ଗୋଷ୍ଠୀ ହେଲେ || କୃଷ୍ଣ ରସରେ ମତିଦେଲେ |୧୫୯|
ଦିନ ବଞ୍ଚିଲେ କୃଷ୍ଣ ରସେ || କହଇ ମଧବ ହରଷେ |୧୬୦|

---

ବୈଭବ ନାଟକ ରଚନା କରିଥିଲେ ଏବଂ ରାଜାଙ୍କ ଠାରୁ ଆପଣାର କୃତିତ୍ୱ ଲାଗି 'କବିଡିଣ୍ଡିମ' ଉପାଧି ଓ ଅନ୍ୟ ଉପଢୌକନ ଲାଭ କରିଥିଲେ । 'ଭକ୍ତିବୈଭବ ନାଟକ' ଓ 'ଉଷାହରଣ' ରୂପକ ଶ୍ରୀମନ୍ଦିରରେ ଅଭିନୀତ ହୋଇଥିଲା । ରାଜ-ମହେନ୍ଦ୍ରୀରେ ପଦାତି ସୈନ୍ୟ ସଙ୍ଗଠନ କରିବା ହେଲା ଜୀବଦେବଙ୍କ ପ୍ରଧାନ କାର୍ଯ୍ୟ । ଏହା ଥିଲା ଆସନ୍ନ ଯୁଦ୍ଧର ସମୟ ।

୧୫୭-୧୬୦ ରାୟ ରାମାନନ୍ଦ ପୁରୀରେ ରହି ମନ୍ଦିର ହାନି ଲାଭ ବୁଝିଲେ ଏବଂ ଆଗନ୍ତୁକ ସାଧୁ ବୈଷ୍ଣବଙ୍କର ଭଲମନ୍ଦ ବୁଝିଲେ । ମନ୍ଦିରର ଉତ୍ତର ପାର୍ଶ୍ୱରେ ସେ ଏକ ମଣ୍ଡପ ନିର୍ମାଣ କରାଇଲେ । ପୁରୀରେ ସମବେତ ପଞ୍ଚସଖା ଓ ଶ୍ରୀଚୈତନ୍ୟ ପ୍ରମୁଖ ବୈଷ୍ଣବମାନଙ୍କର ଏହି ସ୍ଥାନ ହେଲା ଏକ ମିଳନ ମଣ୍ଡପ ବା ଇଷ୍ଟ ଗୋଷ୍ଠୀର ମଣ୍ଡପ ।



# ପଞ୍ଚମ ଅଧ୍ୟାୟ

ଊନବିଂଶ ଅଙ୍କ ବିଷୟେ || ଶୁଣ ସୁଜନେ ମନ ଥୟେ । ୧ ।
ପ୍ରତାପରୁଦ୍ର ଗଜପତି || ରଥଯାତ୍ରାକୁ ବିଜେ ହୋନ୍ତି । ୨ ।
ନବୀନ ବସ୍ତୁ ଘଟ କଥା || ଶୁଣେ ରାମ ରାୟ ଠାରୁ ତା । ୩ ।
ନବୀନ ସନ୍ନ୍ୟାସୀ ଆସିଲା || ବୁଢ଼ା ଲେଙ୍କା ଯେ ବଖାଣିଲା । ୪ ।
ଚଢ଼ନ୍ତୁ ଆଣି ପଣ୍ଡି ପଢ଼େ || କୁମାର ହଟ ଆସିଥିଲେ । ୫ ।
ଅଛଇ ସେହୁ ଏହୁ ସ୍ଥାନେ || ସାରଣ ଦକ୍ଷିଣ ଭ୍ରମଣେ । ୬ ।
ରାଜା ବୋଇଲା ହେଉ ହେଲା || ଛେରା ପହଁରାକୁ ଚଳିଲା । ୭ ।
ଛେରା ପହଁରାଏ ରଥର || ଦେଖିଲେ କୀର୍ତ୍ତନ ଗୋଚର । ୮ ।
ଦେଖିଣ ଆଚମ୍ବିତ ହେଲେ || ଚୈତନ୍ୟ ରୂପେ ଭେଟ ହେଲେ । ୯ ।
ରାମ ରାୟ ଯେ ସଙ୍ଗତରେ || ଅଛଇ ପ୍ରଭୁ ନିକଟରେ । ୧୦ ।
କହ୍ନାଇ ଦାସ ଜଗନ୍ନାଥ || ବଳରାମ ଯେ ଯଶୋବନ୍ତ । ୧୧ ।
ସ୍ୱରୂପ ଅଚ୍ୟୁତ ଅନନ୍ତ || ଗଦାଧର ଯେ ଶିବାନନ୍ଦ । ୧୨ ।
ଭଇଁସି ରଘୁ ଅରକ୍ଷିତ || ସଙ୍ଗେ ତା ଅଛନ୍ତି ବହୁତ । ୧୩ ।

---

୧। ରାଜାଙ୍କ ଊନବିଂଶ ଅଙ୍କ = ଖ୍ରୀ: ୧୫୧୨ ।

୨। ୧୩ ଏହୁ ବର୍ଷ ରଥଯାତ୍ରାକୁ (ଖ୍ରୀ: ୧୫୧୨-ଜୁନ୍ ଜୁଲାଇ ମାସ) ଗଜପତି ପୁରୀରେ ପହଞ୍ଚିଥିଲେ । ଚୈତନ୍ୟଙ୍କ ସମ୍ପର୍କରେ ରାଜା ରାୟ ରାମାନନ୍ଦଙ୍କ ଠାରୁ ଆଗରୁ କିଛି ଶୁଣିଥିଲେ । ପୁରୀରେ ରାଜା ଉପସ୍ଥିତ ହେବାରୁ ବୁଢ଼ା ଲେଙ୍କା ଚୈତନ୍ୟଙ୍କ ଆଗମନ ସମ୍ପର୍କରେ ରାଜାଙ୍କୁ ସମ୍ବାଦ ଦେଲା (କର୍ତ୍ତବ୍ୟ ଦୃଷ୍ଟିରୁ) । କୁମାର ହଟ ଚୈତନ୍ୟଙ୍କ ସଂପର୍କରେ ତତ୍ତ୍ୱ (କାରଣ) ସେ ତାଙ୍କ ସମ୍ମୁଖରେ ପାଞ୍ଜି ପଢ଼ୁଲେ ଏବଂ ଚୈତନ୍ୟ ସ୍ୱୟଂ କ୍ଷେତ୍ରରେ ଅବସ୍ଥାନ କରୁଥିବା ସମ୍ବାଦ ଦେଲେ । ସେତେବେଳେ ଚୈତନ୍ୟ ଦକ୍ଷିଣ ଭ୍ରମଣ ସାରି କ୍ଷେତ୍ରରେ ପହଞ୍ଚିଥିଲେ । ରାଜା ଏହା ଶୁଣି 'ହେଉ ହେଲା' କହି ରଥ ଉପରେ ଛେରା ପହଁରା କର୍ତ୍ତବ୍ୟ ସମ୍ପାଦନ କରିବାକୁ ଗଲେ । ରଥ ଉପରୁ ରାଜା ଚୈତନ୍ୟଙ୍କର କୀର୍ତ୍ତନ ନୃତ୍ୟ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରଥ ଆଗେ ଆଗେ କୀର୍ତ୍ତନରତ ଚୈତନ୍ୟଙ୍କ ସହିତ ରାୟ ରାମାନନ୍ଦ, କହ୍ନାଇ ଖୁଣ୍ଟିଆ, ଜଗନ୍ନାଥ, ବଳରାମ, . ଯଶୋବନ୍ତ, ସ୍ୱରୂପ ଦାମୋଦର, ଅଚ୍ୟୁତାନନ୍ଦ, ଅନନ୍ତ, ଗଦାଧର ପଣ୍ଡିତ, ଶିବାନନ୍ଦ ସେନ, ଭଇଁସି ଦାସ, ରଘୁ ଅରକ୍ଷିତ ଦାସ ଓ ଅନ୍ୟ ଅନେକ ବିଶିଷ୍ଟ ବ୍ୟକ୍ତି ଥିଲେ ।

ରଜା ଗୋରଙ୍କୁ ସମ୍ଭାଷିଲେ || କୀର୍ତ୍ତନ ଦେଖି ତୋଷ ହେଲେ ।୧୪।
ବୋଇଲେ ଏ ଭଲ ବେଶ୍ୱର || ହରି ନାମ ଯେ ଏହୁ ସାର ।୧୫।
କୀର୍ତ୍ତନ ଏଥେ କରୁଥିବ || ଏ ତହୁଁ ଆନ ନ କରିବ ।୧୬।
ଚୈତନ୍ୟ ବୋଇଲେ ହେ ନୃପ || ତୁମ୍ଭେ ଜଗନ୍ନାଥ ସେବକ ।୧୭।
ଏ ତହୁଁ ବଡ଼ କଥା ନାହିଁ || ଦେଖିଣ ଧନ୍ୟ ହେଲି ମୁହିଁ ।୧୮।
ରାୟଙ୍କୁ ନୃପ ବରଗିଲେ || ମଠର କଥା ବୁଝି ଭଲେ ।୧୯।
କାଶୀ ମିଶ୍ରକଇ ହକାଶ || ଚୈତନ୍ୟେ ରଖ ଯତ୍ନ କରି ।୨୦।
ନୃପ ଯେ ଏହା ଆଦେଶିଲେ || କାଶୀ ମିଶ୍ର ପୂରେ ରହାଇଲେ ।୨୧।
ମଠର ନିକଟ ଏ ସ୍ଥାନ || ଯତ ଉପଯୁକ୍ତ ବିଶ୍ରାମ ।୨୨।
ରାଧାର ଭାବ ଆସ୍ୱାଦନେ || ଜନ୍ମ ହୋଇଲେ ମର୍ତ୍ତ୍ୟ ଧାମେ ।୨୩।
କଟିରେ ମେଖଳା ଏ ବାନ୍ଧେ || ସଙ୍ଖ୍ୟକୁ ଗଣ୍ଠି ଅଲେ ଛନ୍ଦେ ।୨୪।
ନିତ୍ୟ ଲକ୍ଷେ ନାମ ଜପଇ || ପ୍ରହରୁ କୀର୍ତ୍ତନ କରଇ ।୨୫।
ସୁଖେ ବଞ୍ଚଇ କୃଷ୍ଣ ରସେ || ଘରର ପାରୁଶ ମଣ୍ଡପେ ।୨୬।

---

୧୪-୨୨ ରଜା ରଥ ଉପରୁ ଶ୍ରୀଚୈତନ୍ୟଙ୍କର କୀର୍ତ୍ତନ ଦେଖି ସନ୍ତୋଷ ପ୍ରକାଶ କଲେ । ରଜା ଚୈତନ୍ୟଙ୍କ ସହିତ ସମ୍ଭାଷଣ କଲେ ଏବଂ କୁଶଳ ପ୍ରଶ୍ନ ଜିଜ୍ଞାସା କଲେ, ଏଠାରେ କୀର୍ତ୍ତନ କରୁଥିବ ବୋଲି କହିଲେ । ଚୈତନ୍ୟ କହିଲେ— ହେ ରଜା, ତୁମେ ଜଗନ୍ନାଥଙ୍କର ସେବକ । ଏହାଠାରୁ କେଉଁ ବଡ଼ କଥା ଆଉ କିଛି ନାହିଁ । ମୁଁ ତୁମର ସେବାକାର୍ଯ୍ୟ ଦେଖି ଧନ୍ୟ ହେଲି । ରଜା ମଧ୍ୟ ସେବକ ହୋଇପାରେ, ଏହାହିଁ ଚୈତନ୍ୟଙ୍କର ଅଭିପ୍ରାୟ ହେବାର କାରଣ । ରାୟ ରାମାନନ୍ଦଙ୍କୁ ରଜା ଚୈତନ୍ୟଙ୍କର ଭଲମନ୍ଦ ବୁଝିବା ପାଇଁ ଆଦେଶ ଦେଲେ । କାଶୀ ମିଶ୍ରଙ୍କୁ ଡକାଇ ଚୈତନ୍ୟଙ୍କୁ ଯତ୍ନର ସହିତ ରଖାଇବା ପାଇଁ କହିଲେ । ରଜାଙ୍କ ଆଦେଶ ଅନୁସାରେ କାଶୀ ମିଶ୍ରଙ୍କ ଘରେ ଚୈତନ୍ୟଙ୍କର ସୁଖାବସ୍ଥାନ ଲାଗି ବ୍ୟବସ୍ଥା କରାଗଲା । ଶ୍ରୀମନ୍ଦିରର ନିକଟବର୍ତ୍ତୀ ସ୍ଥାନ ହୋଇଥିବା ହେତୁ ଏହା ଚୈତନ୍ୟଙ୍କ ପାଇଁ ଉପଯୁକ୍ତ ସ୍ଥାନ ବୋଲି ଏହି ବ୍ୟବସ୍ଥା କରାଗଲା ।

୨୩-୨୬ ଶ୍ରୀଚୈତନ୍ୟ ଯେ ରାଧା-ଅବତାର— ଏହା ସେତେବେଳେ ଲୋକମାନଙ୍କରେ ପ୍ରଚଳିତ ମତ ରୂପେ ସ୍ୱୀକୃତ ହୋଇଥିଲା । ଗୋଦାବରୀ ନଦୀକୂଳରେ ରାମାନନ୍ଦ-ଚୈତନ୍ୟ ମିଳନ ବେଳେ ରାମାନନ୍ଦ ଏହା ପ୍ରଥମେ ପ୍ରକାଶ କରିଥିଲେ । ଚୈତନ୍ୟଙ୍କ ଜନ୍ମ "ଦୁଷ୍ଟ ନିବାରଣ, ଜଗତ ଉଦ୍ଧାରଣ" ଲାଗି ନୁହେଁ, ବରଂ ନିଜ ଭାବ ଆସ୍ୱାଦନ ଲାଗି ତାଙ୍କର ଜନ୍ମ । ଏହାହିଁ ଚୈତନ୍ୟ-ଅବତାର ସମ୍ପର୍କରେ ନୀଳାଚଳର ମତ । ଚୈତନ୍ୟ କଟିରେ ମେଖଳା ବାନ୍ଧିଥିଲେ ଏବଂ ସେଥିରେ ଗଣ୍ଠି ମାନ ପକାଇ ପକ ଯୁଣ ଛନ୍ଦୁଥିଲେ ।

ଏଥି ଅନ୍ତରେ ଶୁଣ ଜନେ ॥ ଚୈତନ୍ୟ ବୋଲେ କିଛୁଦିନେ ।୨୭।
ଯିବି ମୁଁ ଏଥି ଉତ୍ତରକୁ ॥ ଲେଉଟି ଆସିବି କ୍ଷେତ୍ରକୁ ।୨୮।
ରାୟ ଯେ ତାହା ସଙ୍ଗେ ଗଲା ॥ କଟକେ ଗ୍ରହଣ ଅଇଲା ।୨୯।
ରେମୁଣା କଟକେଣ ହୋଇ ॥ ଚୈତନ୍ୟ ରାମକେଳି ଯାଇ ।୩୦।
ରୂପ ସନାତନଙ୍କୁ ଭେଟିଲା ॥ ରାଜକାର୍ଯ୍ୟ ସେ ଛଡ଼ାଇଲା ।୩୧।
ତୁମେ ଦୁଇ ଭାଇ ପଣ୍ଡିତ ॥ କୃଷ୍ଣରସକୁ ଯୋଗ୍ୟ ପାତ୍ର ।୩୨।
ସେଠାରୁ ଲେଉଟି ଅଇଲେ ॥ କ୍ଷେତ୍ରରେ ଆସିଣ ହୋଇଲେ ।୩୩।
ସକଳେ ହେଲେକ ସନ୍ତୋଷ ॥ ରାମ ରାୟ ଯେ କାଶୀ ମିଶ୍ର ।୩୪।
ଏ ଉତ୍ତୁଁ କିଛି ଦିନ ଅନ୍ତେ ॥ ପ୍ରୟାଗ ଯିବାକୁ ଉଦ୍ୟତେ ।୩୫।
ଅରଣ୍ୟ ବାଟରେ ସେ ଗଲେ ॥ ପ୍ରୟାଗେ ଯାଇଣ ମିଳିଲେ ।୩୬।
ରୂପକୁ ଭେଟିଲେ ସେ ସ୍ଥାନେ ॥ ବିଶ୍ରାମ କଲେ ଦଶ ଦିନେ ।୩୭।
ବୋଇଲେ ରୂପକୁ ତୁ ଆସ ॥ ନୀଳାଚଳରେ ପରକାଶ ।୩୮।
ଚୈତନ୍ୟ ଲେଉଟି ଅଇଲେ ॥ ନୀଳାଚଳରେ ଆସି ହେଲେ ।୩୯।
ରୂପ ଅଇଲେ ଦିନାନ୍ତରେ ॥ ରେମୁଣା ଭଦ୍ରକ ମାର୍ଗରେ ।୪୦।
ନୀଳାଚଳରେ ରୂପ ରହେ ॥ କୃଷ୍ଣବର୍ଣ୍ଣି ନାଟକାସ୍ତେ ।୪୧।
ଶାସ୍ତ୍ରରେ ତାର ଅନୁରାଗ ॥ ସାଧୁ ବୈଷ୍ଣବରେ ସରାଗ ।୪୨।

---

ଏହା ଦ୍ୱାରା ନାମଜପ ସମୟରେ ଗଣନା କାର୍ଯ୍ୟ ସମ୍ପନ୍ନ ହେଉଥିଲା। ସେ ପ୍ରତିଦିନ ଏକ ଲକ୍ଷ ନାମ ଜପ କରୁଥିଲେ ଏବଂ ପ୍ରଭାତରୁ କୀର୍ତ୍ତନ କରୁଥିଲେ। କୃଷ୍ଣ ସ୍ମରଣରେ ତାଙ୍କର ଦିନମାନ କଟୁଥିଲା। ଦେଉଳ ପାର୍ଶ୍ୱସ୍ଥ ମଣ୍ଡପରେ ଅନେକ ସମୟରେ ବସି ସେ ନାମ ଜପ କରୁଥିବା ଏଠାରେ ବର୍ଣ୍ଣିତ।

୨୭-୪୨ ଚୈତନ୍ୟ ତୀର୍ଥାଟନରୁ ଫେରିବାର କିଛିଦିନ ପରେ ଉତ୍ତରକୁ ଯିବାର ପ୍ରସ୍ତାବ କଲେ। ରାୟ ରାମାନନ୍ଦ ଚୈତନ୍ୟଙ୍କୁ ନେଇ କଟକ ପର୍ଯ୍ୟନ୍ତ ଗଲେ ଏବଂ ସେଠାରେ ତାଙ୍କୁ ବିଦାୟ ଦେଲେ। ଚୈତନ୍ୟ ରେମୁଣା ମାର୍ଗରେ ଗଉଡ଼ର ରାମକେଳିରେ ଉପସ୍ଥିତ ହେଲେ। ଏଠାରେ ରୂପ-ସନାତନ ଦୁଇ ଭାଇଙ୍କୁ ଭେଟିଲେ। ସେମାନଙ୍କୁ ରାଜକାର୍ଯ୍ୟ ଛାଡ଼ି ବୈଷ୍ଣବ ଦୀକ୍ଷା ନେବା ପାଇଁ ପରାମର୍ଶ ଦେଲେ। ଚୈତନ୍ୟ ରାମକେଳିରୁ ପ୍ରତ୍ୟାବର୍ତ୍ତନ କରି ନୀଳାଚଳରେ ଉପସ୍ଥିତ ହେଲେ। ରାମ ରାୟ, କାଶୀ ମିଶ୍ର ପ୍ରମୁଖ ଚୈତନ୍ୟଙ୍କ ପ୍ରତ୍ୟାବର୍ତ୍ତନରେ ଆନନ୍ଦିତ ହେଲେ। ଏହାର କିଛି ଦିନ ପରେ ଚୈତନ୍ୟ ପ୍ରୟାଗ ଯିବା ପାଇଁ ଉଦ୍ୟତ ହେଲେ। ଏଥର ସେ ଅରଣ୍ୟ ମାର୍ଗରେ ଗତି କରି ପ୍ରୟାଗରେ ପହଞ୍ଚିଲେ। ସେଠାରେ ସେ ରୂପଙ୍କୁ ଭେଟିଲେ ଏବଂ ନୀଳାଚଳକୁ ଆସିବା ପାଇଁ ପରାମର୍ଶ ଦେଇ ଫେରିଲେ। ରୂପ କେତେଦିନ ପରେ ରେମୁଣା-ଭଦ୍ରଖ ମାର୍ଗରେ ଆସି ପୁରୀରେ ଉପସ୍ଥିତ ହେଲେ।

ଚୈତନ୍ୟ ନେଲେ ସ୍ୱରୂପ ପାଶେ || ବୋଇଲେ ରୂପ ଏ ପ୍ରକାଶେ । ୪୩ ।
ଏହାଙ୍କୁ ତତ୍ତ୍ୱ ଶିକ୍ଷା ଦିଅ || ରସର ମର୍ମ ଗତି ବତାଅ । ୪୪ ।
ସ୍ୱରୂପ ରୂପଙ୍କୁ ସମ୍ଭାଷିଲେ || ରସ ତତ୍ତ୍ୱ ଯେ ଶିକ୍ଷା ଦେଲେ । ୪୫ ।
ଶାନ୍ତ ସଖ୍ୟ ଯେ ବାତ୍ସଲ୍ୟ || ଦାସ୍ୟ ମଧୁର ଭାବ ଶୋବଲ୍ୟ । ୪୬ ।
ମୋଟ୍ଟାୟିତ କିଳକିଞ୍ଚିତ || ଆଉ ଯେତେ ଯେତେକ ତତ୍ତ୍ୱ । ୪୭ ।
ଗମ୍ଭୀର ଏ ପରମ ତତ୍ତ୍ୱ || ଲୋକରେ ଏହା ଅପ୍ରକଟ । ୪୮ ।
ସ୍ୱରୂପ ଯେ ରସତତ୍ତ୍ୱ ଦେଲେ || ରୂପ ଯେ ସବୁଟି ବୁଝିଲା । ୪୯ ।
ଉଚ୍ଚର ଶ୍ରେଷ୍ଠ ଭାବ ଜାଣି || ଶୀଘ୍ର ବୁଝିଲା ପରମାଣି । ୫୦ ।
ରୂପ ଦଶମାସ ରହିଲେ || ସ୍ୱାମୀ ଠୁଁ ଭାଗବତ ଶୁଣିଲେ । ୫୧ ।
ସ୍ୱାମୀର ଯେତେକ ଯେ ଭାବ || ଟେପଥ ପ୍ରେମ ସ୍ୱଭାବ । ୫୨ ।
ଭାଗବତ ପଦ ଯେ ପଢ଼ିଲ || ନୂତନ ଲେଖିଲେ ଟୀକା । ୫୩ ।
ସ୍ୱାମୀ ଠୁଁ ଉରଧ ତତ୍ତ୍ୱ || ଜାଣି ସେ ପରମ ସନ୍ତୋଷ । ୫୪ ।
ଲେଖାଇ ନେଲ ପୋଥି ଯେତେ || ବ୍ରହ୍ମ ସହିତା କର୍ଣ୍ଣାମୃତେ । ୫୫ ।
କାଶୀ ମିଶ୍ର ସେ ନ ସହିଲେ || ରୂପଙ୍କୁ ପଠାଇ ଦେଲେ । ୫୬ ।
ଯେତେକ ମ୍ଳେଚ୍ଛ ଅଚରଣ || ନ କଲ ଜଗନ୍ନାଥ ଦର୍ଶନ । ୫୭ ।

---

୪୩-୫୦ ରୂପ ଶିକ୍ଷା ପ୍ରସଙ୍ଗ ଏଠାରେ ବର୍ଣ୍ଣିତ । ରୂପ ବଙ୍ଗକାସ୍ତ ଓ ସେ ଦେଖିବାକୁ କଳା । ରୂପଙ୍କୁ ନେଇ ଚୈତନ୍ୟ ସ୍ୱରୂପ ଦାମୋଦରଙ୍କ ସହିତ ପରିଚିତ କରାଇ ଦେଇଥିଲେ ଏବଂ ରୂପଙ୍କୁ ରସତତ୍ତ୍ୱମାନ ଶିକ୍ଷା ଦେବା ପାଇଁ ସ୍ୱରୂପ ଦାମୋଦରଙ୍କୁ ଅନୁରୋଧ କଲେ । ସ୍ୱରୂପ ରୂପଙ୍କୁ ବୈଷ୍ଣବ ରସତତ୍ତ୍ୱ ଶିକ୍ଷା ଦେଲେ । ରୂପ ଜଣେ ବଶିଷ୍ଟ ବଦଗଧ ପଣ୍ଡିତ । ତେଣୁ ସ୍ୱରୂପ ଦାମୋଦରଙ୍କ ପକ୍ଷରେ ବୈଷ୍ଣବ ରସତତ୍ତ୍ୱକୁ ଗୋପନ ରଖିବାର ଅବକାଶ ନ ଥିଲା ।

୫୧-୬୧ ରୂପ ଜଗନ୍ନାଥ ଦାସଙ୍କ ଠାରୁ ଭାଗବତର ଭକ୍ତିତତ୍ତ୍ୱ ଶିକ୍ଷା କଲେ । ଜଗନ୍ନାଥ ଦାସଙ୍କ ଭକ୍ତିଭାବରେ ବିହ୍ୱଳତା, ଦେହରୁ ରୋମାଞ୍ଚ ପ୍ରଭୃତି ରୂପଙ୍କୁ ମୁଗ୍ଧ କଲା । ରୂପଙ୍କ ସମ୍ପର୍କରେ କାଶୀ ମିଶ୍ର କେତେକ ଅଭିଯୋଗ କଲେ— ୧) ରୂପଙ୍କର ଜଗନ୍ନାଥଙ୍କୁ ଦର୍ଶନ ନ କରିବା ୨) ଜପତପ ପ୍ରତି ଅନାସକ୍ତି ଓ ୩) ମ୍ଳେଚ୍ଛ ରାଜାର ଅଧୀନେ ମନ୍ତ୍ରୀ ଥିବା ପ୍ରଭୃତି ଏହିଭଳି ଅଭିଯୋଗର କାରଣ । ନୀଳାଚଳରୁ ଚାଲିଯାଇ ବୃନ୍ଦାବନରେ ପୀଠ ଗଢ଼ିବା ଓ ଗ୍ରନ୍ଥ ରଚନା କରିବା ଲାଗି ଚୈତନ୍ୟ ରୂପଙ୍କୁ ନିର୍ଦ୍ଦେଶ ଦେଲେ ଏବଂ ସେହି ଭକ୍ତି ବଳରେ ରୂପ ନୀଳାଚଳରୁ ଚାଲିଗଲେ ।

# [ ପଞ୍ଚଦଶ ]

ମ୍ଲେଚ୍ଛ ରାଜାର ମନ୍ତ୍ରୀ ଏହି || ଏଥେ ଆଣଇ ଭକ୍ତି ବହି । ୫୮ ।
ଚୈତନ୍ୟ ବୋଲେ ରୂପ ସାଥ || ଏଥେ ରୁ ଆଜ୍ଞା କି ନ ରହ । ୫୯ ।
ବୃନ୍ଦାବନରେ ପୀଠ ଗଢ଼ || ଗ୍ରନ୍ଥ ରଚ ରୁ ମଠ ଦୃଢ଼ । ୬୧ ।
ରୂପ ଚଳିଲେ ବୃନ୍ଦାବନେ || ଏଥେକି ନ ରହିଲ କ୍ଷଣେ । ୬୦ ।
ରାଜାର ଅଙ୍କ ଚଉତିଂଶେ || ଉତ୍କଳରୁ ସନ୍ନ୍ୟାସୀଏ ଅସେ । ୬୨ ।
ନାମ ତା ଖୋଲିଆ କବୀର || କଷା ବସନ ଦେହେ ତାର । ୬୩ ।
ତୁମ୍ବୁରା ଏକ ଧରି ହାତ || ମଧୁର ସ୍ୱରେ ଗାଏ ଗୀତ । ୬୪ ।
ଜଗନ୍ନାଥରେ ଭକ୍ତ ତାର || ମଠ ତା ବଡ଼ାଇ ଦୁଆର । ୬୫ ।
ସ୍ୱାମୀ ଯେ ଭଜନ ଶୁଣିଲେ || ପ୍ରେମେ ତାହାକୁ କୋଳ କଲେ । ୬୬ ।
କହିଲେ ମନୁଷ୍ୟ ସକଳ || ସମାନ ଅଟେ ଏ ଶସ୍ୱଳ । ୬୭ ।
କିବା ଚଣ୍ଡାଳ କିବା ଦ୍ୱିଜ || ସୃଷ୍ଟିରେ ସମାନ ସେ ହେଜ । ୬୮ ।
କେବଳ ନାମେ ମନ ଥିଲେ || କୃଷ୍ଣ ମିଳଇ ଅବହେଳେ । ୬୯ ।
ମୁକତି ବାଞ୍ଛା ନର୍କ ତୁଲ୍ୟ || ଇଷ୍ଟ ସେବାକି ଅଟେ ମୂଳ । ୭୦ ।
କବୀର ସନ୍ତୋଷ ଲଭିଲେ || ଜଗନ୍ନାଥରେ ମଠ ଦେଲେ । ୭୧ ।
ଚଳିଲେ ମାସକ ଅନ୍ତରେ || ରାଜାର ଚଉତିଶ ଅଙ୍କରେ । ୭୨ ।
ଉତ୍କଳରୁ ଆସେ ସନାତନ || ପ୍ରଭୁର ବଡ଼ ପ୍ରିୟ ଜାଣ । ୭୩ ।

---

୬୨-୭୨ ରାଜାଙ୍କ ଅଙ୍କ ଚଉତିଂଶ = ଖ୍ରୀ: ୧୫୨୬। ଏହି ବର୍ଷ ଉତ୍କଳରୁ ଜଣେ କଷାୟ ବସନ ପରିହିତ ସନ୍ନ୍ୟାସୀ ଆସି ନୀଳାଚଳରେ ପହଞ୍ଚିଲେ। ତାଙ୍କ ନାମ ଖୋଲିଆ କବୀର। ସେ ଜାତିରେ ମୁସଲମାନ ଫକୀର। ମୁସଲମାନ ଫକୀରଙ୍କୁ "ଜଲହା" କୁହାଯାଏ। 'ଜଲହା'ରୁ ଓଡ଼ିଆରେ 'ଖୋଲିଆ' ହୋଇଛି। ସେ ହାତରେ ଏକ ତୁମ୍ବୁରା (ଏକ ପ୍ରକାର ବାଦ୍ୟଯନ୍ତ୍ର) ଧରିଥିଲେ ଓ ମଧୁର ସ୍ୱରରେ ଗୀତ ଗାଉଥିଲେ। ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କ ଅଚଳା ଭକ୍ତି। ସ୍ୱାମୀ ଜଗନ୍ନାଥ ଦାସ ତାଙ୍କର ଗୀତ ଶୁଣି ଓ ଭକ୍ତି ଭାବ ଦେଖି ପ୍ରେମରେ କୋଳ କଲେ। ଦାସେ କବୀରଙ୍କ ସହିତ ଆଳାପ ଆଲୋଚନା ବେଳେ କହିଲେ — ୧) ଭଗବାନଙ୍କ ସୃଷ୍ଟିରେ ସକଳ ମନୁଷ୍ୟ ସମାନ। ଚଣ୍ଡାଳ ଓ ଦ୍ୱିଜ ମଧ୍ୟରେ କୌଣସି ଭେଦ ନାହିଁ। ୨) ନାମ ଭଜନ ଦ୍ୱାରା ଭଗବତ୍ ପ୍ରାପ୍ତି ସହଜ ହୁଏ। ୩) ଭକ୍ତ କଦାପି ମୁକ୍ତି ବାଞ୍ଛା କରିବା ଉଚିତ ନୁହେଁ। ମୁକ୍ତି ବାଞ୍ଛା ନର୍କ ତୁଲ୍ୟ ଘୃଣ୍ୟ ଓ ପରିତ୍ୟାଜ୍ୟ। ୪) ଇଷ୍ଟ ସେବା ବଳରେ ପ୍ରାଣୀର ସକଳ ବାଞ୍ଛା ପୂର୍ଣ୍ଣ ହୁଏ। କବୀର ଏଥିରେ ସନ୍ତୋଷ ପ୍ରକାଶ କଲେ ଏବଂ ଏଠାରେ ଏକ ମାସ ରହିଲା ପରେ ପ୍ରତ୍ୟାବର୍ତ୍ତନ କଲେ।

୭୩-୮୧ ସନାତନ ଗୋସ୍ୱାମୀ ନୀଳାଚଳରେ ପଦାର୍ପଣ କଲେ। ଏ ଥିଲେ ବଙ୍ଗର ମ୍ଲେଚ୍ଛ ରାଜା ହୁସେନ ସାହଙ୍କ ମନ୍ତ୍ରୀ। ରାଜକାର୍ଯ୍ୟ ଛାଡ଼ି ବୈଷ୍ଣବ ଦୀକ୍ଷା

ମ୍ଳେଚ୍ଛ ରାଜାର ମନ୍ତ୍ରୀ ଥିଲେ ॥ ଯାଲେ ବଇଷ୍ଣବ ହୋଇଲେ ।୭୪।
ଶରୀରେ ତାର ଦୁଷ୍ଟ ବ୍ରଣ ॥ ଆସଇ ଗୁଣ୍ଡିଚା ବେଳେଣ ।୭୫।
ରଥ ତଳେ ସେହୁ ପଡ଼ିଲା ॥ ପ୍ରାଣ ହାରାଇବ ବୋଇଲା ।୭୬।
ସ୍ୱରୂପ ତୁଳସୀ ଅଚ୍ୟୁତ ॥ ଅନନ୍ତ କହ୍ନାଇ ଯଶୋବନ୍ତ ।୭୭।
ଉଠାଇ ତୋଳିଣ ଧଇଲେ ॥ ଦେହେ କର୍ମ କରୁ ବୋଇଲେ ।୭୮।
କୀର୍ତ୍ତନ ଶବ୍ଦ ଗଦ୍ଦ ନାଦେ ॥ ନ ଜାଣେ କେହ୍ନ ଏ ସମ୍ବାଦେ ।୭୯।
ପ୍ରଭୁ ଜାଣିଲ ତରକଲ ॥ ଏ କଷ ତୋ ଦେହର ଭଲ ।୮୦।
ତୋ ତନୁଁ ପଣ୍ଡିତ କାହିଁଛୁ ॥ ଦେହକୁ ଜୀବନ ମୂରୁଛୁ ।୮୧।
ଏକ ବରଷ ସେ ରହିଲ ॥ ଅନେକ ତତ୍ତ୍ୱ ସେ ବୁଝିଲ ।୮୨।
ସ୍ୱାମୀ ତନୁଁ ଭଗତ ତତ୍ତ୍ୱ ॥ ଶିଖିଲ ହେତୁ ଅପ୍ରମିତ ।୮୩।
କୃଷ୍ଣତତ୍ତ୍ୱ ସେ ସୃଷ୍ଟି ତତ୍ତ୍ୱ ॥ ଜୀବ ତତ୍ତ୍ୱ ସେ ଲୀଳାତତ୍ତ୍ୱ ।୮୪।
ଜୀବ ଓ ବ୍ରହ୍ମ ଏକ ନୋହେ ॥ ଜୀବ କୃଷ୍ଣର ଦାସ କହେ ।୮୫।
ଭେଦାଭେଦ ତତ୍ତ୍ୱ ବଖାଣେ ॥ ସନାତନ ସେ ମୌନେ ଶୁଣେ ।୮୬।
କୃଷ୍ଣର ଶକ୍ତିମାନ କହ ॥ ତଟସ୍ଥ ଜୀବଶକ୍ତି ବୋଲଇ ।୮୭।
ମାୟା ଶକ୍ତି ସେ ଅଛୁ ଏକ ॥ ସ୍ୱାମୀ ବୁଝାଇଲେ ଅନେକ ।୮୮।
ଲୀଳାବତାର ଗୁଣାବତାର ॥ ଯୁଗ ଅବତାର ଦେଖର ।୮୯।
କୃଷ୍ଣର ଐଶ୍ୱର୍ଯ୍ୟ ସେ ସ୍ୱା › ॥ ମାଧୁର୍ଯ୍ୟ ସ୍ୱବଟି ସ୍ୱଭାବ ।୯୦।

---

ନେଇଥିଲେ । ପୁରୀରେ ପହଞ୍ଚିଲା ବେଳକୁ ତାଙ୍କ ଶରୀରେ ଦୁଷ୍ଟ ବ୍ରଣମାନ ବାହାରି ଯନ୍ତ୍ରଣା ଦେଉଥିଲା । ଜୀବନ ହାରିବାର ସଙ୍କଳ୍ପ ନେଇ ସେ ରଥ ଚକ ତଳେ ପଡ଼ିଥିଲେ । ମାତ୍ର ବେଡ଼ାଣ୍ଡରେ ଯାହାରେ ସେ ସ୍ଥଳରେ ଉପସ୍ଥିତ ଥିବା ସ୍ୱରୂପ ଦାମୋଦର, ତୁଳସୀ ପରିଛା, ଅଚ୍ୟୁତାନନ୍ଦ, ଅନନ୍ତ, କହ୍ନାଇ ଖୁଣ୍ଟିଆ, ଯଶୋବନ୍ତ ପ୍ରମୁଖ ବୈଷ୍ଣବମାନେ ସନାତନଙ୍କୁ ରଥ ଚକ ତଳୁ ଟେକି ଉଠାଇଲେ । କୀର୍ତ୍ତନ ଓ ଘଣ୍ଟ ମୃଦଙ୍ଗ ଭେରୀ ତୂରୀ ନାଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଉଥିବାରୁ ସନାତନଙ୍କ କଳ୍ପିତ ଆତ୍ମହତ୍ୟାର ସମ୍ବାଦ ଅନ୍ୟ କେହି ଜାଣିଲେ ନାହିଁ । ଶ୍ରୀଚୈତନ୍ୟ ଏ ବିଷୟ ଅବଗତ ହେଲେ ଓ ସନାତନଙ୍କ ପ୍ରତି ବିରକ୍ତି ଭାବ ପ୍ରକାଶ କଲେ । ସନାତନ ଜ୍ଞାନୀ, ଗୁଣୀ ଓ ଅଦ୍ୱିତୀୟ ପଣ୍ଡିତ । ମାତ୍ର ତାଙ୍କର ଆତ୍ମହତ୍ୟା ଉଦ୍ୟମ ଚୈତନ୍ୟଙ୍କର ଅସହ୍ୟ ଥିଲା । ସନାତନ ନୀଳାଚଳରେ ବୈଷ୍ଣବମାନଙ୍କର ଆଦର ଆତିଥ୍ୟ ଲାଭ କରି ଆଶ୍ୱସ୍ତ ହେଲେ । ସେ ଏଠାରେ ଏକାଦିକ୍ରମେ ଏକବର୍ଷ ପର୍ଯ୍ୟନ୍ତ ରହିଲେ ।
୮୨-୯୯ ତାଙ୍କର ଏଠାରେ ଅବସ୍ଥାନ କାଳରେ ସେ ସ୍ୱାମୀ ଜଗନ୍ନାଥ ଦାସଙ୍କ ଠାରୁ ଭକ୍ତିତତ୍ତ୍ୱ ଶିକ୍ଷା କଲେ । କୃଷ୍ଣତତ୍ତ୍ୱ, ସୃଷ୍ଟିତତ୍ତ୍ୱ, ଜୀବତତ୍ତ୍ୱ ଓ ଲୀଳାତତ୍ତ୍ୱ

[ ସଂସ୍କରଣ ]

ମଧୁର ସ୍ତବର ଭଜନ ॥ ସ୍ୱାମୀ କଲେକ ସେ ବଖାଣ । ୯୧ ।
ମଧୁର ଅଟଇ ସାଧନ ॥ ଶ୍ରେଷ୍ଠ ସେ ବୋଲଇଛି ପୁଣ । ୯୨ ।
ଶ୍ରେଷ୍ଠରେ କୃଷ୍ଣର ପ୍ରକାଶ ॥ ମନୁଷ୍ୟ ଲୀଳା ହିଁ ସରସ । ୯୩ ।
କାମ ଗାୟତ୍ରୀ ମନ୍ତ୍ର ପଢ଼ ॥ କୃଷ୍ଣରେ କର ମତି ଦୃଢ଼ । ୯୪ ।
ବୈଧି ମାର୍ଗକୁ ତ୍ୟଜିଣ ॥ ରାଗ ମାର୍ଗେ କର ଭଜନ । ୯୫ ।
ବୈଷ୍ଣବ ମୁକତି ନ ବାଞ୍ଛି ॥ କୃଷ୍ଣର ଦାସରେ ବାଞ୍ଛଇ । ୯୬ ।
ତା ତହୁଁ କୃଷ୍ଣ ପ୍ରାପ୍ତ ହୋଇ ॥ ମନର ସଂଶୟ ତୁଟଇ । ୯୭ ।
ପ୍ରଭୁ ବୋଇଲେ ଏଥୁ ଯାଅ ॥ ବୃନ୍ଦାବନେ ପୀଠ କରଅ । ୯୮ ।
ଚଳିଲ ତହୁଁ ସନାତନ ॥ ଏକ ବରଷ ଅନ୍ତରେଣ । ୯୯ ।

---

ସଂପର୍କୀୟ ସାଧ୍ୟୋପାୟ ତତ୍ତ୍ୱ ସେ ସ୍ୱାମୀ ଜଗନ୍ନାଥ ଦାସଙ୍କ ଠାରୁ ଶିକ୍ଷା କଲେ । ଜଗନ୍ନାଥ ଦାସଙ୍କ ବକ୍ତବ୍ୟ ମଧ୍ୟରେ ଭେଦାଭେଦ ତତ୍ତ୍ୱ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶିତ ହୋଇ । ଜୀବ ଓ ବ୍ରହ୍ମ ଏକ ନୁହନ୍ତି—ଉଭୟ ମଧ୍ୟରେ ଭେଦ ରହିଅଛି । ଜୀବ ହେଉଛି ପରବ୍ରହ୍ମ ଶ୍ରୀକୃଷ୍ଣଙ୍କର ଦାସ । ପରବର୍ତ୍ତୀ ସମୟରେ ସନାତନାଦି ଷଡଗୋସ୍ୱାମୀ ବୃନ୍ଦାବନରେ ପୀଠ ଗଢ଼ି ନୀଳାଚଳରୁ ସ୍ୱାମୀ ଜଗନ୍ନାଥ ଦାସ ଓ ରାୟ ରାମାନନ୍ଦଙ୍କ ଠାରୁ ଶିକ୍ଷା କରିଥିବା ଏ ସମସ୍ତ ତତ୍ତ୍ୱକୁ ସଂଗଠିତ ରୂପ ଦେଲେ ଓ ଏହାକୁ ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ ନାମରେ ଘୋଷଣା କଲେ ଏବଂ ଏହାକୁ ଗୌଡ଼ୀୟ ବୈଷ୍ଣବ ଧର୍ମର ମୂଳତତ୍ତ୍ୱ ରୂପେ ପ୍ରତିପାଦନ କଲେ । ନୀଳାଚଳରେ ନାମକରଣ ହୋଇନଥିଲେ ଏଥି ସହିତ ସଂଯୁକ୍ତ ହୋଇପାରିଲ ନାହିଁ । ମାତ୍ର ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ ଯେ ନୀଳାଚଳରୁ ଉଦ୍ଭୂତ ହୋଇଥିଲା, ଏହାର ନିର୍ଦ୍ଦିଷ୍ଟ ପ୍ରମାଣ ମାଧବ ପଟ୍ଟନାୟକ ଏଠାରେ ବର୍ଣ୍ଣନା କରିଛନ୍ତି ।

ଶ୍ରୀକୃଷ୍ଣଙ୍କ ଶକ୍ତି ସଂପର୍କରେ ଚିତ୍‌ଶକ୍ତି, ଜୀବଶକ୍ତି ଓ ମାୟାଶକ୍ତିର ଉଲ୍ଲେଖ କଲେ ସ୍ୱାମୀ ଜଗନ୍ନାଥ ଦାସ । ଲୀଳାବତାର, ଗୁଣାବତାର ଓ ଯୁଗାବତାର ସଂପର୍କୀୟ ତତ୍ତ୍ୱ ମଧ୍ୟ ସନାତନ ଗୋସ୍ୱାମୀଙ୍କ ନିକଟରେ ପ୍ରକାଶ କଲେ । 'ମଧୁର ରସ ଉପାସନା' ନୀଳାଚଳରେ ଜଗନ୍ନାଥଙ୍କ ଦ୍ୱାରା ସଂଗଠିତ ରୂପ ଲାଭ କରିଥିଲା । ଶ୍ରୀକୃଷ୍ଣଙ୍କ ଶ୍ରେଷ୍ଠ ପ୍ରକାଶ ମନୁଷ୍ୟ ଲୀଳାରେ ସାଧିତ ଓ ଏଥି ଲାଗି ଦ୍ୱିଭୁଜ ମୁରଲୀ ପାଣି ଶ୍ରୀକୃଷ୍ଣ ହିଁ ଉପାସ୍ୟ—ଏ ତତ୍ତ୍ୱ ମଧ୍ୟ ଜଗନ୍ନାଥ ଦାସଙ୍କ ମୁଖରୁ ନିଃସୃତ ହୋଇଥିଲା । କାମଗାୟତ୍ରୀ ମନ୍ତ୍ରପାଠ ଓ ବୈଧିମାର୍ଗ ତ୍ୟାଗ କରି ରାଗ ମାର୍ଗରେ କୃଷ୍ଣ ଭଜନକୁ ଶ୍ରେଷ୍ଠ ପନ୍ଥା ରୂପେ ପ୍ରତିପାଦନ କରି ବୈଷ୍ଣବ ଧର୍ମ ଜଗତରେ ଏକ ବୈପ୍ଳବିକ ପରିବର୍ତ୍ତନ ସଂବିଧାନ କରିବା ଏଭଳି ଜଗନ୍ନାଥ ଦାସ ଓ ରାୟ ରାମାନନ୍ଦଙ୍କର କୃତିତ୍ୱ । ଏ ସଂପର୍କରେ ଏଥିରୁ ନିଃସନ୍ଦିଗ୍ଧ ତଥ୍ୟ ମିଳେ । ଏକବର୍ଷ ପରେ ଶ୍ରୀଚୈତନ୍ୟ ସନାତନଙ୍କୁ ବୃନ୍ଦାବନକୁ ପ୍ରେରଣ କଲେ ।

ଦୂରରୁ ଅଇଲ ବଲ୍ଲଭ || ଗୋପାଳେ ତାର ଭକ୍ତିଭାବ |୧୦୦|
ସ୍ୱାମୀ ଭୁଲେଣ ତାର ଭେଟ || କରନ୍ତି ଭାଗବତ ପାଠ |୧୦୧|
ଶ୍ରୀଜଗନ୍ନାଥେ ତାର ମଠ || ଦର୍ଶନେ ସନ୍ତୋଷ ଲଭନ୍ତ |୧୦୨|
ଗୋପୀଜନ ବଲ୍ଲଭଟି ଏ || ରାଧାକୃଷ୍ଣ ମେଳ ବପୁ ଏ |୧୦୩|
ବଲ୍ଲଭ ସନ୍ନ୍ୟାସୀ ବୁଝିଲେ || ଭଗତ ଅରପିଲ ବୋଲେ |୧୦୪|
ମୋର ସ୍ୱରୂପ ଗୋପୀଜନ || ବଲ୍ଲଭ ଜଗନ୍ନାଥ ଜାଣ |୧୦୫|
ରଥକୁ ଆସି ମାସ ଦୁଇ || ରହିଲେ ବଲ୍ଲଭ ଗୋସାଇଁ |୧୦୬|
କୀର୍ତ୍ତନ ଦେଖିଣ ପ୍ରଭୁର || ସନ୍ତୋଷ ଲଭଇ ଅପାର |୧୦୭|
ଇଷ୍ଟ ଗୋଷ୍ଠୀରେ ଆସି ହେଲେ || ବହୁତ ତତ୍ତ୍ୱ ସମଜଲେ |୧୦୮|
ଏଥୁ ଅନ୍ତରେ ଶୁଣ ଭବେ || ରାଜାର ଅଙ୍କ ସପ୍ତବିଂଶେ |୧୦୯|
ଦିନେ ବସିଣ ଏକାନ୍ତରେ || ପ୍ରଭୁ ସ୍ୱାମୀଙ୍କ ପାର୍ଶ୍ୱରେ |୧୧୦|
ପିତାଙ୍କ ବାର୍ତ୍ତା ମୋତେ କହ || ତୋ ତହୁଁ ଭିନ୍ନ ମାତ୍ର ଦେହ |୧୧୧|
ସ୍ୱାମୀ ବୋଇଲେ ଭଲ ହେଲ || ପ୍ରଭୁ ବୋଲନ୍ତି କହ ଭଲ |୧୧୨|

---

୧୦୦-୧୦୮ ଶ୍ରୀବଲ୍ଲଭାଚାର୍ଯ୍ୟଙ୍କ ନୀଳାଚଳ ଆଗମନ ପ୍ରସଙ୍ଗ ଏଠାରେ ବର୍ଣ୍ଣିତ। ଏହା ବୋଧହୁଏ ଖ୍ରୀ: ୧୫୧୬ ପରବର୍ତ୍ତୀ ଘଟଣା; ୧୫୧୭ ବା ୧୫୧୮ ହୋଇପାରେ। ଜଗନ୍ନାଥ ଦାସଙ୍କ ସହିତ ବଲ୍ଲଭାଚାର୍ଯ୍ୟଙ୍କର ଆଳାପ ଆଲୋଚନା ଓ ଭାଗବତ ତତ୍ତ୍ୱ ଚର୍ଚ୍ଚା ସମ୍ପର୍କୀୟ ବିବରଣୀ ଏଥିରୁ ମିଳେ। ବଲ୍ଲଭାଚାର୍ଯ୍ୟ ଥିଲେ ବାଳଗୋପାଳ ଉପାସକ। ମାତ୍ର ନୀଳାଚଳକୁ ଆସି ଜଗନ୍ନାଥ ଦାସ ପ୍ରମୁଖ ଖ୍ୟାତ ବୈଷ୍ଣବଙ୍କ ସମ୍ପର୍କରେ ଆସିଲା ପରେ ସେ ଗୋପୀଜନ ବଲ୍ଲଭ ଶ୍ରୀଜଗନ୍ନାଥଙ୍କ ପଦ ଭକ୍ତି ଅର୍ପଣ କଲେ। ରଥଯାତ୍ରା ବେଳକୁ ଆସି ସେ ଏଠାରେ ଦୁଇମାସ ରହିଲେ। ଶ୍ରୀଚୈତନ୍ୟଙ୍କ କୀର୍ତ୍ତନ ନୃତ୍ୟ ଦେଖି ସେ ସନ୍ତୋଷ ଲାଭ କଲେ। ପଞ୍ଚସଖା, ରାୟ ରାମାନନ୍ଦ ଓ ଶ୍ରୀଚୈତନ୍ୟଙ୍କ ଗହଣରେ ଇଷ୍ଟଗୋଷ୍ଠୀରେ ଯୋଗଦେଇ ସେ ଅନେକ ବିଷୟରେ ତାତ୍ତ୍ୱିକ ଆଲୋଚନା କରିଥିବା ଏଥିରୁ ଜଣାଯାଏ।

୧୦୯-୧୨୯ ରାଜାଙ୍କ ୨୭ ଅଙ୍କ = ଖ୍ରୀ: ୧୫୧୮। ସ୍ୱାମୀ ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟ ଅଭେଦ ଦ୍ୱୈତ ସ୍ୱରୂପରେ ଅବସ୍ଥିତ ଥିଲେ ଏବଂ ଏହା କେତେକ ବଙ୍ଗୀୟ ଭକ୍ତଙ୍କର ଈର୍ଷା ଓ ମନୋମାଳିନ୍ୟର କାରଣ ଥିଲା। ଦୁହିଁଙ୍କ ମଧ୍ୟରେ ଭିନ୍ନ ଥିଲା କେବଳ ଦେହ; ଅନ୍ୟଥା ଆତ୍ମିକ ଭାବରେ ଦୁହେଁ ଥିଲେ ଏକ ଓ ଅଭିନ୍ନ। ଏ ଭଳି ଅଭେଦ ତାଦାତ୍ମ୍ୟ ଓ ବିରଳ ସଖ୍ୟ ଦୁର୍ଲ୍ଲଭ। ଦିନେ ଚୈତନ୍ୟ ଜଗନ୍ନାଥଙ୍କୁ ପୂର୍ବ ପିତାଙ୍କ ପ୍ରସଙ୍ଗ ଜିଜ୍ଞାସା କଲେ। ଚୈତନ୍ୟଙ୍କ ଜନ୍ମ ଶ୍ରୀକୃଷ୍ଣଙ୍କ ହୃଦରୁ ଓ ତାଙ୍କର ଜନ୍ମ ରାଧାଙ୍କ ହୃଦରୁ ବୋଲି ଜଗନ୍ନାଥ ଦାସ ପ୍ରକାଶ କଲେ। ଏଥିରେ ଚୈତନ୍ୟ ଏତେ ମୁଗ୍ଧ ହେଲେ ଯେ ନିଜ କାନ୍ଧରୁ

ସ୍ୱାମୀ ଭଜୁଛ ଏକାନ୍ତରେ ॥ ଥିଲେକ ରାଧା ପାର୍ଶ୍ୱରେ ।୧୧୩।
କୃଷ୍ଣ ହିଁ ରାଧା ନୋହେ ଭିନ୍ନ ॥ ଅଛଇ ଏକାନ୍ତ ସ୍ୱଭେଣ ।୧୧୪।
ସଚ୍ଚିଦାନନ୍ଦ ଯେ ସ୍ୱତନ୍ତ୍ର ॥ ରାଧା ସ୍ୱରୂପ ଏକ ଦେହ ।୧୧୫।
ରାଧାଙ୍କୁ ଅନାଇ ହସିଲ ॥ କୃଷ୍ଣ ହାସ ସୁଧା ଝରିଲ ।୧୧୬।
କୃଷ୍ଣର ହାସୁ ତୋ ଜନମ ॥ ରାଧା ହାସରୁ ମୋର ଜନ୍ମ ।୧୧୭।
କହିଲ ପୂର୍ବ ଅଙ୍ଗ କଥା ॥ ଏ ତତ୍ତ୍ୱ ନୋହଇ ଅନ୍ୟଥା ।୧୧୮।
ପ୍ରଭୁ ଯେ ପ୍ରେମେ ଆଲିଙ୍ଗିଲ ॥ ଏ ଅତି ବଡ଼ଟି ବୋଇଲ ।୧୧୯।
ତୋହର ମୋହର ଏକ ପ୍ରାଣ ॥ ଦେହଟି ମାତ୍ରକ ଯେ ଭିନ୍ନ ।୧୨୦।
ଅତିବଡ଼ ଏ କଥା କହୁ ॥ ଅତିବଡ଼ ହେଲ୍ ଆଜହୁଁ ।୧୨୧।
ତାହାରୁ ଉତ୍ତରୀ କାଢ଼ିଲ ॥ ସ୍ୱାମୀ ମସ୍ତକେ ଭିଡ଼ିଦେଲ ।୧୨୨।
ବୋଲେ ଏ ଅତି ବଡ଼ପଣ ॥ ସ୍ୱାମୀ ତୁ ମୋହର ପରାଣ ।୧୨୩।
ପ୍ରଭୁ ବୋଇଲ ସ୍ୱରୂପକୁ ॥ ଏ ଅତିବଡ଼ ବୋଲିବାକୁ ।୧୨୪।
ଆଉ ଯେତେକ ଭକ୍ତ ମେଳ ॥ ପ୍ରଭୁ ଅତିବଡ଼ ପ୍ରସ୍ତରେ ।୧୨୫।
କାଶୀ ମିଶ୍ର ଯେ ରାମ ରାୟ ॥ ବଳରାମ ଅଚ୍ୟୁତ ବେଢ଼ାସ୍ତୁ ।୧୨୬।
ଅନନ୍ତ ଯଶୋବନ୍ତ ମେଳେ ॥ ପ୍ରଭୁ ଏ ବାର୍ତ୍ତା ପ୍ରକାଶିଲେ ।୧୨୭।
ସକଳେ କଲେ ଅଙ୍ଗୀକାର ॥ ଏ ଅତିବଡ଼ର ବେଭାର ।୧୨୮।
ଅତିବଡ଼ କଥା କହିଲ ॥ ଆଜହୁଁ ଅତିବଡ଼ ହେଲ ।୧୨୯।
ଏଥି ଅନ୍ତରେ ଆନ ରସ ॥ ଶୁଣି ସୁଜନେ ହୁଅ ତୋଷ ।୧୩୦।
ବଳରାମ ଦାସ ବେଳଇ ॥ ମହାପୁରୁଷ ଅଟେ ସେହି ।୧୩୧।
ସୋମନାଥର ସୁତ ସେ ॥ ବେଦାନ୍ତ ତତ୍ତ୍ୱ ଯେ ପ୍ରକାଶେ ।୧୩୨।

---

ଉତ୍ତରୀୟ କାଢ଼ି ଦାସଙ୍କ ମସ୍ତକରେ ଶିରୋପା ବାନ୍ଧି ଦେଲେ । କହିଲେ— ଏହା ଅତିବଡ଼ କଥା । ତୁମେ ଏ ଅତିବଡ଼ କଥା କହିଲ । ତେଣୁ ତୁମ୍ଭେ ଆଜିଠାରୁ ଅତିବଡ଼ ହେଲ । ସ୍ୱରୂପ ଦାମୋଦର, କାଶୀ ମିଶ୍ର, ରାୟ ରାମାନନ୍ଦ, ଅନନ୍ତ, ଯଶୋବନ୍ତ, ବଳରାମ, ଅଚ୍ୟୁତ ପ୍ରମୁଖଙ୍କ ନିକଟରେ ଶ୍ରୀଚୈତନ୍ୟ, ଜଗନ୍ନାଥ ଦାସଙ୍କ ଅତିବଡ଼ ପଣ ପ୍ରକାଶ କଲେ ଏବଂ ଜଗନ୍ନାଥ ଦାସଙ୍କୁ 'ଅତିବଡ଼' ବୋଲି ସମସ୍ତେ ସ୍ୱୀକାର କଲେ । ଶ୍ରୀଚୈତନ୍ୟ ନୀଳାଚଳରେ ଜଗନ୍ନାଥ ଦାସ ପ୍ରମୁଖ ବୈଷ୍ଣବମାନଙ୍କ ମତ ଦ୍ୱାରା କେତେ ବେଶୀ ପ୍ରଭାବଶୀଳ ଥିଲେ, ତାହା ଏହି ଘଟଣାରୁ ଜଣା ଯାଉଅଛି ।

୧୩୦-୧୬୪ ପଞ୍ଚସଖା ଅନ୍ତର୍ଗତ ବଳରାମ ଦାସ ଥିଲେ 'ଯୋଗପୁରୁଷ' । ରାମାୟଣ ରଚନା କରି ସେ କେବଳ ଦୁର୍ଲଭ କବିତ୍ୱ ପ୍ରକାଶ କରି ନ ଥିଲେ ବରଂ

ରଚିଲେ ରାମାୟଣ ଗୀତ . || ଯୋଗପୁରୁଷ ବୋଲାଇ ତ | ୧୩୩ |
ରଥ ଉପରକୁ ଉଠିଲ || ହାତରେ ଅଛି ଫୁଲମାଳା | ୧୩୪ |
ରଥରେ ବାମନଙ୍କୁ ଦେବ || ଭଗତଭାବ ଅରପିବ | ୧୩୫ |
ବୋଲି ରଥକୁ ଚଢ଼ିଗଲ || ସେବକେ ବୋଲେ ଏଥୁ ପଳା | ୧୩୬ |
ତୋହର ନାହିଁ ଅଧିକାର || ମାଳା ଅରପିବୁ ରଥର | ୧୩୭ |
ସେବକେ କେତେ ଧିକାରିଲେ || ଏ ଥାନୁ ପଳା ରେ ବୋଇଲେ | ୧୩୮ |
ରଥରୁ ତଳକୁ ଆସିଲ || କାହାକୁ କିଛି ନ ବୋଇଲ | ୧୩୯ |
ଗଲ ସେ ସମୁଦ୍ର ତଟକୁ || ଜଗନ୍ନାଥଙ୍କୁ ପୁଜିବାକୁ | ୧୪୦ |
ବାଲିରେ ରଥ ଏକ କଲ || ଡାକିଲ ଆସ ବନ୍ଧୁବଳା | ୧୪୧ |
ଆସ ହେ ବଳରାମ ଭାଇ || ସୁଭଦ୍ରା ଭଉଣୀକୁ ନେଇ | ୧୪୨ |
ତିନି ପ୍ରତିମା ବିଜେ ହେଲେ || ବାଲି ରଥେ ପୂଜା ପାଇଲେ | ୧୪୩ |
ଦାଣ୍ଡରେ ରଥ ନ ଚଳିଲ || ସ୍ତବ୍ଧ ହୋଇଲେକ ଲୋକମେଳା | ୧୪୪ |
ଭଗତେ ଅନାଇ ରହିଲେ || ସେବକେ କେତେ ଯତ୍ନ କଲେ | ୧୪୫ |
ନୃପ ଆସିଣ ଉଗ୍ର ହୋଇ || ତଥାପି ରଥ ନ ଚଳଇ | ୧୪୬ |
ଦିବସ ଯାଇ ରାତି ହେଲ || ତଥାଚ ରଥ ନ ଚଳିଲ | ୧୪୭ |
ଲାକ୍ଷେକ ଭକ୍ତ ରୁଣ୍ଡ ହେଲେ || କେହି ବୁଝାଇ ନ ପାରିଲେ | ୧୪୮ |
ନୃପଙ୍କୁ ରାତେ ସ୍ୱପ୍ନ ହେଲ || ସମୁଦ୍ର ତଟେ ମୁଁ ବୋଇଲ | ୧୪୯ |
ଯାଅ ରେ ରଜା ଆଣ ମୋତେ || ଭକ୍ତ ବଳରାମ ସହିତେ | ୧୫୦ |

---

ଆପଣାର ଭକ୍ତିନିଷ୍ଠା, ନୀତିଜ୍ଞାନ, ଗମ୍ଭୀର ବ୍ୟକ୍ତିତ୍ୱ ଓ ଅପୂର୍ବ ଭକ୍ତିଭାବ ବଳରେ ସେ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ । ଥରେ ରଥଯାତ୍ରା ବେଳେ ସେ ରଥ ଉପରେ ଠାକୁରଙ୍କୁ ଫୁଲମାଳା ଅର୍ପଣ କରିବାକୁ ଗଲେ । ମାତ୍ର ସେବକେ ତାଙ୍କୁ ରଥ ଉପରୁ ଓହ୍ଲାଇ ଦେଲେ । କ୍ଷୁବ୍ଧ, ଅପମାନରେ ଦୁଃଖିତ ହୋଇ ସେ ସମୁଦ୍ର କୂଳକୁ ଯାଇ ବାଲିରେ ରଥ ତିଆରି କରି ଜଗନ୍ନାଥଙ୍କୁ ତାଙ୍କ ହାତ ତିଆରି ବାଲି ରଥରେ ବିଜେ କରି ପୂଜା ଅର୍ଚ୍ଚନା ଗ୍ରହଣ କରିବାକୁ ବ୍ୟାକୁଳ ନିବେଦନ କଲେ । ଜଗନ୍ନାଥେ, ଭାଇ ଓ ଭଉଣୀଙ୍କୁ ନେଇ ବାଲି ରଥରେ ବିଜେ ହେଲେ । ଦାଣ୍ଡରେ ରଥ ପଡ଼ି ରହିଲା । ଶତଚେଷ୍ଟା ସତ୍ତ୍ୱେ ରଥ ଚଳିଲା ନାହିଁ । ସମସ୍ତଙ୍କ ମନରେ ବିରସ ଭାବ । ରାତିରେ ରାଜାଙ୍କୁ ସ୍ୱପ୍ନ ହେଲା ଓ ରାଜା ସମୁଦ୍ର କୂଳକୁ ଆଡ଼ମ୍ବରରେ ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ ଯାଇ ବଳରାମଙ୍କୁ କ୍ଷମା ଭିକ୍ଷା କଲେ । ବଡ଼ଦାଣ୍ଡକୁ ବଳରାମ ଦାସ ଆସି ରଥ ଉପରେ ଠାକୁରଙ୍କୁ ଫୁଲମାଳା ଦେଇ ଚନ୍ଦନ ଲେପନ କରିବାରୁ ରଥ ଘିଡ଼ ଘିଡ଼ ହୋଇ ଗଡ଼ି ଚାଲିଲା ।

[ ଏକସ୍ତଳଣ ]

ରଜା ସେ ସମ୍ଭକୁ ଦ୍ୱାର ॥ ପ୍ରଭୁ ସ୍ୱାମୀଙ୍କର ସମ୍ଭାର ।୧୫୧।
କାଶୀ ମିଶ୍ର ତପନ ଆଶ୍ରମେ ॥ ବଲ୍ଲଭ ଅନନ୍ତ ଆଶ୍ରମେ ।୧୫୨।
ଅଚ୍ୟୁତ ଅନନ୍ତ ଯଶୋବନ୍ତ ॥ ତୁଳସୀ ମିଶ୍ର ଦାମୋଦର ପଣ୍ଡିତ ।୧୫୩।
ଝାଞ୍ଜ ମୃଦଙ୍ଗ କଲରୋଳେ ॥ ସମୁଦ୍ର ତଟ ସେ ଢକୁଲେ ।୧୫୪।
ନାଳରେ ସର୍ବେବ ମିଳିଲେ ॥ ଦଣ୍ଡ ପ୍ରଣାମେ ଜଣାଇଲେ ।୧୫୫।
ସ୍ୱଭାବେ ସ୍ୱର ବିନୋଦିଆ ॥ ଭକ୍ତରଙ୍ଗ ଅନୁସନ୍ଧିଆ ।୧୫୬।
ବଳରାମଙ୍କୁ ଧନ୍ୟ କଲେ ॥ ଫୁଲ ଚନ୍ଦନେ ଅରଚିଲେ ।୧୫୭।
ବୋଇଲେ ଆସ ବଳରାମ ॥ ଭଗତ ଶ୍ରେଷ୍ଠ ତୋର ନାମ ।୧୫୮।
ଭଗତି ସୁବେଶ ବାନ୍ଧିଲୁ ॥ ପ୍ରଭୁଙ୍କୁ ତୁଇ ବଶ କଲୁ ।୧୫୯।
ତୋ ତହୁଁ କାହିଁ ଭକ୍ତ ଅଛୁ ॥ ଆସ ରୁ ବେଗେଣ ମୁରୁଛୁ ।୧୬୦।
ଆସିଲୁ ବଳରାମ ଦାସ ॥ ରଥ ଉପରେ ପରକାଶ ।୧୬୧।
ପ୍ରଭୁଙ୍କୁ ମାଳା ସେ ଅର୍ପିଲ ॥ ଚନ୍ଦନେ ତନୁ ଜଡ଼ାଇଲ ।୧୬୨।
ଘଣ୍ଟ ମୃଦଙ୍ଗ କଲରୋଳ ॥ ବଡ଼ଦାଣ୍ଡ ତହୁଁ ଢକୁଲେ ।୧୬୩।
ରଥ ଚଳଇ ଘିଡ଼ି ଘିଡ଼ି ॥ ମାଧବ ଭେଟେ ପାଦେ ପଡ଼ି ।୧୬୪।



# ଷଷ୍ଠ ଅଧ୍ୟାୟ

ଶୁଣ ସାଧବେ ଏହୁ ରସ ॥ ମହାମନ୍ତ୍ରର ଯେ ରହସ୍ୟ । ୧ ।
ହରେ ରାମ ବା ହରେକୃଷ୍ଣ ॥ ଏ ଘେନ କନ୍ଦଳ ଉଆଣ । ୨ ।
ଶିବାନନ୍ଦ ବୋଲେ ହରେକୃଷ୍ଣ ॥ କହ୍ନାଇ ବୋଲେ ହରେରାମ । ୩ ।
ମନ୍ତ୍ରର ଆଗ କସ ହୋଇ ॥ ଏ ଘେନ ତର୍କ ଉପୁଜଇ । ୪ ।
ବହୁତ କଳହ ସେ ଭଲେ ॥ ସ୍ୱରୂପ ପାଶେ ଯାଇ ହେଲେ । ୫ ।
ସ୍ୱରୂପ ବୋଲେ ଚଲ ଯିବା ॥ ସ୍ୱାମୀ ପାରୁଶକୁ ବୁଝିବା । ୬ ।
ସ୍ୱାମୀ ବୋଇଲେ ଭଲ ହେଲା ॥ ପ୍ରଭୁଙ୍କୁ ହକାର ବୋଇଲା । ୭ ।
ପ୍ରଭୁ ହକାରେ ରାମରାୟ ॥ ସାର୍ବଭୌମ କାଶୀ ମିଶ୍ରଏ । ୮ ।
ଭକ୍ତ ପାରୁଶ ମଣ୍ଡପେଣ ॥ ମେଳ ହୋଇଲେ ସର୍ବଜନ । ୯ ।
ଅନନ୍ତ ଅଚ୍ୟୁତ କହ୍ନାଇ ॥ ଶିବାନନ୍ଦ ଯେ ଗୋବିନ୍ଦାଇ । ୧୦ ।
ପ୍ରଭୁଙ୍କୁ ସଭା ମୁଖ୍ୟ କଲେ ॥ ବିଚାର କରହୋ ବୋଇଲେ । ୧୧ ।
ସାର୍ବଭୌମ ଯେ ହରେରାମ ॥ ଗଦାଧର ଯେ ହରେକୃଷ୍ଣ । ୧୨ ।
କାଶୀ ମିଶ୍ର ବୋଲେ କ୍ଷେତ୍ରରେ ॥ ହରେରାମ ମନ୍ତ୍ର ପ୍ରଚଳେ । ୧୩ ।
ବହୁତ ମୁକ୍ତି ତର୍କ ହେଲା ॥ ଶେଷେ ପ୍ରଭୁ ଯେ ଶୁଣାଇଲା । ୧୪ ।
ହରେରାମ ମନ୍ତ୍ରଟି ସାର ॥ ନୀଳାଚଳେ ଏହୁ ପ୍ରଚାର । ୧୫ ।
ଏଥିକୁ ଆନ କି କରିବା ॥ ଆଦ୍ୟ ହରେକୃଷ୍ଣ ଛାଡ଼ିବା । ୧୬ ।
ଶିବାନନ୍ଦ ବୋଲେ ଗୌଡ଼ରେ ॥ ହରେକୃଷ୍ଣ ଆଦ୍ୟ ପ୍ରଚାରେ । ୧୭ ।

---

୧-୧୮ ମହାମନ୍ତ୍ର ସମ୍ପର୍କୀୟ ବିବାଦ ଓ ତାହାର ସମାଧାନ ଏଠାରେ ବର୍ଣ୍ଣିତ । ମହାମନ୍ତ୍ରର ଆଦ୍ୟ 'ହରେରାମ' ହେବ କି 'ହରେକୃଷ୍ଣ' ହେବ—ଏ ବିଷୟ ନେଇ ଶ୍ରୀକ୍ଷେତ୍ରରେ ଉତ୍କଳୀୟ ଓ ଗୌଡ଼ୀୟ ଭକ୍ତମାନଙ୍କ ମଧ୍ୟରେ ଯୁକ୍ତିତର୍କ, ବାଦବିବାଦ ଉପସ୍ଥିତ ହେଲା । ଶିବାନନ୍ଦ ସେନ ଆଦ୍ୟ 'ହରେକୃଷ୍ଣ'କୁ ସମର୍ଥନ କରୁଥିଲା ବେଳେ କହ୍ନେଇ ଖୁଣ୍ଟିଆ ପ୍ରମୁଖ ଆଉ ଗୋଟିଏ ଗୋଷ୍ଠୀ ଆଦ୍ୟ 'ହରେରାମ'ର ଯଥାର୍ଥତା ସ୍ୱୀକାର କରୁଥିଲେ । ଉଭୟ ଗୋଷ୍ଠୀ ଏହାର ସମାଧାନ ପାଇଁ ସ୍ୱରୂପ ଦାମୋଦରଙ୍କ ନିକଟରେ ପହଞ୍ଚିଲେ । ସ୍ୱରୂପ ଏମାନଙ୍କୁ ନେଇ ସ୍ୱାମୀ ଜଗନ୍ନାଥ ଦାସଙ୍କ ନିକଟକୁ ଗଲେ । ଜଗନ୍ନାଥ ଦାସ ଏଥିପାଇଁ ଶ୍ରୀଚୈତନ୍ୟଙ୍କର ସହାୟତା ଲୋଡ଼ିଲେ । ଶ୍ରୀଚୈତନ୍ୟ ଏହାର ସମାଧାନ ପାଇଁ ରାୟ ରାମାନନ୍ଦ, ବାସୁଦେବ ସାର୍ବଭୌମ ଓ କାଶୀଶ୍ୱର ମିଶ୍ରଙ୍କୁ ଡକାଇଲେ । ସମସ୍ତେ ଉତ୍ତର ପାର୍ଶ୍ୱ ମଣ୍ଡପରେ ସମବେତ ହୋଇ ଏ ବିଷୟରେ

ପ୍ରଭୁ ବୋଇଲେ କହୁ ଭଲ ॥ ଗଉଡ଼େ ହରେକୃଷ୍ଣ ହେଲ ।୧୮।
ଏଥୁ ଅନ୍ତରେ ଶୁଣ ବାର୍ତ୍ତା ॥ ଶିବାନନ୍ଦ ସଙ୍ଗି ଅନେକା ।୧୯।
ରଥକୁ ଦର୍ଶନି ଆଣିବା ॥ ମାସାବଧି କ୍ଷେତ୍ରେ ରହିବା ।୨୦।
ଦର୍ଶନିଆ ଯେ ଆଣିଲର ॥ କଳହ କରଇ ବେଭାର ।୨୧।
କହ୍ନାଇ ଏହା ନ ସହିଲ ॥ ବୋଲେ ଦର୍ଶନି ଯେଣ ପଳା ।୨୨।
କହ୍ନାଇ ଆଣିଲ ଶହେକ ॥ ଦର୍ଶନୀଙ୍କୁ ତାସ ଦେଲେକ ।୨୩।
ଲଗିଲ କନ୍ଦୋଳ ବହୁତ ॥ କାଶୀ ମିଶ୍ର ହୋଏ ମଧ୍ୟସ୍ଥ ।୨୪।
କାଶୀ ମିଶ୍ର ଯେ ସମ୍ଭାଳିଲେ ॥ ଗୋଳ ନ କର ଏଠେ ଭଲେ ।୨୫।
ଭଉଣୀ ଶିଖି ମହାନ୍ତିର ॥ ମାଧବୀ ଦାସୀ ନାମ ତାର ।୨୬।

---

ଉତ୍ତର ଆଲୋଚନା କଲେ । ଏହି ସୁବ୍ୟାଖ୍ୟାତ ତର୍କ ସଭାର ସଭାପତି ରୂପେ ଶ୍ରୀଚୈତନ୍ୟଙ୍କୁ ବରଣ କରାଗଲା । ବହୁ ଆଲୋଚନା, ଯୁକ୍ତିତର୍କ, ଉତ୍ତର ବିମର୍ଷ ପରେ ଚୈତନ୍ୟ ତାଙ୍କର ନିଷ୍ପତ୍ତି ଜଣାଇଲେ—'ହରେରାମ' ମନ୍ତ୍ର ହିଁ ସାର । ନୀଳାଚଳରେ ଏହା ପୂର୍ବରୁ ଚାଲି ଆସୁଛି । ତଥାପି ଶିବାନନ୍ଦ ସେନ କହିଲେ— ଗୌଡ଼ରେ କିନ୍ତୁ 'ହରେକୃଷ୍ଣ' ନାମ ବହୁ କାଳରୁ ଚାଲିଛି । ଚୈତନ୍ୟ କହିଲେ—ବଙ୍ଗରେ 'ହରେକୃଷ୍ଣ' ମନ୍ତ୍ର ଚାଲିବାରେ ଆପତ୍ତି କରିବାର କିଛି ନାହିଁ । ତାପରେ ଓଡ଼ିଶାର 'ହରେରାମ' ଓ ବଙ୍ଗରେ 'ହରେକୃଷ୍ଣ' ମହାମନ୍ତ୍ର ନିର୍ଦ୍ଦିଷ୍ଟ ଭାବରେ ପ୍ରଚଳିତ ହେଲା ଏବଂ ଏ ଦୋହିଙ୍କୁ ସମସ୍ତେ ସ୍ୱୀକାର କଲେ ।

୧୯-୪୧ ଶିବାନନ୍ଦ ସେନ ପ୍ରତିବର୍ଷ ରଥଯାତ୍ରା ବେଳକୁ ଗୌଡ଼ରୁ ଯାତ୍ରୀମାନଙ୍କୁ ପୁରୀ ଆଣୁଥିଲେ । କହ୍ନାଇ ଖୁଣ୍ଟିଆ ମଧ୍ୟ ଉତ୍ତରରୁ ଯାତ୍ରୀମାନଙ୍କୁ ନେବା ଆଣିବା କାରବାର କରୁଥିଲେ । ଏହାଦ୍ୱାରା ଏମାନେ ଅର୍ଥ ଉପାର୍ଜନ କରୁଥିଲେ । ଥରେ ଶିବାନନ୍ଦ ସେନଙ୍କ ଯଜମାନ ଓ କହ୍ନାଇ ଖୁଣ୍ଟିଆଙ୍କ ଯଜମାନଙ୍କୁ ପୁରୀରେ ରଖାଇବା ନେଇ ଉଭୟଙ୍କ ମଧ୍ୟରେ କଳହ ଲାଗିଲା । ମାତ୍ର କାଶୀ ମିଶ୍ରଙ୍କ ମଧ୍ୟସ୍ଥତାରେ ଏ କଳହ ଦୂର ହେଲା । ଶିବାନନ୍ଦଙ୍କ ଯଜମାନମାନେ ଓ କହ୍ନାଇ ଆଣିଥିବା ଯାତ୍ରୀମାନେ ପୁରୀରେ ଛଟଯାତ୍ରାରେ ବସା ପାଇଲେ । ରଥଯାତ୍ରାକୁ ଆସୁଥିବା ଯାତ୍ରୀ ଏଠାରେ ଚାତୁର୍ମାସ୍ୟା କଟାଉଥିଲେ ।

୨୬ ୪୧ ଶିଖି ମହାନ୍ତିଙ୍କ ଭଉଣୀ ମାଧବୀ ଦାସୀ । ସେ ବୋଧହୁଏ ବାଳବିଧବା ଥିଲେ । ଭକ୍ତି ଭାବ ଓ ଭକ୍ତି ସଙ୍ଗୀତ ରଚନାରେ ତାଙ୍କର ମନ ବୁଡ଼ିଥିଲା । ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟଙ୍କ ଗହଣରେ ମଧୁର ସ୍ୱରରେ ଭକ୍ତି ସଙ୍ଗୀତ

ବଡାଇ ତାହାର ଭଗତ ।। ସଙ୍କୀର୍ତ୍ତନକୁ ତାର ମତ ।୨୭।
ନାମରେ ହୋଏ ମେତ୍ତୁ ଭେଳା ।। ଜପଇ ନାମ ଅନର୍ଗଳା ।୨୮।
ରହିଲ ବହୁତ ସେ ରୀତ ।। କୃଷ୍ଣ ରସରେ ଅପ୍ରମିତ ।୨୯।
ସ୍ୱାମୀ ପ୍ରଭୁର ସନ୍ନିଧିରେ ।। ଗାଅଇ ଗୀତ ସ୍ୱବସ୍ୱେଳେ ।୩୦।
ପ୍ରଭୁ ସେ ତାଙ୍କୁ କୃପା କଲ ।। ଗୋଷ୍ଠୀରେ ବସ ରୁ ବୋଇଲ ।୩୧।
ଇଷ୍ଟ ଗୋଷ୍ଠୀରୁ ଭକ୍ତେ ଗଲେ ।। ଆଉ ନ ଆସିବୁ ବୋଇଲେ ।୩୨।
ନାରୀଏ ଅଛୁ ଜାର ପାଶ ।। ହେଉ ସେ ଭଗତ ବିଶ୍ୱାସ ।୩୩।
ଆମ୍ଭଙ୍କ ନ ଥିବା ଏଠାଇଁ ।। ପ୍ରଭୁର ପାଖୁଣେ ଜଣାଇ ।୩୪।
ସ୍ୱାମୀ ବୋଇଲ ମନ ସଲ ।। ମାଧବୀ ଦାସୀ ହମତୁଳ ।୩୫।
ଭଗତ କାହିଁଛୁ କି ଆଉ ।। ତୁମେ ବା ବୋଲ ସେ ପଳାଉ ।୩୬।
ବୈଷ୍ଣବ ଭାବେ ଭେଳ ହୋଇ ।। ନାରୀ ସନ୍ନିଧେ ସବୁ ଯାଇ ।୩୭।
କାଷ୍ଠ ପାଷାଣ ନାରୀ ମୂର୍ତ୍ତି ।। ବୈଷ୍ଣବେ ଅଦୃଶ ଅଟନ୍ତି ।୩୮।
ରକତ ମାଉଁସର ଅଙ୍ଗ ।। ମାଧବୀ ସତ ପରସଙ୍ଗ ।୩୯।
ଏ କଥା ସତ ପରମାଣ ।। ତା ଆଗମନକୁ କାରଣ ।୪୦।
ମାଧବୀ ଆଉ ନ ଅଇଲ ।। ଇଷ୍ଟ ଗୋଷ୍ଠୀ ସଙ୍ଗ ଛାଡିଲ ।୪୧।
ପ୍ରଭୁ ସଙ୍ଗତ ଗୌଡ଼ିଆଏ ।। ସକଳ ଚଇତନ୍ୟ ନୋହେ ।୪୨।

---

ଗାନ କରି ସେ ପ୍ରତିଷ୍ଠା ଅର୍ଜନ କରିଥିଲେ ଏବଂ ଚୈତନ୍ୟଙ୍କ ସୁପାରିଶ କ୍ରମେ ସେ ଇଷ୍ଟ ଗୋଷ୍ଠୀରେ ବସୁଥିଲେ । ମାତ୍ର ଚୈତନ୍ୟଙ୍କ ଅନୁଗାମୀ କେତେକ ଗୌଡ଼ୀୟ ଭକ୍ତ ଏହାକୁ ଭିନ୍ନ ଦୃଷ୍ଟିରେ ଦେଖିଲେ । ଜଣେ ନାରୀ ଚୈତନ୍ୟଙ୍କ ଗହଣରେ ସ୍ଥାନ ପାଇ ଥିବାରୁ ଅନ୍ୟ ଭକ୍ତମାନେ ଚୈତନ୍ୟଙ୍କ ଇଷ୍ଟ ଗୋଷ୍ଠୀକୁ ଯିବାକୁ ଚାହିଁଲେ ନାହିଁ । ଜଗନ୍ନାଥ ଦାସ, ମାଧବୀ ଦାସୀଙ୍କ ଭକ୍ତିଭାବ ବୁଝିଥିଲେ; ସେଥୁ ସେ ମାଧବୀଙ୍କ ଆଗମନକୁ ସମର୍ଥନ କଲେ ସତ, ମାତ୍ର ନାରୀ ନିକଟରେ ପୁରୁଷର ସ୍ଖଳନ ଓ ବାତୁଳତା ପ୍ରକାଶ ପାଇବା ଓ ଧୈର୍ଯ୍ୟଚ୍ୟୁତ ଘଟିବା ସ୍ୱାଭାବିକ ବୋଲି କହିଲେ । ବୈଷ୍ଣବ ସହଜେ ଆବେଗ ପ୍ରବଣ; ସେଥିରେ ପୁଣି ନାରୀର ଉପସ୍ଥିତି ତାହାକୁ ଧ୍ୱଂସ ଆଡ଼କୁ ଟାଣି ନେଇଥାଏ । କାଷ୍ଠ ପାଷାଣର ନାରୀ ମୂର୍ତ୍ତି ମଧ୍ୟ ବୈଷ୍ଣବ ପକ୍ଷରେ ଦର୍ଶନୀୟ ନୁହେଁ । ଯାହା ହେଲେ ମଧ୍ୟ ମାଧବୀ ଦାସୀ ରକ୍ତ ମାଂସର ଶରୀରଧାରିଣୀ ନାରୀ । ତେଣୁ ତାଙ୍କର ସ୍ଖଳନ ଅସମ୍ଭବ ନୁହେଁ । ଏହି ଘଟଣାରେ ମାଧବୀ ଆଉ ଇଷ୍ଟ-ଗୋଷ୍ଠୀକୁ ଆସିଲେ ନାହିଁ ।

୪୨-୬୫ ଶ୍ରୀଚୈତନ୍ୟଙ୍କ ସହିତ ପୁରୀକୁ ଆସିଥିବା ଓ ପୁରୀରେ ଅବସ୍ଥାନ କରୁଥିବା ଗୌଡ଼ୀୟ ଭକ୍ତମାନେ ସମସ୍ତେ ଚୈତନ୍ୟଙ୍କ ପରି ମହାପୁରୁଷ ନ ଥିଲେ ।

ଯେକଳ ମୃଗର ନାଭିରେ || କସ୍ତୁରୀ ନ ଥାଇଟି ଭଲେ ।୪୩।
ସକଳ ଅରଣ୍ୟେ ଚନ୍ଦନ || ନ ଥାଇ ଜାଣ କଦାଚନ ।୪୪।
ଯେକଳ ଗୌଡ଼ୀୟ ବୈଷ୍ଣବ || ନୋହନ୍ତି ତ୍ରୈଲ ସ୍ୱରୂପ ।୪୫।
ସାନ ହରିଦାସ ଯେ ନାମେ || ଥିଲେ ସେ ସଙ୍ଗୀ ପୁରୀ ଧାମେ ।୪୬।
ମାଧବୀ ସଙ୍ଗେ ତାର ଭାବ || ବଢ଼ିଲା ଦିନୁ ଦିନ ସବ ।୪୭।
ଯାଏ ସେ ମାଧବୀ ସମୀପେ || ବୃଥା ଛଳନା କରି କେତେ ।୪୮।
ତଣ୍ଡୁଳ ଲବଣର ଅର୍ଥେ || ତା ପାଶେ ମିଳଇ ବୃଣତେ ।୪୯।
ଶିଖି ମହାନ୍ତି ନିବାରିଲେ || ତଥାପି ଦିବା ନ ଗ୍ରହିଲେ ।୫୦।
ସନ୍ଦେହ କଲେ ସାଇଷ୍ଟଭ || ବୋଇଲେ ଏହା ନ ଯୋଗାଇ ।୫୧।
ରାତ୍ର କାଳରେ ଦିନେ ଦେଖି || ସାନ ହରିଦାସକୁ ନିରେଖି ।୫୨।
ଶିଖି ମହାନ୍ତି ହାତୁ ମାଡ଼ || ଖାଇଲେ ହରିଦାସ ମୂଢ଼ ।୫୩।
ଗୌଡ଼ୀୟମାନେ ମେଳ ହେଲେ || ପ୍ରଭୁଙ୍କୁ ଯାଇ ଜଣାଇଲେ ।୫୪।
ପ୍ରଭୁ ବୋଇଲେ ଅଚ୍ଛା କଲ || ବଞ୍ଚେ କି ହରିଦାସ ଭଲ ।୫୫।
ମୂର୍ଖ ତା ବୁଦ୍ଧି ନ ଯୋଗାଇ || ଭର୍ତ୍ସନା କଲେ ଅନେକାଇ ।୫୬।

---

ତାଙ୍କ ଶିଷ୍ୟ ଜଣେ ଥିଲେ ସାନ ହରିଦାସ । ମାଧବୀ ଦାସୀଙ୍କ ପ୍ରତି ସେ କାମୁକତା ପ୍ରକାଶ କରିଥିଲେ । ବୃଥାରେ ଛଳନା କରି ସେ ବାରମ୍ବାର ମାଧବୀଙ୍କ ଘରକୁ ଯାଉଥିଲେ । ତଣ୍ଡୁଳ-ଲବଣ ଅଣିବା ପାଇଁ ସେ ମାଧବୀଙ୍କ ନିକଟକୁ ଯାଉଥିଲେ । ଏଥିରେ ସାଇଁ ପଡ଼ିଶା ଲୋକେ ସନ୍ଦେହ କରିବା ସ୍ୱାଭାବିକ । ମାଧବୀଙ୍କ ଭାଇ ସାନ ହରିଦାସକୁ ଆସିବାକୁ ବାରଣ କଲେ; ତଥାପି କିଛି ଫଳ ହେଲନାହିଁ । ଥରେ ରାତ୍ର କାଳରେ ତାଙ୍କ ଘରେ ସାନ ହରିଦାସକୁ ଦେଖି ଶିଖି ମହାନ୍ତି ମାଡ଼ ଦେଲେ । ମାଡ଼ଖାଇ ହରିଦାସ ଗୌଡ଼ୀୟ ସଙ୍ଗୀ ସହଚରମାନଙ୍କୁ କହିଲେ । ଗୌଡ଼ୀୟମାନେ ମେଳ ହୋଇ ଚୈତନ୍ୟଙ୍କୁ ଜଣାଇଲେ । ମାତ୍ର ଚୈତନ୍ୟ ଘଟଣା ସମ୍ପର୍କରେ ଅବହିତ ହୋଇ ସାନ ହରିଦାସର ମୂର୍ଖ ବୁଦ୍ଧିର ନାହିଁ ବୋଲି କହିଲେ । ନିନ୍ଦା ଓ ଅପମାନ ପାଇ ହରିଦାସ ପୁରୀରୁ ଯାଇ ନିଜ କୃତ ପାପର ପ୍ରାୟଶ୍ଚିତ୍ତ ପାଇଁ ଗଙ୍ଗାରେ ଝାସ ଦେଲେ । ଏକଥା ପୁରୀରେ ଜଣାଗଲା ପରେ ଗୌଡ଼ୀୟମାନେ ପୁରୀରେ ଚୈତନ୍ୟଙ୍କର ସଙ୍ଗ ତ୍ୟାଗ କରି ସ୍ୱଦେଶକୁ ଫେରିଯିବାକୁ ସ୍ଥିର କଲେ । ଏହି ଘଟଣାରେ ଚୈତନ୍ୟ ଗୌଡ଼ୀୟ ଭକ୍ତମାନଙ୍କ ଆଚରଣକୁ ସମର୍ଥନ କଲେନାହିଁ । ତାହା ହିଁ ଗୌଡ଼ୀୟ ସହଚରଙ୍କ ଈର୍ଷାର କାରଣ । ପୁଣି ଓଡ଼ିଆ ଭକ୍ତ, ବିଶେଷତଃ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ନିବିଡ଼ ସଖ୍ୟ ମଧ୍ୟ କେତେକ ଗୌଡ଼ୀୟ ଭକ୍ତଙ୍କର ଈର୍ଷାର କାରଣ ଥିଲା ।

| | | | |
|---|---|---|---|
| ହରିଦାସକୁ ବଡ଼ ବାଧା | ॥ | ସେଥ ପ୍ରଭୁଙ୍କୁ ଚଳେ ସିଧା | । ୫୭ । |
| ନୀଳାଚଳେ ସେ ନ ରହିଲ | ॥ | ଗଙ୍ଗାରେ ଯାଇ ଝାସ ଦେଲ | । ୫୮ । |
| ସମ୍ବାଦ ପାଇଣ ଗୌଡ଼ିଆ | ॥ | ମେଳ ହୋଇଣ ବର୍ଷରଥା | । ୫୯ । |
| ସିବା କି ରହିବା ଏ ଥାନେ | ॥ | ପ୍ରଭୁର ମନ ହୋଏ ଭିନ୍ନେ | । ୬୦ । |
| ପ୍ରଭୁ ଯଦି ଜଗା ଦାସକୁ | ॥ | ଅଠ ବଢ଼ାଇ ବୋଲିବାକୁ | । ୬୧ । |
| ଆଜ୍ଞନ୍ତ ସେ ଲଙ୍ଘନ କଲ | ॥ | ଆମ୍ଭେ ଚଳିଲେ ଚାକି ଗଲ | । ୬୨ । |
| ଅଣଉପଦେଶିଆ ଜଗାଦାସ | ॥ | ତାହାକୁ ସ୍ୱାମୀ ନାମେ ଘୋଷ | । ୬୩ । |
| ଆମ୍ଭଙ୍କୁ ଉପେକ୍ଷା ସେ କଲ | ॥ | ଏଠାରୁ ଚାଲ ସଙ୍ଗେ ସିବା | । ୬୪ । |
| ସେଥ ପ୍ରଭୁରୁ ସଙ୍ଗେ ଗଲେ | ॥ | ପଛକୁ ଲେଉଟି ନଇଲେ | । ୬୫ । |
| ସ୍ୱାମୀ ସ୍ୱରୂପ ଦାମୋଦର | ॥ | ଶିବାନନ୍ଦ ସେ ଗଦାଧର | । ୬୬ । |
| ଏମାନ ପ୍ରଭୁର ସନ୍ନିଧେ | ॥ | ବସି ବଗୃଲେ ଉଦ୍ରାଧ୍ୱ | । ୬୭ । |
| ଶିବାନନ୍ଦ ବୋଲେ ହକାର | ॥ | ତୋହର ଏ ନୋହେ ବେଭାର | । ୬୮ । |

---

୬୭-୯୩ ଶିବାନନ୍ଦ ସେନଙ୍କ ନେତୃତ୍ୱରେ ଦଳେ ଗୌଡ଼ୀୟ ଭକ୍ତ ଚୈତନ୍ୟଙ୍କ ନିକଟରେ ଉପସ୍ଥିତ ହୋଇ ପଳାଇ ଯାଇଥିବା ବୈଷ୍ଣବଙ୍କୁ ଫେରାଇ ଆଣିବାକୁ କହିଲେ । ଜଗନ୍ନାଥ ଦାସଙ୍କୁ ହାତରେ ନେଇ ସିବାର ଇଚ୍ଛା ଚୈତନ୍ୟଙ୍କର ଥିଲା; ମାତ୍ର ଦାସେ ମନାକଲେ । ତେଣୁ ଚିଠି ଲେଖି ପଠାଇବାର ବ୍ୟବସ୍ଥା ହେଲା । ଚୈତନ୍ୟ, ଜଗନ୍ନାଥଙ୍କୁ କହିଲେ—ତୁମେ ଚିଠାଉଟିଏ ଲେଖିଦଅ । ଜଗନ୍ନାଥ, ଚୈତନ୍ୟଙ୍କର ଭାବାବଳୀ ଅନୁସରଣରେ ଚିଠାଉ ଲେଖିଲେ । ଏ ଚିଠାଉ ଆଠଟି ଶ୍ଲୋକ ମାତ୍ର । ଏହାର ରଚୟିତା ଜଗନ୍ନାଥ ଦାସ । ଶିବାନନ୍ଦ ଚିଠାଉ ନେଇ ଯାଜପୁର ପର୍ଯ୍ୟନ୍ତ ଗଲେ, ଚିଠାଉ ଦେଲେ, ଚୈତନ୍ୟ ତୁମେ ସବୁ ଫେରି ଆସିବାକୁ ଏ ଚିଠାଉ ଲେଖିଛନ୍ତି ବୋଲି କହିଲେ । କେହି ତ ଫେରିଲେ ନାହିଁ; ବରଂ ଚୈତନ୍ୟଙ୍କର ଚିଠାଉ ନେଇ ଗୌଡ଼କୁ ଚାଲିଗଲେ । ଏ ଚିଠାଉର ଆଠଟି ଶ୍ଲୋକକୁ ଚୈତନ୍ୟଙ୍କ ରଚିତ ଶିକ୍ଷାଷ୍ଟକ ବୋଲି ଗୌଡ଼ରେ ପ୍ରଚାର ହେଲା । ମାତ୍ର ଏହାର ରଚୟିତା ଜଗନ୍ନାଥ ଦାସ ବୋଲି ଏଥିରୁ ଜଣାଯାଉଛି । ମାଧବ ପଟ୍ଟନାୟକ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଇଛନ୍ତି । ଏହି ଆଠଟି ଶ୍ଲୋକର ଭାବ ସମାନ ନୁହେଁ—ତେଣୁ ଏକ ନିର୍ଦ୍ଦିଷ୍ଟ ସମୟରେ ଏଗୁଡ଼ିକ ଏକାଧ କ୍ରମେ ରଚିତ ନୁହେ ବୋଲି କେହି କେହି ମତବ୍ୟକ୍ତ କରିଥାନ୍ତି । ମାତ୍ର ଚୈତନ୍ୟଙ୍କ ଭାବାବଳୀ ଅନୁସରଣ କରି କରି ଜଗନ୍ନାଥ ଦାସ ଲେଖିଥିବା ମାଧବ ପଟ୍ଟନାୟକ କହନ୍ତି । ବସ୍ତୁତଃ ଚୈତନ୍ୟଙ୍କ ଦିବ୍ୟୋନ୍ମାଦମୟ ଭାବଧାରା ଏହି ଶ୍ଲୋକାବଳୀର ଭିତ୍ତି—ଏ ବିଷୟରେ ଆଉ

ତୋର ଜମିଛି ଏଠେ ଥିଲେ || ଏବେ ସେ ସବେ ଚାଲିଗଲେ ।୬୯।
ଏ କଥା ନୋହେ ତୋତେ ଭଲ || ଲେଉଟି ଅଣାଅ ଛେଉର ।୭୦।
ପ୍ରଭୁ ଚାହିଁଲେ ସ୍ୱାମୀ ମୁଖ || ସ୍ୱାମୀ ସେ ବୋଇଲେ ସମ୍ମୁଖ ।୭୧।
ବୋଇଲେ ପ୍ରଭୁ ରୂ ନ ଚାହିଁ || ମୋ ଚାହିଁ ସଙ୍ଗେ ଗଲେ ସିନା ।୭୨।
ମୂର୍ଖ ନ ଯାଇ ତୋର ରୂଲେ || ଡାକିଲେ ଆସିବେ କି କଲେ ।୭୩।
ପ୍ରଭୁ ବୋଇଲେ ଲେଖ ଚିଠି || ଫେରିବା ଆସିବେ ଲେଉଟି ।୭୪।
ସ୍ୱାମୀ ଲେଖିଲେ ଆଠ ଶ୍ଲୋକ || ପ୍ରଭୁର ଭାବ ସେ ସେତେକ ।୭୫।
ପ୍ରଭୁଙ୍କୁ ଶ୍ଲୋକ ଶୁଣାଇଲେ || ସନ୍ତୋଷେ ପ୍ରଭୁ କୋଳ କଲେ ।୭୬।
ଶ୍ରୀବାଉଦ୍ର ସେ ନେଇଗଲେ || ପ୍ରଭୁ ଯେ ଲେଖିଛନ୍ତି ବୋଇଲେ ।୭୭।
ଯାଜନଗ୍ର ପରିଯନ୍ତରେ || ସକଳେ ଥିଲେ ସେଠାବରେ ।୭୮।
କେହି ଲେଉଟି ନ ଆସିଲେ || ଶ୍ରୀବାସଙ୍କ ସେ ସଙ୍କେତରେ ।୭୯।
ସକଳେ ଗଲେ ଗୌଡ଼ମାର୍ଗେ || ସେ ଚାହିଁ ଏକ ବଡ଼ ଭାଗେ ।୮୦।
ବୃନ୍ଦାବନରେ ଯାଇ ମିଳେ || ରୂପ ସନାତନେ ଭେଟିଲେ ।୮୧।
ରୂପ ରଖାଇଲେ ସେ ଆନନ୍ଦ || ଗିରି ଗୋବର୍ଦ୍ଧନ ପାବନ୍ତ ।୮୨।
ଥିଲେ ବଲ୍ଲଭ ଚାଟମାନେ || ଗୌଡ଼ୀୟଙ୍କୁ ନରେଖି ତକ୍ଷଣେ ।୮୩।
କଳି ଲାଗଇ ଘୋରତର || ମାଡ଼ଖାଇ ଗୌଡ଼ୀୟା ଜରଜର ।୮୪।
ଗୌଡ଼ୀୟା ବୋଇଲେ ଦେବୁ || ସବୁ ଅରଜନ ଖାଇବୁ ।୮୫।

---

ସନ୍ଦେହ ନ ଥାଇପାରେ । ଶ୍ଲୋକ ଗୁଡ଼ିକରେ ଅଶେଷ ତନ୍ମୟତା ଓ ବୈଷ୍ଣବୋଚିତ ଆଚରଣ ଫୁଟି ଉଠିଛି । ଏ ଗୁଡ଼ିକର ଉଦ୍ଦେଶ୍ୟ—ବିମୁଖ ଭକ୍ତ ଗୋଷ୍ଠୀକୁ ବାଟକୁ ଆଣିବା । ଯାଜପୁରରେ ଅବସ୍ଥାନ କରୁଥିବା ଯେଉଁ ଭକ୍ତ ଗୋଷ୍ଠୀ ଚୈତନ୍ୟଙ୍କର ଆଠଟି ଶ୍ଲୋକ ପଢ଼ିଲେ ପରେ ମଧ୍ୟ ପୁରୀକୁ ଫେରିଲେ ନାହିଁ, ସେମାନଙ୍କ ସମ୍ପର୍କରେ ନୂତନ ସମ୍ବାଦମାନ ମାଧବଙ୍କ ବର୍ଣ୍ଣନାରୁ ଜଣାଯାଏ । ସେମାନଙ୍କ ମଧ୍ୟରୁ ଏକ ବଡ଼ ଭାଗ ନବଦ୍ୱୀପରୁ ବୃନ୍ଦାବନ ଗଲେ । ରୂପ ସନାତନଙ୍କ ସହିତ ସମ୍ମିଳିତ ହେଲେ । ମାତ୍ର ସେଠାରେ ଗିରି ଗୋବର୍ଦ୍ଧନରେ ଶ୍ରୀବଲ୍ଲଭଙ୍କ ଶିଷ୍ୟମାନେ ପୂଜା କରୁଥିବା ଗୋପାଳଙ୍କ ସେବା ପୂଜାକୁ ଅଧିକାର କରି ମନ୍ଦିରର "ସବୁ ଅରଜନ ଖାଇବୁ" ବୋଲି ଦାବି କଲେ । ବଲ୍ଲଭଙ୍କ ଶିଷ୍ୟ ଓ ଗୌଡ଼ୀୟ ଭକ୍ତଙ୍କ ମଧ୍ୟରେ କଳି ଲାଗିଲା । ଏହି କଳିରେ ଗୌଡ଼ୀୟ ଭକ୍ତମାନେ ବଲ୍ଲଭଙ୍କ ଶିଷ୍ୟଙ୍କ ହାତରୁ ମାଡ଼ ଖାଇଲେ । ଏକଥା ଉତ୍ତରରୁ ଫେରି କହ୍ନାଇ ଖୁଣ୍ଟିଆ ପୁରୀରେ ଶ୍ରୀଚୈତନ୍ୟ ଓ ଅନ୍ୟମାନଙ୍କ ଆଗରେ ପ୍ରକାଶ କଲେ । ଯେଉଁମାନେ ପୁରୀରୁ ମାଡ଼ଖାଇ ପଳାଇଥିଲେ,

ଗୋପାଳ ସେବା ନ ଗ୍ରହିଲେ ॥ ଜଳ ଲଗିଲ ତହୁଁ ଭଲେ ।୮୬।
ଶ୍ରୀବଲ୍ଲଭର ସେବକେ ॥ ମାଗିଲେ ମାଡ଼ ତହୁଁ ଯୋଗେ ।୮୭।
ବଙ୍ଗଳେ ଗୌଡ଼ିଆ କେତେକେ ॥ ଛୁଡ଼ି ଗଲେକ ଦେଥୁ ଥୋକେ ।୮୮।
ରହିଲେ କଛୁ ସେହି ଆନେ ॥ ରୂପ ଗୋସାଇଁ ସନ୍ନିଧାନେ ।୮୯।
ରଥକୁ ସମ୍ବାଦ ଶୁଣିଲୁ ॥ କହିଲାଇ ଆସି ବୋଇଲରୁ ।୯୦।
ପ୍ରଭୁଙ୍କୁ କହିଲାଛ ବୋଇଲ ॥ ପ୍ରଭୁ ବୋଇଲ ଭଲ ହେଲ ।୯୧।
ମାଡ଼ ଆ ସ୍ୱଭାବ ଯାହାର ॥ ମାଡ଼ ଖାଇବେ ନିରନ୍ତର ।୯୨
ତଥାପି ଚେତା ନ ପଶିବ ॥ ଯାହାର ଯେମନ୍ତ ସ୍ୱଭାବ ।୯୩।

## ସ୍ୱାମୀର ଅଷ୍ଟଶ୍ଳୋକ

ଚେତୋ ଦର୍ପଣ ମାର୍ଜନଂ ଭବମହାଦାବାଗ୍ନି ନିର୍ବାପଣମ୍
ଶ୍ରେୟଃ କୈରବ ଚନ୍ଦ୍ରିକା ବିତରଣଂ ବିଦ୍ୟାବଧୂ ଜୀବନମ୍ ।
ଆନନ୍ଦାମ୍ବୁଧିବର୍ଦ୍ଧନଂ ପ୍ରତିପଦଂ ପୂର୍ଣ୍ଣାମୃତାସ୍ୱାଦନମ୍
ସର୍ବାତ୍ମସ୍ନପନଂ ପରଂ ବିଜୟତେ ଶ୍ରୀକୃଷ୍ଣ ସଙ୍କୀର୍ତ୍ତନମ୍ ।୧।

କୃଷ୍ଣର ଗୁଣ କୀର୍ତ୍ତନରେ ॥ ମନ ଦର୍ପଣ ପରିଷ୍କାରେ
ଅସ୍ମା କଳୁଷ ଦୂର ହୋଇ ॥ ଉତ୍ତମ ଶ୍ରବନ୍ତି ଝରଇ
ସଙ୍କୀର୍ତ୍ତନ ଯେ ଶିକ୍ଷା ଦାତା ॥ ଭକ୍ତିର ସଞ୍ଚାର କରତା
ନିର୍ମଳ ପ୍ରେମ ବୃଦ୍ଧି ପାଇ ॥ କୃଷ୍ଣ ପ୍ରେମ ମଧୁ ଚଖାଇ
ଇନ୍ଦ୍ରିୟ ସବ ହୋଏ ତୃପ୍ତ ॥ କୃଷ୍ଣ ନାମ ସଙ୍କୀର୍ତ୍ତନ ଏମନ୍ତ

ନାମ୍ନାମକାରି ବହୁଧା ନିଜ ସର୍ବଶକ୍ତି—
ସ୍ତତ୍ରାର୍ପିତା ନିୟମିତଃ ସ୍ମରଣେ ନ କାଲଃ ।
ଏତାଦୃଶୀ ତବ କୃପା ଭଗବାନ ମମାପି
ଦୁର୍ଦ୍ଦୈବମୀଦୃଶମିହାଜନି ନାନୁରାଗଃ ।୨।

---

ସେମାନେ ବୃନ୍ଦାବନରେ ମଧ୍ୟ ମାଡ଼ ପାଇଲେ । ଏହା ଶୁଣି ଚୈତନ୍ୟ କହିଲେ—ଯାହାର ମାଡ଼ ଖାଇବା ସ୍ୱଭାବ, ସେ ଯେ କୌଣସି ସ୍ଥାନରେ ହେଲେ ମାଡ଼ ହିଁ ଖାଇବ । ଏଥିରେ ବିଚିତ୍ରତା କିଛିନାହିଁ ।

[ ଅଣପସ୍ୱଣ ]

ତୁମର ନାମ ଯେ ଅଶେଷ ॥ ବହୁ ନାମ ନେ ବହୁଅଛ
ସକଳ ନାମେ ତୁମ ଶକ୍ତି ॥ ପ୍ରକଟ ଦର୍ଶିଛେ ବେଦନ୍ତ
ନାମ ସ୍ମରଣ କୀର୍ତ୍ତନରେ ॥ ବେଳ ଅବେଳ ଅବସ୍ଥରେ
ହେ ପ୍ରଭୁ ! ଏହା ତୁମ କୃପା ॥ ମାତ୍ରକ ମୁ ଅଟେ ଦୁର୍ଭଗା
ମୋହ ହୃଦୟେ ଶ୍ରଦ୍ଧା ନାହିଁ ॥ ନାମକୁ ବରଗ ନେହଇ

ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟ ସଦା ହରିଃ । ୩ ।

ତୃଣରୁ ନମ୍ର ବୋଲଅ ॥ ବୃକ୍ଷ ଠାରୁଁ ସହିଷ୍ଣୁ ହୁଅ
ଆପଣା ସୁଖ ଦୁଃଖ ଭୁଲି ॥ ଅପରେ ପ୍ରେମ ଦଅ ଢାଳି
ସର୍ବଦା ବୋଲ ହରି ନାମ ॥ ଏ ଠାରୁଁ ନାହିଁ ଅନ୍ୟ ଧାମ

ନଧନଂ ନଜନଂ ନସୁନ୍ଦରୀମ
କବିତାଂ ବା ଜଗଦୀଶ କାମୟେ ।
ମମ ଜନ୍ମନି ଜନ୍ମନୀଶ୍ୱରେ
ଭବତାଦ୍ ଭକ୍ତିରହୈତୁକୀ ତ୍ୱୟି । ୪ ।

ନ ଲୋଡେ ମୁହିଁ ଧନଜନ ॥ ଅବା ସୁନ୍ଦରୀ ପ୍ରିୟା ରତ୍ନ
କବିତା ରଚ୍ଛି କବି ହେବ ॥ ହେ ପ୍ରଭୁ ! ମୁଁ କପାଁ ବାଞ୍ଛିବ
ପ୍ରାର୍ଥନା କରଇ ସକଳେ ॥ ପ୍ରଭୁ ହୋ ! ଜନ୍ମଜନ୍ମାନ୍ତରେ
ତୁମର ଅନୁଗତ ହୋଇ ॥ ଯେମନ୍ତ ଭକ୍ତି କରୁଥାଇ

ଅୟି ନନ୍ଦତନୁଜ କିଙ୍କରମ୍
ପତିତଂ ମାଂ ବିଷମେ ଭବାମ୍ବୁଧୌ ।
କୃପୟା ତବ ପାଦପଙ୍କଜମ
ସ୍ଥିତ ଧୂଳୀ ସଦୃଶଂ ବିଚିନ୍ତୟ । ୫ ।

ହେ କୃଷ୍ଣ ନନ୍ଦ ଗୋପସୁତ ॥ କୃପା କରହେ ଗୋପୀନାଥ
ପତିତ ମୂର୍ଚ୍ଛି ସଂସାରେ ॥ ଭବସାଗରେ ବୁଡ଼ିମରେ
ପଦ୍ମ ଚରଣରେ ତୁମର ॥ ଧୂଳି କଣାଏ ବୋଲି ଧର

ନୟନଂ ଗଳଦଶ୍ରୁଧାରୟା
ବଦନଂ ଗଦ୍‌ଗଦରୁଦ୍ଧୟା ଗିରା ।
ପୁଲକୈର୍ନିଚିତଂ ବପୁଃ କଦା
ତବ ନାମ ଗ୍ରହଣେ ଭବିଷ୍ୟତି । ୬ ।

ଜଗନ୍ନାଥ ହେ ଚକାଆଖି ॥ ସେ ଦିନ କେବେ ଆସିବକି
ଯେବେ ତୋ ନାମ ଉଚ୍ଚାରଣ ॥ କରୁ ଚକ୍ଷୁ ଅଶ୍ରୁ ମୋଚନ
ତୋହର ନାମ ଉଚ୍ଚାରଲେ ॥ କଣ୍ଠୁ ମୋ ରୋଧ ହେବ ଭଲେ
ଆନନ୍ଦେ ସମସ୍ତ ଶରୀର ॥ ପୁଲକେ ହେବ ଥର ଥର

ଯୁଗାୟିତଂ ନିମେଷେଣ ଚକ୍ଷୁଷା ପ୍ରାବୃଷାୟିତମ
ଶୂନ୍ୟାୟିତଂ ଜଗତ୍ ସର୍ବଂ ଗୋବିନ୍ଦ ବିରହେଣ ମେ । ୭ ।

ତୁମର ବିଚ୍ଛେଦେ ମୋ ହୃଦ ॥ ଉଦିତ ହେଉଛି ଅମାପ
ମୁହୂର୍ତ୍ତ ଏକ ଯୁଗ ସମ ॥ ଚକ୍ଷୁରୁ ଝରେ ଧାରାବାର
ସକଳ ଜଗ ଶୂନ୍ୟବୋଧ ॥ ତୁମ ବିରହ ଦୁରୁବାଧ

ଆଶ୍ଲିଷ୍ୟ ବା ପାଦରତାଂ ପିନଷ୍ଟୁ ମା
ମଦର୍ଶନାନ୍ମର୍ମହତାଂ କରୋତୁ ବା ।
ଯଥା ତଥା ବା ବିଦଧାତୁ ଲମ୍ପଟୋ
ମତ୍ ପ୍ରାଣ ନାଥସ୍ତୁ ସ ଏବ ନାପରଃ । ୮ ।

ହେ କୃଷ୍ଣ ! ମୋତେ କଷ୍ଟ ଦିଅ ॥ ଅଥବା ତୋ ପାଦେ ଝଟାଅ
କର ତୁ ମୋରେ ଅଲିଙ୍ଗନ ॥ ଅଥବା ନ ଦିଅ ଦର୍ଶନ
ପ୍ରେମରେ ରତ ମତ ହେଲ ॥ ଯାପନ ସ୍ୱର୍ଣ୍ଣି ଉନ୍ମତଳ
ତଥାପି ତୁ ମୋର ପର୍ସ୍ୱଣ ॥ ତୋ ଭିନ୍ନ ଗତ ନାହିଁ ଆନ
ସୁଧାର ଭାବ ଏ ସରବ ॥ କହିଲି ସ୍ୱାମୀ ଆଠ ଶ୍ଲୋକ

ଇତି ଷଷ୍ଠ ଅଧ୍ୟାୟ ସମ୍ପୂର୍ଣ୍ଣ



# ସପ୍ତମ ଅଧ୍ୟାୟ

•

ଶୁଣ ହୋ ଚରିତ ବୈଷ୍ଣବ ॥ ସର୍ବ ବୃଜିନ ନାଶ ଯିବ । ୧ ।
ସ୍ୱାମୀ ବୋଇଲେ ମନ୍ତ୍ର ନେବ ॥ ରାଗମାର୍ଗେ କୃଷ୍ଣ ଭଜିବ । ୨ ।
ଛାଡ଼ିବ ଯାହାସ୍ତ୍ର ପୁରାଣ ॥ ଏଥେଟି କିସ କାର୍ଯ୍ୟ ପୁଣ । ୩ ।
ପ୍ରଭୁ ବୋଇଲେ ଦୀକ୍ଷା ନିଅ ॥ ବଳରାମଠାଇଁ ତୁ ଯାଅ । ୪ ।
ବଚନ ଶିଖ ବଳରାମ ॥ ତା ତହୁଁ ମନ୍ତ୍ର ନିଅ ପୁଣ । ୫ ।
ତା ତହୁଁ ଶୁଣୁ ନାହିଁ ଆନ ॥ ଭଗତ ଶ୍ରବ ଗଣଆନ । ୬ ।
ସ୍ୱାମୀ ଯେ ମନ୍ତ୍ର ଦୀକ୍ଷା ନେଲା ॥ ବଳରାମଙ୍କୁ ପ୍ରଣମିଲା । ୭ ।
କାଶୀ ମିଶ୍ର ଏହା ଶୁଣିଲେ ॥ ସ୍ୱାମୀରେ ବହୁ କୋପ କଲେ । ୮ ।X
ବ୍ରାହ୍ମଣ ହୋଇ ଶୂଦ୍ରମୁଖୁ ॥ ମନ୍ତ୍ରଦୀକ୍ଷା ତୁ ଉପଦେଶୁ । ୯ ।
ଏଥିଟି ନାହିଁ ଅଟବସ୍ତ ॥ କଳିକାଳର ଦୁରାଚାର । ୧୦ ।
ସ୍ୱାମୀ ବୋଇଲ ବଳ ସ୍ତବେ ॥ ଦୋଷ ନ ବାଧଇଟି ଲବେ । ୧୧ ।
କିବା ଶୂଦ୍ର କିବା ବ୍ରାହ୍ମଣ ॥ ମନୁଷ୍ୟ ସମସ୍ତ ସମାନ । ୧୨ ।@
ନୀଚ ସ୍ଥାନରେ ଥିଲେ ରତ୍ନ ॥ ଗ୍ରହଣ କରିବାଟି ଧର୍ମ । ୧୩ ।
ଏଣୁ ମୋହର ମନ ଦୃଢ଼ ॥ ମୁଣ୍ଡ ଭଳି ବଳରାମରେ । ୧୪ ।
ଏଥକୁ ତୁ କପଁା ଚଟକ୍ ॥ ରାମ ମାର୍ଗେଣ ଅମ୍ଭେ ଭଜୁ । ୧୫ ।
ଶୁଣିଲେ ଏହା ସାର୍ବଭୌମ ॥ ମେରଥ୍ ଲକ୍ଷ୍ମୀଧର ପୁଣ । ୧୬ ।
ବୋଇଲେ କଣ୍ଟୁ ହିଁ ନ କହ ॥ ଜଗନ୍ନାଥର ଶିଖ ଦେହ । ୧୭ ।
କାଶୀ ମିଶ୍ରଙ୍କୁ ପ୍ରବୋଧିଲେ ॥ ସ୍ୱାମୀରେ ଶ୍ରଦ୍ଧା ବଢ଼ାଇଲେ । ୧୮ ।

•

---

X ୮- ଖ ପୋଥି—ବହୁତ କ୍ରୁପିଲେ । @ ୧୨- ବୈଷ୍ଣବ ସମସ୍ତ ସମାନ ।

---

୧-୧୮ ସ୍ୱାମୀ ଜଗନ୍ନାଥ ଦାସ 'ଅଣଉପଦେଶିଆ' ଥିଲେ - ଅର୍ଥାତ୍ ସେ ମନ୍ତ୍ରୀଦୀକ୍ଷା ନେଇ ନ ଥିଲେ । ଏଥିଲାଗି ଗୌଡ଼ୀୟ ଭକ୍ତଙ୍କ ମଧ୍ୟରୁ ଅନେକେ ଜଗନ୍ନାଥ ଦାସଙ୍କ ସହିତ ଚୈତନ୍ୟଙ୍କର ବନ୍ଧୁତାକୁ ଭଲ ଆଖିରେ ଦେଖି ନ ଥିଲେ । ମାଧବୀ ଦାସୀ—ଶ୍ରେଷ୍ଠ ହରିଦାସ ଘଟଣାରେ ଜଗନ୍ନାଥ ଦାସଙ୍କ ବିରୁଦ୍ଧରେ ଏ ଅଭିଯୋଗ ସାଧାରଣ ଭାବରୁ ଶୁଣାଗଲା । ଏହାପରେ ଜଗନ୍ନାଥ ଦାସ ମନ୍ତ୍ର ଦୀକ୍ଷା ନେବାକୁ ଇଚ୍ଛା କଲେ । ରାଗ ମାର୍ଗରେ କୃଷ୍ଣ ଭଜନ କରିବା ଓ ତଦନୁ-ଯାୟୀ ଶାସ୍ତ୍ର ପୁରାଣ ପାଠ ପଠନ ପ୍ରତି ଅଶ୍ରଦ୍ଧା ଜାତ ହେବା ଜଗନ୍ନାଥ ଦାସଙ୍କ ଜୀବନରେ ଏଠାରୁ ଆରମ୍ଭ ହେଲା । ମାଧବଙ୍କ ବର୍ଣ୍ଣନାର କ୍ରମ ଦୃଷ୍ଟିରୁ ଏହା ଖ୍ରୀ: ୧୫୧୭-୧୮ ହୋଇପାରେ । ମନ୍ତ୍ରଦୀକ୍ଷା ବଳରାମ ଦାସଙ୍କ ଠାରୁ ଗ୍ରହଣ

ଏ ତତ୍ତ୍ୱ କହୁତନ ଅନ୍ତେ ॥ ପ୍ରଭୁ ସେ ରଘୁନାଥ ଦାସେ ।୧୯।
ହକାର ବୋଲେ ଏଥି ନିଅ ॥ ଗୋବର୍ଦ୍ଧନ ଶିଳାଏ ସମ୍ଭାଅ ।୨୦।
ଏହୁଟି ଶିଳା ଶାଳଗ୍ରାମ ॥ ଏହାଙ୍କୁ କରେ ନମଣ ।୨୧।
ସାର୍ବଭୌମ ଲକ୍ଷ୍ମୀଧର ଶୁଣିଲେ ॥ ବସ୍ତ୍ରରେ ହେତୁ ମୌନ ହେଲେ ।୨୨।
ଶୂଦ୍ରର ହେଲା ଅଧିକାରେ ॥ ଶାଳଗ୍ରାମ ଶିଳା ପୂଜାରେ ।୨୩।
ଶୂଦ୍ରକୁ ବିପ୍ର କି ବୋଲଇ ॥ ଏଥକୁ ଆନ କି ସମ୍ଭାଷ ।୨୪।
ନାହିଁ ନୋହିବା କଥା ହେଲା ॥ କାଶୀ ମିଶ୍ର ଯେ କୋପ କଲା ।୨୫।
ଅଚ୍ୟୁତ ଅନନ୍ତ ଯଶୋବନ୍ତ ॥ ବଳରାମ ଯେ ଜଗନ୍ନାଥ ।୨୬।
ପ୍ରଭୁର ତୁଲେ ନିତ୍ୟ ରସି ॥ ସାହାସ୍ତୁ ପୂରବେ ଦେଖି ।୨୭।

---

୨୦- ବେଗେ ନିଅ । ୨୧- ଏ ଅଟେ ।

---

କରିବା ପାଇଁ ଶ୍ରୀଚୈତନ୍ୟ ଇଙ୍ଗିତ ଦେଲେ । କାରଣ ବଳରାମ ଥିଲେ ବଚନ ସିଦ୍ଧ ଓ ବୟୋଜ୍ୟେଷ୍ଠ । ଭକ୍ତ ସ୍ତରରେ ଏକନିଷ୍ଠତାରେ ସେ ଥିଲେ ଅଦ୍ୱିତୀୟ । ଦାସେ ବଳରାମଙ୍କ ଠାରୁ ମନ୍ତ୍ର ଦୀକ୍ଷା ନେଲେ; ମାତ୍ର କାଶୀ ମିଶ୍ର ଏହି ଘଟଣାରେ ଦାସଙ୍କ ପ୍ରତି ରୁଷ୍ଟ ହେଲେ ଓ ବିରକ୍ତି ପ୍ରକାଶ କଲେ । କ୍ରୋଧର କାରଣ— ଜଣେ ଶାସନୀ ବ୍ରାହ୍ମଣ, ଶୂଦ୍ରଠାରୁ ମନ୍ତ୍ର ଦୀକ୍ଷା ନେବା । ଏହା ଉଚିତ ବ୍ୟବହାର ନୁହେଁ; ବରଂ ଏହା କଳିକାଳର ଏକ ଦୁରାଚାର । ଜଗନ୍ନାଥ କିନ୍ତୁ ଆତ୍ମପକ୍ଷ ସମର୍ଥନ କଲେ—କେବଳ ଆତ୍ମପକ୍ଷ ସମର୍ଥନ କଲେନାହିଁ, ଜାତି ପ୍ରଥା ତା ବ୍ରାହ୍ମଣ ଶୂଦ୍ର ଭେଦ ଯେ ସମାଜର ଏକ କଳଙ୍କ, ଏ ନିସ୍ପୃତ ପୂର୍ବୋଦୃଷ୍ଟି ଫିଟାଇବାରେ ଜଗନ୍ନାଥ ଦାସଙ୍କ ବ୍ୟକ୍ତିତ୍ୱ ଓ ମାନସିକ ସଞ୍ଚାର ସେ ଯୁଗରେ ଅଦ୍ୱିତୀୟ । ଯେତେବେଳେ ଓଡ଼ିଶା ଏକ ନିନ୍ଦିତ ଅଧଃପତନର ଅନ୍ଧକାର ଗର୍ଭକୁ ଟାଣି ହୋଇ ଯାଉଥିଲା—ଅନ୍ୟଥା ସ୍ୱାମୀ ଜଗନ୍ନାଥ ଦାସଙ୍କର ଏହି ଉନ୍ନତ ପୂର୍ବୋଦୃଷ୍ଟି ସମାଜର ଗତିକୁ ବଦଳାଇ ପାରିଥାନ୍ତା ଏବଂ ସମସାମୟିକ ଭାରତବର୍ଷରେ ଏହା ଅନ୍ୟତ୍ର ଗୁରୁତ୍ୱପୂର୍ଣ୍ଣ ମନେ ହୋଇଥାନ୍ତା ।

୧୯-୨୦ ଶ୍ରୀଚୈତନ୍ୟ ଏହାର କହୁତନ ପରେ ଶୂଦ୍ର ରଘୁନାଥ ଦାସ ଗୋସ୍ୱାମୀଙ୍କୁ ସେ ପ୍ରତିଦିନ ପୂଜା କରୁଥିବା ଗୋବର୍ଦ୍ଧନ ଶିଳା (ଶାଳଗ୍ରାମ) ଅର୍ପଣ କଲେ । ସେ ପର୍ଯ୍ୟନ୍ତ ରଘୁନାଥ ଦାସ ଗୋସ୍ୱାମୀ ନୀଳାଚଳରେ ଶ୍ରୀଚୈତନ୍ୟଙ୍କର ନିତ୍ୟ ସଙ୍ଗୀ ଥିଲେ । ଶୂଦ୍ରକୁ ଶାଳଗ୍ରାମ ଶିଳାର ପୂଜାଧିକାର ଦେବା ଭଳି ଏକ ଚାଞ୍ଚଲ୍ୟକର ଘଟଣା ସେତେବେଳେ ନୀଳାଚଳର ସ୍ମାର୍ତ୍ତ ଗୋଷ୍ଠୀରେ ଖୁବ୍ ଆଲୋଡ଼ନ ସୃଷ୍ଟି କଲା । ବାସୁଦେବ ସାର୍ବଭୌମ ଓ ଲେଙ୍କ ଲକ୍ଷ୍ମୀଧର ପ୍ରମୁଖ

| | | |
|---|---|---|
| ସଙ୍କୀର୍ତ୍ତନରେ ମତ୍ତ ହେଲେ ‖ | ବିଧି ମାର୍ଗ ସେ ଛାଡ଼ିଲେ | ।୨୮। |
| କୃଷ୍ଣର ଲୀଳା ରସ ଯେତେ ‖ | ଗୋପୀ ସ୍ୱଭାବ ପରସଙ୍ଗେ | ।୨୯। |
| ମନେ ହୁଅନ୍ତି ସଦା ଘୂର୍ଣ୍ଣି ‖ | ରାଗ ମାର୍ଗକୁ ପରମାଣି | ।୩୦। |
| ଏଥି ଅନ୍ତରେ ଶୁଣ ଲେସ ‖ | ଗଜପତି ବାର୍ତ୍ତା ବିଶେଷ | ।୩୧। |
| କୃଷ୍ଣଦେବ ରାୟ ସଙ୍ଗତେ ‖ | ଯୁଦ୍ଧ ହୋଇଲା ବହୁମତେ | ।୩୨। |
| ଗଜପତିର ବଳବୀର୍ଯ୍ୟ ‖ | କାହୁଁ କଳିବ କୃଷ୍ଣରାୟ | ।୩୩। |
| ଦୁର୍ଭିକ୍ଷ ହେଲାକ ଭୀଷଣ ‖ | ରକ୍ଷହୋ ଆରତ ଭଞ୍ଜନ | ।୩୪। |
| ଶସ୍ୟ ଫସଲ ଯେ ହାନି ହେଲା ‖ | ଜଳ ବିହୁନେ ନାଶ ଗଲା | ।୩୫। |
| ପ୍ରଜାଏ ଡାକନ୍ତି ଆରତେ ‖ | ରଖ ହେ ପ୍ରଭୁ ଜଗନ୍ନାଥେ | ।୩୬। |

ବଶିଷ୍ଟ ସ୍ମାର୍ତ୍ତମାନେ ଏହା ଶୁଣିଲେ; ମାତ୍ର ଏଥିରେ ପ୍ରତିକ୍ରିୟା ପ୍ରକାଶ କରିବା ପରିବର୍ତ୍ତେ ମୌନ ରହିଲେ । କାଶୀଶ୍ୱର ମିଶ୍ର ଏହି ଘଟଣାରେ ଚୈତନ୍ୟଙ୍କ ପ୍ରତି କ୍ରୋଧ ପ୍ରକାଶ କଲେ । କିନ୍ତୁ ମହାତ୍ମା ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟ ଜାତିପ୍ରଥାର ଲୋପ ସାଧନ ପାଇଁ ଯେଉଁ ମହାନ୍ ସାମାଜିକ ଦୃଷ୍ଟି ଫିଟାଇବାକୁ ଉଦ୍ୟତ ହୋଇଥିଲେ, ତା ନିକଟରେ ସ୍ମାର୍ତ୍ତମାନଙ୍କର ବିରୋଧର କୌଣସି ପ୍ରଭାବ ପ୍ରାୟ ନ ଥିଲା ବୋଲି ଏଥିରୁ ଜଣାଯାଉଛି । ବୈଧି ମାର୍ଗ ପରିତ୍ୟାଗ କରି ରାଗ ମାର୍ଗରେ ଭଜକୀର୍ତ୍ତନ କରିବାର ରୀତି ଏହି ସମୟରୁ ଆରମ୍ଭ ହେଲା । ଶାସ୍ତ୍ର ପୁରାଣକୁ ଉପେକ୍ଷା କରି ପଞ୍ଚସଖା ଚୈତନ୍ୟଙ୍କ ସହିତ ସଙ୍କୀର୍ତ୍ତନରେ ମତି ନିଜ ଦେଲେ । ଗୋପୀ ସ୍ୱଭାବରେ କୃଷ୍ଣ ଭଜନର ପନ୍ଥା ରାୟ ରାମାନନ୍ଦ ଶ୍ରୀଚୈତନ୍ୟଙ୍କୁ ବତାଇ ଥିଲେ । ନୀଳାଚଳରେ ପଞ୍ଚସଖା ଏହି ପନ୍ଥାକୁ ଅନୁସରଣ କରି ଚୈତନ୍ୟଙ୍କ ସହିତ ରାଗମାର୍ଗର ସାଧନାରେ ନିବିଷ୍ଟ ରହିଲେ । ରାଗାନୁଗା ଭକ୍ତି ଚୈତନ୍ୟଙ୍କ ଆବିଷ୍କାର ବା ଗୌଡ଼ର ଅବଦାନ ବୋଲି ଏଥିରୁ କିଛି ସୂଚନା ମିଳୁ ନାହିଁ । ଅନ୍ୟ ପକ୍ଷରେ ଏହା ନୀଳାଚଳର ପ୍ରତିଷ୍ଠିତ ମତବାଦ ବୋଲି ଏଥିରୁ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଉଅଛି । ପଞ୍ଚସଖା ଚୈତନ୍ୟଙ୍କ ସହିତ ସମ୍ମିଳିତ ହୋଇ ରାଗାନୁଗା ଭକ୍ତି ଧର୍ମର ଅନୁକୂଳ ଭଜନ କୀର୍ତ୍ତନରେ ମନୋନିବେଶ କଲେ । ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନା କ୍ରମରୁ ଜଣାଯାଉଛି ଯେ ଏହା ପ୍ରାୟ ଖ୍ରୀ: ୧୫୧୫-୧୬ର ପାଖାପାଖି ସମୟରେ ସାଧିତ ହୋଇଥିଲା—ଏଣିକିଠାରୁ ରାଗାନୁଗା ଭକ୍ତି ଉତ୍କଳୀୟ ବୈଷ୍ଣବ ଧର୍ମର ଅଭିମୁଖ୍ୟ ଅବାଧିତ ଭାବରେ ଗତି କଲା ।

୩୧-୬୧ ଖ୍ରୀ: ୧୫୧୨ରୁ ୧୫୧୯—ଏହି ଦୀର୍ଘ ସାତବର୍ଷ ବିଜୟନଗର ସାମ୍ରାଜ୍ୟ ସହିତ ଓଡ଼ିଶା ସାମ୍ରାଜ୍ୟର ଯୁଦ୍ଧ ଲାଗି ରହିଥିଲା । ଏ ସାତବର୍ଷିଆ ଯୁଦ୍ଧ ଓଡ଼ିଆ

ଜଳ ବନ୍ୟାରେ ଶସ୍ୟ ମଲା ॥ ମୂଷା ଖାଇଲା ଭ କଢ଼ାଇଲା ।୩୭।
ବରଷ ବରଷ ଏ ମତେ ॥ ବଢ଼ି ମରୁଡ଼ି ବାଦ ଯେତେ ।୩୮।
ବନ୍ୟା ଯେ ଆସି ଭସାଇଲା ॥ ମରୁଡ଼ି ଶସ୍ୟ ମରାଇଲା ।୩୯।
ବଢ଼ି ମରୁଡ଼ିର ଏ ବାଦ ॥ ପ୍ରଜାଏ କଲେ ଆର୍ତ୍ତନାଦ ।୪୦।
ବଳରାମ ଯେ ଜଗନ୍ନାଥ ॥ ଅଚ୍ୟୁତ ଅନନ୍ତ ଯଶୋବନ୍ତ ।୪୧।
କୀର୍ତ୍ତନ କଲେ ଗ୍ରାମେ ଗ୍ରାମେ ॥ କୃଷ୍ଣର ନାମ ପ୍ରଚାରଣେ ।୪୨।
ଗଜପତିର ବଳ ଯେତେ ॥ ଭାଙ୍ଗିଲେ ସେହୁ ଏହି ମତେ ।୪୩।
ଉଦୟଗିରି କୋଣ୍ଡକୁରୁ ॥ ହାରିଲେ ସଇନୀ ଯୁଦ୍ଧରୁ ।୪୪।
କୋଣ୍ଡାବିଡ଼ୁ ଦୁର୍ଗେ ମେଳିଲେ ॥ ରହିବା ଏହି ଦୁର୍ଗେ ଭଲେ ।୪୫।

---

ଜାତିର ଦୁର୍ଦ୍ଦିନର ଇତିହାସ ରଚନା କରିଥିଲା । ଏହି ସମୟରେ ବାରମ୍ବାର ବନ୍ୟା ଓ ମରୁଡ଼ି ବର୍ଷ ପରେ ବର୍ଷ ଲାଗି ରହିଲା । ବର୍ଷେ ବନ୍ୟାରେ ଶସ୍ୟ ଫସଲ ଧୋଇନେଲା ବେଳକୁ ତାର ପରବର୍ଷ ମରୁଡ଼ିର କରାଳଗ୍ରାସରେ ଶସ୍ୟ ଫସଲ ସବୁ ଜଳି ଯାଉଥିଲା । ଲୋକେ ବନ୍ୟା ଓ ମରୁଡ଼ିର କ୍ରମିକ ଉତ୍-ପୀଡ଼ନରେ ଅତିଷ୍ଠ ହୋଇ ଅନ୍ନ ଲାଗି ଚିତ୍କାର କଲେ । ତିନି ଦିଗରୁ ପଡ଼ୋଶୀମାନେ ଶତ୍ରୁ ଥିଲେ; ତେଣୁ କୌଣସି ଦିଗରୁ ସାହାଯ୍ୟର ସମ୍ଭାବନା ନ ଥିଲା । ଏଣେ ପୁଣି କୃଷ୍ଣଦେବ ରାୟଙ୍କ ସହିତ ଗଜପତିଙ୍କର ଘୋର ଯୁଦ୍ଧ ଲାଗି ରହିଥିଲା । ପଞ୍ଚସଖା ଏହି ସମୟରେ ଗ୍ରାମେ ଗ୍ରାମେ କୀର୍ତ୍ତନ କରି ଲୋକଙ୍କ ନୈତିକତା ରକ୍ଷା କରିବାକୁ ଯତ୍ନ କରୁଥିଲେ । ବଢ଼ି ଓ ମରୁଡ଼ି ଫଳରେ ଲୋକଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ଭାବେ ଦୁର୍ବଳ ହୋଇ-ପଡ଼ିଲା । ବୋଧହୁଏ ଯୁଦ୍ଧ କରୁଥିବା ସୈନ୍ୟମାନଙ୍କୁ ଖାଦ୍ୟ ସାମଗ୍ରୀ ମଧ୍ୟ ଆବଶ୍ୟକତା ଅନୁସାରେ ଯୋଗାଇ ପାରିଲା ନାହିଁ । ତେଣୁ ଧୀରେ ଧୀରେ ସୈନ୍ୟଦଳ ଭାଙ୍ଗିବାକୁ ଆରମ୍ଭ କଲେ । ଦକ୍ଷିଣରେ ଦୁର୍ଭେଦ୍ୟ ଦୁର୍ଗ ଉଦୟଗିରି ଓ କୋଣ୍ଡକୁରୁ ଓଡ଼ିଆଙ୍କ ହାତରୁ ଖସିଗଲା— ଶତ୍ରୁ ଅଧିକାର କରିନେଲେ । ଶେଷରେ ଅନ୍ୟ ଏକ ଦୁର୍ଭେଦ୍ୟ ଓ ପ୍ରଧାନ ଦୁର୍ଗ କୋଣ୍ଡାବିଡ଼ୁରେ ଗଜପତିଙ୍କ ଇଙ୍ଗିତରେ ଓଡ଼ିଆ ସୈନ୍ୟମାନେ ରୁଣ୍ଡ ହେଲେ । ଏ ଦୁର୍ଗକୁ କୌଣସି ମତେ ରକ୍ଷା କରିବାକୁ ହେବ ବୋଲି ସ୍ଥିର ପଡ଼ିଲା । ବୀରଭଦ୍ର ଦେବଙ୍କୁ କୋଣ୍ଡାବିଡ଼ୁ ଦୁର୍ଗ ରକ୍ଷାର ଦାୟିତ୍ୱ ଦିଆଗଲା । ତାଙ୍କର ସହାୟତା କରିବା ପାଇଁ ଶ୍ରୀବଦେବାଚାର୍ଯ୍ୟଙ୍କୁ ଓ ଅନ୍ୟ କେତେକ ପାତ୍ର ସାମନ୍ତଙ୍କୁ ସେଠାରେ ଅବସ୍ଥାପିତ କରାଗଲା । ଏଠାରେ ଦଶ ହଜାର ସୈନ୍ୟ ଦୁର୍ଗ ରକ୍ଷା କାର୍ଯ୍ୟରେ ନିଯୁକ୍ତ ହେଲେ । "ମାରିବା ନୋହିଲେ ମରିବା"ର ପଣ ନେଲେ—କିନ୍ତୁ ଶତ୍ରୁ ନିକଟରେ ଆତ୍ମସମର୍ପଣର ପ୍ରଶ୍ନ ନ ଥିଲା । ଏତେବେଳେ କୃଷ୍ଣଦେବ

ରୁଦ୍ରଦେବ ଯେ ନୃପମଣି ॥ ପାଇକଙ୍କ ସଙ୍ଗତେ ଗ୍ରାସିଲେଣି । ୪୬ ।
ଭଦ୍ରଦେବଙ୍କୁ ଉଗାଇଲେ ॥ ରଖ ରୁ ଏ ଦୁର୍ଗ ବୋଇଲେ । ୪୭ ।
ତୋର ସମାନ ବୀର ଥିଲେ ॥ ପ୍ରମାଦ ଅଛଇ କି ଭଲେ । ୪୮ ।
ପାଇ ସାମନ୍ତ ହକାରିଲେ ॥ ରଖ ହୋ ଏ ଦୁର୍ଗ ବୋଇଲେ । ୪୯ ।
ଜୀବଦେବ ଯେ ସାମରଥା ॥ ରହିଲେ ସେ ଥାନେ ସର୍ବଦା । ୫୦ ।
ମାରିବା ନୋହିଲେ ମରିବା ॥ ଏ ଦେହେଁ ଆନ ନ କରିବା । ୫୧ ।
ବୋଇଲା ବୀର ଭଦ୍ରଦେବ ॥ ଏଥିକୁ ଆନ କିଛି ନ ଭାବ । ୫୨ ।
କୃଷ୍ଣରାୟ ସଇନ୍ୟ ହେଲେ ॥ ତହିଁକୁ ଘେରି ରହିଲେ । ୫୩ ।
ତିନି ସହସ୍ର ସଇନ୍ୟ ରୁଳେ ॥ ଭଦ୍ରଦେବ ଯେ ତହିଁ ଥିଲେ । ୫୪ ।
ଏକ ମାସକ ଅନ୍ତରେଣ ॥ ତହିଁ ମଲେ କ୍ଷୁଧାରେ ସଇନ । ୫୫ ।
ଜଳର ଲାଗି ଚିତ୍କାରିଲେ ॥ ଖାଇଲା ଦ୍ରବ୍ୟ ସରିଲାରେ । ୫୬ ।
ରଖ ହୋ ଜଗନ୍ନାଥ ଡାକ ॥ ଦୁର୍ଗର ମଧ୍ୟୁ ଶୁଭିଲାକ । ୫୭ ।
ଏକ ମାସକ ଅନ୍ତରେଣ ॥ ଅଗ୍ରତ ଦୁର୍ଗେ ପ୍ରବେଶିଣ । ୫୮ ।
ଭଦ୍ରଦେବଙ୍କଇ ବାନ୍ଧିଲେ ॥ ଜୀବଦେବଙ୍କଇ ହାଣିଲେ । ୫୯ ।
ଆଉ ଯେତେ ପାଇ ସାମନ୍ତ ॥ ସବୁନ୍ତ ସଙ୍ଗେଣ ନେଲେକ । ୬୦ ।

---

ରାୟଙ୍କ ସୈନ୍ୟମାନେ କୋଣ୍ଡାପଲ୍ଲୀ ଦୁର୍ଗକୁ ଘେରିଗଲେ । ଓଡ଼ିଆ ସୈନ୍ୟମାନେ ଦୁର୍ଗ ଭିତରେ ଏକପ୍ରକାର ବନ୍ଦୀ ଅବସ୍ଥାରେ ରହିଲେ । ବାହାର ସହିତ ଯୋଗାଯୋଗ ଛିନ୍ନ ହେଲା । ଦୁର୍ଗ ମଧ୍ୟରେ ମହଜୁଦ୍ ଥିବା ଖାଦ୍ୟ ସାମଗ୍ରୀ ଶେଷ ହୋଇଆସିଲା; ବୋଧହୁଏ ଗ୍ରୀଷ୍ମକାଳ ହୋଇଥିବାରୁ ଦୁର୍ଗ ମଧ୍ୟସ୍ଥ ଜଳାଧାରମାନ ଶୁଷ୍କ ହେଲା । ଓଡ଼ିଆ ସୈନ୍ୟମାନେ ଦୁର୍ଗ ମଧ୍ୟରେ ଖାଦ୍ୟ ଓ ଜଳ ନ ପାଇ ବ୍ୟାକୁଳ ହେଲେ । ଦୁର୍ଗ ମଧ୍ୟରୁ "ରଖ ହୋ ଜଗନ୍ନାଥ" ଡାକ ଅହରହ ଶୁଣାଗଲା । କ୍ଷୁଧା ଓ ତୃଷାରେ ଅନେକ ସୈନ୍ୟ ଦୁର୍ଗ ମଧ୍ୟରେ ପ୍ରାଣତ୍ୟାଗ କଲେ । ଦୁର୍ଗ ବାହାରେ ଶତ୍ରୁ ସୈନ୍ୟ ବରାବର ଘେରି ରହି ଅବସ୍ଥା ଲକ୍ଷ୍ୟ କରୁଥାନ୍ତି । ଏକ ମାସ ପରେ ଶତ୍ରୁ ସୈନ୍ୟ ଦୁର୍ଗ ଦ୍ୱାର ଭାଙ୍ଗି ଦୁର୍ଗ ମଧ୍ୟକୁ ପ୍ରବେଶ କଲେ । ବାହିନୀପତି ଜୀବଦେବାଚାର୍ଯ୍ୟ ବୋଧହୁଏ ପ୍ରଥମେ ଦୁର୍ଗ ଦ୍ୱାରରେ ଶତ୍ରୁମାନଙ୍କୁ ପ୍ରତିରୋଧ କଲେ । ଶତ୍ରୁମାନେ ଜୀବଦେବାଚାର୍ଯ୍ୟଙ୍କୁ ହାଣି ଦେଲେ । ବୀରଭଦ୍ର ଦେବଙ୍କୁ ବନ୍ଦୀ କଲେ ଓ ଅନ୍ୟ ଅଳ୍ପ କେତେକ ପାଇକ ସାମନ୍ତଙ୍କୁ ବନ୍ଦୀ କରିନେଲେ । ଓଡ଼ିଆମାନେ କେହି କାହୁଁ ଶତ୍ରୁ ନିକଟରେ ଆତ୍ମସମର୍ପଣ କରି ନ ଥିଲେ । ତାହା ଅପେକ୍ଷା ମୃତ୍ୟୁକୁ ସେମାନେ ଶ୍ରେୟସ୍କର ମଣିଥିଲେ । ବୀରଭଦ୍ର ଦେବଙ୍କୁ ବନ୍ଦୀକରି ନେଇ କୃଷ୍ଣଦେବ ରାୟ ତାଙ୍କୁ ବେଲୁରୁ ସୀମାରେ ରଖାଇଲେ । ବେଲୁରୁ ସୀମା ବୋଧହୁଏ ବିଜୟନଗର ସାମ୍ରାଜ୍ୟର ଦକ୍ଷିଣ ସୀମା ଥିଲା ।

ଭଦ୍ରଦେବ ଯେ ବନ୍ଦୀ ହେଲେ ॥ ବେନୁରୁ ସୀମାରେ ବନ୍ଧିଲେ ।୬୧।
ଭାଲେ କୃଷ୍ଣରାୟ ଅଇଲ ॥ ଭଦ୍ରଦେବକଇ ସମ୍ଭାଳିଲ ।୬୨।
ବୋଇଲ ଗଜପତି ସୁତ ॥ ଖଣ୍ଡା ଖେଳ ରୁ ଜାଣୁ ସତ ।୬୩।
ଶୁଣିଲ୍ ତୋହର ଗରିମା ॥ ଖେଳ ଦେଖିଲେ ଜାଣିବା ନା ।୬୪।
ହକାରିଲ ଏକ ସଇନା ॥ ଏ ରୂପେ ଖଣ୍ଡା ଖେଳ ପୁଣି ।୬୫।
ବୀରଭଦ୍ରର ହାତେ ଖଣ୍ଡା ॥ ଦେଲେକ ଅଟଇ ପ୍ରଚଣ୍ଡା ।୬୬।
କୃଷ୍ଣ ରାୟଙ୍କୁ ହକାରିଲ ॥ ମୋ ରୂପେ ଖେଳ ରୁ ବୋଇଲ ।୬୭।
ରାୟ ଯେ ତହୁଁ ନାସ୍ତି କଲ ॥ ତୋ ଖେଳେ ମୋର ଇଚ୍ଛା ହେଲ ।୬୮।
ଏ ତହୁଁ ଗଲକ ସଇନା ॥ ଖଣ୍ଡା ଖେଳିବ କେହୁ ପୁଣି ।୬୯।
ଭଦ୍ରଦେବ ବୋଲେ ମୁଁ ରାଜା ॥ ରାଜା ସଙ୍ଗତେ ମୋ ତରଜା ।୭୦।
ଆନରେ ଏ ଖଡ଼ଗ ନ ବୁଲେ ॥ ଖେଳିବୁ ବୃଦ୍ଧ ଅସ ଭଲେ ।୭୧।
ରାୟ ବୋଇଲ ଦେଖି ବାନା ॥ ତୋ ଖେଳ ପରମାଣି ମାନା ।୭୨।
ଖେଳ ରୁ ଏ ସଇନା ରୂପେ ॥ ଦଣ୍ଡିବୁ ଅମାନ୍ୟ ରୁ କଲେ ।୭୩।
ସଇନଏ ଆସି ଉଭାରଛୁ ॥ ହାତେ ଖଣ୍ଡା ଏକ ଶୋହୁଛୁ ।୭୪।
ନୋହେ ସେ ରାଜାର କୁମର ॥ ରଜ ରକତ ନୋହେ ତାର ।୭୫।
ଭଦ୍ରଦେବ ଶରୀର କମ୍ପାଇ ॥ କୋପେଣ ଥରହର ହୋଇ ।୭୬।
କୋଷରୁ ଖଡ଼ଗ ମୁକୁଳାଇ ॥ ଆପଣା କଣ୍ଠରେ ମାରଇ ।୭୭।

---

୬୨-୯୨ ଗଜପତି ସୁତ ବୀରଭଦ୍ର ଦେବ ସମସାମୟିକ କାଳରେ ଜଣେ ପ୍ରଖ୍ୟାତ ବୀର ପୁରୁଷ ରୂପେ ଖ୍ୟାତି ଲାଭ କରିଥିଲେ । ବିଶେଷତଃ ଖଡ଼ଗ ଚାଳନାରେ ତାଙ୍କର ଅପାର ଦକ୍ଷତା ଶତ୍ରୁ ହୃଦୟରେ ଭୀତି ସଞ୍ଚାର କରୁଥିଲା । ତାଙ୍କ ହାତରେ ଖଡ଼ଗ ଥିଲେ ସେ ଭୟଙ୍କର ରୂପ ଧାରଣ କରିଥାନ୍ତି ଏବଂ ଶତ୍ରୁ ମର୍ଦ୍ଦନରେ ସେ ନିଷ୍ଠୁର ହୋଇଥାନ୍ତି । ଏ ପ୍ରସିଦ୍ଧି ତାଙ୍କର ଥିଲା । ଥରେ କୃଷ୍ଣଦେବ ରାୟ ଅସି ବୀରଭଦ୍ରଙ୍କ ଖଡ଼୍ଗ ଚାଳନା କୌଶଳ ଦେଖିବା ପାଇଁ ଆଗ୍ରହ ପ୍ରଦର୍ଶନ କଲେ । ଜଣେ ସାଧାରଣ ସୈନିକ ସହିତ ଖଡ଼୍ଗ ଚାଳନା କରିବା ପାଇଁ କହିଲେ । ବୀରଭଦ୍ର, କୃଷ୍ଣଦେବ ରାୟଙ୍କୁ ଅନୁରୋଧ କଲେ ଖଣ୍ଡା ଖେଳିବା ପାଇଁ । ମାତ୍ର କୃଷ୍ଣଦେବ ରାୟ ବିଜେତାର ଗୌରବ ନେଇ ନାସ୍ତି କଲେ ଏବଂ ଏହି ସାଧାରଣ ସୈନିକ ସହିତ ବୀରଭଦ୍ରଙ୍କୁ ଅବଶ୍ୟ ଖଣ୍ଡା ଖେଳିବାକୁ ହେବ ବୋଲି ଆଦେଶ ଦେଲେ । ଆଦେଶ ଅମାନ୍ୟ କଲେ ଦଣ୍ଡ ଦିଆଯିବ ବୋଲି ଧମକ ଦେଲେ । ବୀରଭଦ୍ର ଦେବ ଦେଖିଲେ—ତାଙ୍କ ସମ୍ମୁଖରେ ଏକ ସାଧାରଣ ସୈନିକ ଛିଡ଼ା ହୋଇଛି ଖଣ୍ଡା ଖେଳିବା ପାଇଁ ରାଜ ଆଦେଶରେ । ବୀରଭଦ୍ର ଏଥିରେ ବିଚଳିତ ହୋଇପଡ଼ିଲେ । ରାଜା

ପଡ଼ିଲ ତଳେ ଗଳରାଜ || କୃଷ୍ଣରାୟ ଚକ୍ଷୁ ମୁଦୁଛ ।୭୮।
ବୋଇଲ କେଡ଼େ କର୍ମ କଲ || ରାଜାର ସନ୍ତୋଷ ଏ ଭଲ ।୭୯।
ଭଦ୍ରଦେବଙ୍କୁ ଟେକି ଧରି || ରାଜ ସନମାନେ ହରଷି ।୮୦।
ବୋଇଲ ଧନ୍ୟ ବୀରଭଦ୍ର || ଧନ୍ୟ ତୋହର ତାତ ମାତ ।୮୧।
ସାମାନ୍ୟ କଥା ନ ସହିଲୁ || ଗଜପତି ପଣ ରଖିଲୁ ।୮୨।
ବୋଲି ବହୁତ ଦୁଃଖ କଲ || ଗଜପତିଙ୍କୁ ବାର୍ତ୍ତା ଦେଲ ।୮୩।
ଚମ୍ପାଦେବୀ ଯେ ପାଟରାଣୀ || ରାୟର ଅଟଇ ବନ୍ଦିନୀ ।୮୪।
ଗଜପତି ଯେ ଚିନ୍ତା କଲେ || ହୃଦରେ ପ୍ରଭୁଙ୍କୁ ଧ୍ୟାଇଲେ ।୮୫।
ଶଂଖ ହେ ପ୍ରଭୁ ଜଗନ୍ନାଥ || ତୁ ଅଟୁ ସର୍ବ ପୁରୁଷାର୍ଥ ।୮୬।
ରାୟ ଯେ ବାର୍ତ୍ତା ପଠାଇଲ || ବୀରଭଦ୍ରର ମୃତ୍ୟୁ ହେଲ ।୮୭।
ଗଜପତିର ମହାଚିନ୍ତା || କେମନ୍ତ ଏ ତହୁଁ ତରନ୍ତା ।୮୮।
ରାୟ ବୋଲେ ତୋ କନ୍ୟା ଦିଅ || ପାଟରାଣୀକୁ ମୁକୁଳାଅ ।୮୯।
ସନ୍ଧି କଲେକ ଯେହ୍ନେ ଥାନେ || ଜଗମୋହିନୀ କନ୍ୟା ଦାନେ ।୯୦।
କୃଷ୍ଣାର ଦକ୍ଷିଣ ପାରୁଶେ || ଦେଲେ ଯୌତୁକ ସ୍ୱରୂପେ ।୯୧।
କ୍ଷେତ୍ରକୁ ଲେଉଟି ଆଇଲେ || କେତେକେ ଦର୍ଶନ ସେ କଲେ ।୯୨।

---

ସତ୍ୟତ ରାଜାର ଝଡ଼ଗ ଗୁଳନା ହୀନତ ଓ ରାଜୋଚିତ କର୍ମ । ବୀରଭଦ୍ର ନିନ୍ଦା ଓ ଅପମାନରେ ଖଡ଼୍ଗକୁ କୋଷମୁକ୍ତ କରି ଆପଣା ବକ୍ଷରେ ବିଦ୍ଧ କଲେ ଏବଂ ସଙ୍ଗେ ସଙ୍ଗେ ସେ ଭୂମିରେ ଢଳି ପଡ଼ିଲେ । ଏହା ଥିଲା ନିତାନ୍ତ ଅପ୍ରତ୍ୟାଶିତ । କୃଷ୍ଣଦେବ ରାୟ ଏଥିରେ ଚମକିତ ହେଲେ । ତତ୍‌କ୍ଷଣାତ ଉଠାଇ ସେ ବୀରଭଦ୍ରଙ୍କୁ ରାଜ ସମ୍ମାନରେ ସମ୍ବର୍ଦ୍ଧିତ କଲେ ଏବଂ ତାଙ୍କୁ ଓ ତାଙ୍କ ତାତ ମାତଙ୍କୁ ଧନ୍ୟ ଧନ୍ୟ କଲେ । ସାମାନ୍ୟ କଥା ନ ସହି ବୀରଭଦ୍ର ଜୀବନ ତ୍ୟାଗ କରିଥିବାରୁ କୃଷ୍ଣଦେବ ରାୟ ଅତ୍ୟନ୍ତ ଦୁଃଖିତ ହେଲେ । ସଙ୍ଗେ ସଙ୍ଗେ ବୀରଭଦ୍ରର ମୃତ୍ୟୁ ସମ୍ବାଦ ଗଜପତିଙ୍କୁ ଜଣାଇଲେ । ସେତେବେଳେ ଦକ୍ଷିଣର କୌଣସି ଏକ ଯୁଦ୍ଧ ଶିବିରରୁ ଗଜପତିଙ୍କ ପାଟରାଣୀ (ବୀରଭଦ୍ରଙ୍କ ଜନନୀ) ଚମ୍ପାଦେବୀଙ୍କୁ କୃଷ୍ଣଦେବ ରାୟ ବନ୍ଦିନୀ କରି ରଖିଥିଲେ । ତା ସାଙ୍ଗକୁ ବୀରଭଦ୍ରଙ୍କ ମୃତ୍ୟୁ ସମ୍ବାଦ ଦାରୁଣ ବଜ୍ରପାତ ଭଳି ମନେ ହେଲା । କୃଷ୍ଣଦେବ ରାୟଙ୍କ ସହିତ ସନ୍ଧି କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ସନ୍ଧିର ସର୍ତ୍ତ ଅନୁସାରେ ଗଜପତି ଆପଣା କନ୍ୟା ଜଗନ୍ମୋହିନୀଙ୍କୁ କୃଷ୍ଣଦେବ ରାୟଙ୍କୁ ବିବାହ ଦେଲେ ଓ ପାଟରାଣୀ ଚମ୍ପାଦେବୀଙ୍କୁ ମୁକୁଳାଇ ଆଣିଲେ । କୃଷ୍ଣାର ଦକ୍ଷିଣରେ ଥିବା ଅଞ୍ଚଳ ଯୌତୁକ ସ୍ୱରୂପ ଅର୍ପଣ କଲେ । ସାତବର୍ଷ କାଳ ଲାଗିଥିବା ଯୁଦ୍ଧ ଏଠାରେ ଶେଷ ହେଲା । ଏହା ଖ୍ରୀ: ୧୯୧୯ର ଘଟଣା ବୋଲି ଇତିହାସରୁ ଜଣାଯାଏ ।

ସ୍ୱାମୀ ଯେ ବଳରାମ ଦାସ ॥ ହକାର ଆଣିଲେ ପାରୁଣ । ୯୩ ।
ବୋଇଲେ ଭକ୍ତ କଥା କହ ॥ ପ୍ରଭୁଙ୍କୁ ଏ ଥାନେ ଡକାଅ । ୯୪ ।
କୀର୍ତ୍ତନ କରନ୍ତୁ ମୋ ପାଶେ ॥ ମୋହର ଭକତ ବିଶ୍ୱାସେ । ୯୫ ।
କୃଷ୍ଣର ନାମଟି ଶୁଣାଅ ॥ ହୃଦରୁ ଆତପ ତୁଟାଅ । ୯୬ ।
ସ୍ୱାମୀ ପାଦେଣ ଶିର ଥାପି ॥ ପ୍ରଭୁ ପାଦେଣ ଶିର ଥାପି । ୯୭ ।
ସ୍ୱାମୀଙ୍କୁ ବୋଲେ ନାମ ଦିଅ ॥ ପ୍ରଭୁଙ୍କୁ ବୋଲେ ଦମକାଅ । ୯୮ ।
କୃଷ୍ଣର ଲୀଳା ଯେତେ କହ ॥ ହୃଦୁ ମୋ ସନ୍ତାପ ତୁଟାଅ । ୯୯ ।
ତୋର କୀର୍ତ୍ତନ ନୃତ୍ୟ ରସ ॥ ଦେଖିବେ ମୋହର ମୂହ୍ଲାସ । ୧୦୦ ।
ଭଗତ କଥା ଯେ ଶୁଣିଲେ ॥ ମନକୁ କେତେ ପ୍ରବୋଧିଲେ । ୧୦୧ ।
ବଳରାମ ଅଚ୍ୟୁତ ଅନନ୍ତ ॥ ଯଶୋବନ୍ତ ଯେ ଜଗନ୍ନାଥ । ୧୦୨ ।

---

୯୩-୧୦୧ ଗଜପତି ପ୍ରତାପରୁଦ୍ର ମୂର୍ଚ୍ଛା ଭଙ୍ଗିବା ପରେ ଦୁଃଖରେ ଗଭୀର ମନୋବେଦନା ନେଇ ପୁରୀରେ ଉପସ୍ଥିତ ହେଲେ ଏବଂ ବୈଷ୍ଣବମାନଙ୍କ ଗହଣରେ ଭକ୍ତ କଥା ଶୁଣି ମାନସିକ ଦୁଶ୍ଚିନ୍ତା ଦୂର କରିବା ପାଇଁ ଇଚ୍ଛା କଲେ । ଜଗନ୍ନାଥ ବଳରାମ ପ୍ରମୁଖ ବୈଷ୍ଣବମାନଙ୍କୁ ଡକାଇଲେ । ଶ୍ରୀଚୈତନ୍ୟଙ୍କୁ ମଧ୍ୟ ଡକାଇଲେ । ମୋ ଆଗରେ ହରିନାମ କୀର୍ତ୍ତନ କର, ମୋତେ ହରି ଲୀଳାର ଅମିୟ ଗାଥା ଶୁଣାଇ ମୋ ହୃଦୟରୁ ସନ୍ତାପ ଦୂର କର ବୋଲି ବ୍ୟାକୁଳ ଭାବରେ ନିବେଦନ କଲେ । ବୋଧହୁଏ ସେ ପର୍ଯ୍ୟନ୍ତ ଗଜପତି ଯୁଦ୍ଧରେ ବ୍ୟସ୍ତ ରହି ବୈଷ୍ଣବମାନଙ୍କ ପ୍ରତି ଆସକ୍ତ ହେବାର ଅବକାଶ ପାଇ ନ ଥିଲେ । ରାଜ୍ୟ ହରାଇ, ବୀରପୁତ୍ର ବୀରଭଦ୍ରକୁ ହରାଇ ତାଙ୍କର ମାନସିକ ଦୁର୍ଦ୍ଦଶା ବଢ଼ି ଯାଇଥିଲା ଓ ସେ ଶାନ୍ତି ଲାଭ କରିବା ପାଇଁ ବୈଷ୍ଣବଗୋଷ୍ଠୀର ନିକଟବର୍ତ୍ତୀ ହେଲେ । ରାଜାଙ୍କ ସମ୍ମୁଖରେ ବଳରାମ, ଜଗନ୍ନାଥ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ପ୍ରମୁଖ ବୈଷ୍ଣବମାନେ ହରିନାମ କୀର୍ତ୍ତନ କଲେ ଓ ଏହି ଗୋଷ୍ଠୀର ମଧ୍ୟ ଭାଗରେ ଶ୍ରୀଚୈତନ୍ୟ ରହି କୀର୍ତ୍ତନ ନୃତ୍ୟ କରୁଥିଲେ । ରାଜା ଶ୍ରୀଚୈତନ୍ୟଙ୍କର ଏ କୀର୍ତ୍ତନ ନୃତ୍ୟ ଦେଖି ଚମତ୍କୃତ ହେଲେ ।

୧୦୨-୧୪୮ ଖ୍ରୀ: ୧୫୧୯-୨୦ ଠାରୁ ଶ୍ରୀଚୈତନ୍ୟଙ୍କର ଦିବ୍ୟୋନ୍ମାଦମୟ ମହାଭାବମାନ ଆତ୍ମପ୍ରକାଶ କଲା । କଟି ସୂତାରେ ଗଣି ଗଣି ନାମ ଜପ କରିବାର ରୀତି ସେ ଏହି ସମୟରୁ ଛାଡ଼ିଲେ । ସେ ବାଳକ ସୁଲଭ ହାବଭାବମାନ ପ୍ରକାଶ କଲେ । ରଥଯାତ୍ରାର ସମୟ ଆସି ଉପସ୍ଥିତ ହେଲା । ରଥ ଅଗରେ ଚୈତନ୍ୟଙ୍କର କୀର୍ତ୍ତନ ନୃତ୍ୟ ଦେଖି ଗଜପତି ଅତିଶୟ ବିସ୍ମିତ ହେଲେ । ଚୈତନ୍ୟ କୀର୍ତ୍ତନ ବେଳେ ରଥ ଆଗରେ ନୃତ୍ୟ କରୁ କରୁ କ୍ଷଣକେ ବଢୁଥିଲେ ଓ ପର ମୁହୂର୍ତ୍ତରେ

| | | |
|---|---|---|
| ମଧ୍ୟେଣ ଚୈତନ୍ୟ ରହଇ ॥ | କୀର୍ତ୍ତନ ନୃତ୍ୟ ସେ କରଇ | ।୧୦୩। |
| ରଥର ବେଳ ଆସି ହେଲା ॥ | ନୃତ୍ୟ ସେ ରଥ ଆଗେ କଲା | ।୧୦୪। |
| ଯେ ଭକ୍ତ ପ୍ରଭୁର ସେ ନୃତ୍ୟ ॥ | ମହାଭାବ ସେ ରସରାଜ | ।୧୦୫। |
| କ୍ଷଣକେ ବଢ଼ଇ ଛୁଡ଼ଇ ॥ | କ୍ଷଣକେ ଅନ୍ତର୍ଦ୍ଧାନ ହୋଇ | ।୧୦୬। |
| ରାଧାର ସ୍ୱଭାବଟି ଯେତେ ॥ | କ୍ଷଣକେ ନୟନେ ଲୋତକେ | ।୧୦୭। |
| ଉଦ୍ଦାମ ଭାବ ନୃତ୍ୟ ଦେଖି ॥ | ନୃପମଣି ସେ ଅନୁରାଗୀ | ।୧୦୮। |
| ବୋଇଲେ ଏ ନୋହେ ମାନବ ॥ | ସାକ୍ଷାତେ ଅଟେ ରାଧାଭାବ | ।୧୦୯। |
| ରାମରାୟ ଯେ ଜଣାଇଲେ ॥ | ଏ ନୋହେ ମନୁଷ୍ୟଟି ଭଲେ | ।୧୧୦। |
| ଦୈବତା ଭାବ ଆବେଶଇ ॥ | ନୃତ୍ୟ ରଙ୍ଗରେ ପ୍ରକଟଇ | ।୧୧୧। |
| ପ୍ରଭୁ ଏ ବୋଲି ଉଦଘୋଷିଲେ ॥ | ରଥ ଯାହାର ଚଳକ ମେଳେ | ।୧୧୨। |
| ସକଳେ ଶୁଣି ହେଲେ ତୋଷ ॥ | ଚୈତନ୍ୟ ପ୍ରଭୁ ଏ ବିଶେଷ | ।୧୧୩। |
| ପ୍ରଭୁର ଯେତେ ମହାଭାବ ॥ | କେ ତାହା ବର୍ଣ୍ଣିଣ ପାରିବ | ।୧୧୪। |
| କେବେ ରହଇ ମହାଭାବେ ॥ | ଗମ୍ଭୀରା ଭିତରେ ସେ ଲବେ | ।୧୧୫। |
| ଉଠଇ ବସଇ ଗଡ଼ଇ ॥ | ହା କୃଷ୍ଣ ବୋଲି ଡାକଇ | ।୧୧୬। |
| ନୟନୁ ଲୋତକ ଝରଇ ॥ | କୃଷ୍ଣରେ ଅନୁରାଗୀ ହୋଇ | ।୧୧୭। |
| କୃଷ୍ଣ ବିରହ ବାଧ ଏଟି ॥ | ପ୍ରଭୁର ଶରୀରେ ପ୍ରକଟି | ।୧୧୮। |
| କଟି ସୂତ୍ରରେ ନାମ ଜପ ॥ | ଗ୍ରନ୍ଥିଲ ଗଣିବା ସ୍ୱଭାବ | ।୧୧୯। |
| ମତ ହେଲେ ସେ ଦନ ଜଏ ॥ | ଶିଶୁ ପରାୟେ ଭାବ ବହେ | ।୧୨୦। |
| କେବେ ଧାଏଁ ସେ ଦେଉଳକୁ ॥ | କୃଷ୍ଣ ମୋ କାହିଁ ଦେଖିବାକୁ | ।୧୨୧। |
| ହା କୃଷ୍ଣ ବୋଲି ଡାକେ କାନ୍ଦେ ॥ | କେବେ ବା ନିଜ ରୂପ ନିନ୍ଦେ | ।୧୨୨। |
| କେବେ ଧାଏଁ ସେ ସମୁଦ୍ରକୁ ॥ | କୃଷ୍ଣର ରୂପ ଦେଖିବାକୁ | ।୧୨୩। |
| ମେଘ ଉଦୟେ ଆକାଶର ॥ | ଦେଖିଣ ହୋଥଇ କାତର | ।୧୨୪। |
| କେତେବ ସେ ତୋଟା ଗୋପୀନାଥେ ॥ | କେତେବ ବା ବସେ କୃଷ୍ଣମଠେ | ।୧୨୫। |

୧୦୬- କ୍ଷଣକେ କାହିଁ ସେ ଲୁଚଇ ।

ଛୁଡ଼ୁଥିଲେ । କ୍ଷଣକେ ଅଦୃଶ୍ୟ ହୋଇଯାଉଥିଲେ । ରାଧା ଭାବରେ ଆବିଷ୍ଟ ହୋଇ ଆଖିରୁ ଲୋତକ ଝରାଉଥିଲେ । ଏହି ଦିବ୍ୟୋନ୍ମାଦମୟ ମହାଭାବମାନ ଲକ୍ଷ୍ୟ କରି ଗଜପତି ଚୈତନ୍ୟଙ୍କୁ ଭଗବାନଙ୍କର ଅବତାର ବୋଲି ସ୍ୱୀକାର କଲେ ଏବଂ ରାୟ ରାମାନନ୍ଦଙ୍କ ପରାମର୍ଶରେ ଶ୍ରୀଚୈତନ୍ୟଙ୍କୁ 'ମହାପ୍ରଭୁ' ବୋଲି ସଙ୍ଗୀମାନଙ୍କ ଗହଣରେ ଘୋଷଣା କଲେ । ଏଠାରେ ପ୍ରଦତ୍ତ ଦିବ୍ୟୋନ୍ମାଦମୟ ମହାଭାବର ବର୍ଣ୍ଣନା ବାସ୍ତବରେ ଅପୂର୍ବ ।

କେତେବେ ବା ଯାଏ ସେ ଗୁଣ୍ଡିଚା || ମଣ୍ଡପେ ବସିଣ ଭାବନ୍ତି । ୧୨୬ ।
ଏକା ସେ କୃଷ୍ଣ ରୂପ ଧ୍ୟାନେ || ଚହଲଇ ଭାବ ଆସ୍ୱାଦନେ । ୧୨୭ ।
କ୍ଷଣେ କ୍ଷଣେ କେ ମୂର୍ଚ୍ଛା ହୋଏ || କେତେବେ ବା ରୋମାଞ୍ଚିତ କାୟ । ୧୨୮ ।
କେବେ ବା ଧୂଳିରେ ଗଡ଼ଇ || ସର୍ବାଙ୍ଗେ ଧୂଳି ବୋଳି ହୋଇ । ୧୨୯ ।
ନରେନ୍ଦ୍ର ପୋଖରୀକୁ ଧାଏଁ || କେବେ ମାର୍କଣ୍ଡେ ଅବଗାହେ । ୧୩୦ ।
କୀର୍ତ୍ତନ ରସେ ମତ୍ତ ହେଲ || ନୃତ୍ୟ କରଇ ପ୍ରବଳ । ୧୩୧ ।
ଆଗକୁ ପଛକୁ ଢୁଳଇ || ହୁଙ୍କାରେ ହେତୁ ଲମ୍ଫ ଦେଇ । ୧୩୨ ।
କେବେ ବା ରହେ ପ୍ରକୃତରେ || ମୁଖରେ ଆଳାପ ସେ କରେ । ୧୩୩ ।
ଏକା ତା ଘଡ ନୃତ୍ୟ ରଙ୍ଗେ || କୀର୍ତ୍ତନ ରସ ଅନୁରାଗେ । ୧୩୪ ।
ଶୟନ ଅଶନରେ ମନ || ନ ଥାଇ ତାହାରଟି ଜାଣ । ୧୩୫ ।
ସ୍ୱାମୀ ଆଣଇ ଅନ୍ନ ଥାଳି || ଭୁଞ୍ଜାଏ ବଳତ୍କାର କରି । ୧୩୬ ।
ସ୍ୱରୂପ ଦାମୋଦର ପାଶେ || ମହାଭାବ ସେ ପରକାଶେ । ୧୩୭ ।
ଦେଖିଣ ଜନେ ଆଚମ୍ବିତ || ବୁଝନ୍ତି ପ୍ରଭୁର ହୃଦନ୍ତ । ୧୩୮ ।
ନୀଳାଚଳର ପ୍ରେମଧନ || ପ୍ରଭୁ ଏ ବୋଲିବାଟି ଜାଣ । ୧୩୯ ।
ସାକ୍ଷାତେ ପ୍ରେମର ପ୍ରତିମା || ପ୍ରେମ ରସର ଏହୁ ସୀମା । ୧୪୦ ।
ନ ଜାଣେ କେହୁ ତାର ଭାବ || ସ୍ୱାମୀ ଜାଣନ୍ତି ଏ ସ୍ୱଭାବ । ୧୪୧ ।
ବୋଲଇ ପ୍ରଭୁ ସ୍ଥିର ହୁଅ || କୀର୍ତ୍ତନ ରସେ ମନ ଦିଅ । ୧୪୨ ।
କୀର୍ତ୍ତନେ ତୋର ଭବ ମୁକ୍ତି || ମନୁଷ୍ୟ ଶରୀର କି ବୁଝନ୍ତି । ୧୪୩ ।
ବଳରାମ ସେ ଜଗନ୍ନାଥ || ଅନନ୍ତ ଅଚ୍ୟୁତ ଯଶୋବନ୍ତ । ୧୪୪ ।
ଏ ପାଞ୍ଚ ପ୍ରଭୁ ପାଶେ ମିଳି || କୀର୍ତ୍ତନ ରସେ ମତ୍ତ ଢାଳି । ୧୪୫ ।
ବୋଇଲେ ପ୍ରଭୁ ଅସ୍ଥ ହୁଅ || ସଦା ତୁ ଆମ୍ଭ ତୁଲେ ଥାଅ । ୧୪୬ ।
ପ୍ରଭୁ ଯେ ଭାବ ପ୍ରକାଶଇ || ମନୁଷ୍ୟ ଲୀଳା ଏ ବୋଲଇ । ୧୪୭ ।
କହଇ ମାଧବ ଯେ ଦାସ || ପ୍ରଭୁ ପାଦକୁ କରି ଆଶ । ୧୪୮ ।



# ଅଷ୍ଟମ ଅଧ୍ୟାୟ

ଶୁଣ ସାଧବେ ଦେଇ ମନ ॥ ଭକତ କୀର୍ତ୍ତନ ବର୍ଣ୍ଣନ । ୧ ।
ମୃଦଙ୍ଗ ହେଲା ଖୋଲ ନାମ ॥ ଏହୁ ଭକ୍ତିକି ପରଣାମ । ୨ ।
ଅନେକ କୀର୍ତ୍ତନ ରସରେ ॥ ପ୍ରଭାତୁ ନଗରେ ବାହାରେ । ୩ ।
ଅଚ୍ୟୁତ ଅନନ୍ତ ଯଶୋବନ୍ତ ॥ ବଳରାମ ସେ ଜଗନ୍ନାଥ । ୪ ।
ମୃଦଙ୍ଗିଆ ଜଣ ଦୁଇ ସେ ॥ ସଙ୍ଗତେ ଅଛଇ ବେଢ଼ାଏ । ୫ ।
ପ୍ରଭୁ ସେ ମହା ନୃତ୍ୟକାରେ ॥ କୀର୍ତ୍ତନ ରସେ ନୃତ୍ୟକରେ । ୬ ।
କୀର୍ତ୍ତନ ଗହ ଗହ ନାଦେ ॥ ଝାଞ୍ଜ ମୃଦଙ୍ଗ ତାଳ ଶବଦେ । ୭ ।
ଦୁଆରେ ଦୁଆରେ ବାଳୁତେ ॥ କୀର୍ତ୍ତନ ଶବଦ ଶୁଣନ୍ତେ । ୮ ।
ମାତାମାନନ୍ତ ଘରେ ଘରେ ॥ ବାସିପାଇଟି ସେ ହସ୍ତରେ । ୯ ।
ଏକ ସେ ବାଳୁତ ଉଠିଲା ॥ କୀର୍ତ୍ତନ ଦେଖିବି ବୋଇଲା । ୧୦ ।
ଶେଯାରୁ ଉଠି ଧାଇଁ ଖରେ ॥ କୀର୍ତ୍ତନ ଦେଖିବ ଦୁଆରେ । ୧୧ ।
ପିଣ୍ଡା ତଳକୁ ଗଡ଼ିଲାର ॥ ମସ୍ତକୁ ବହେ ରକ୍ତଧାର । ୧୨ ।
ମାତା ସେ ଗୃହକୃତ୍ୟେ ରତ ॥ ଶବଦେ ଧାଇଁଣ ଯାଅନ୍ତ । ୧୩ ।
କୋଳକୁ ଶିଶୁ ଉଠାଇଲେ ॥ ଭକତନକୁ କୋପ କଲେ । ୧୪ ।
ଶିଶୁର ମଳମୂତ ଯେତେ ॥ କନା ସେ ସତଳର ସାଥେ । ୧୫ ।
ହସ୍ତେ ଉଠାଇଣ ଧଇଲେ ॥ ଦାଣ୍ଡ ଦୁଆର ବୋଲିଗଲେ । ୧୬ ।
ଦୁଆର ସୀମାରେ ପହଞ୍ଚି ॥ କୀର୍ତ୍ତନ ଗହ ଗହ ନାଦ । ୧୭ ।
ମାତା ସେ ବହୁ ତରଜିଲେ ॥ ଉଚ୍ଚ ସ୍ୱରରେ ଡକା ଦେଲେ । ୧୮ ।
ମଳମୂତ କନା ସବୁନ୍ତ ॥ କୀର୍ତ୍ତନ ଉପରେ ଫିଙ୍ଗନ୍ତି । ୧୯ ।

---

୧-୩୦ ମୃଦଙ୍ଗ କପରି ଖୋଲ ନାମ ଧାରଣ କଲା ସେ ସମ୍ପର୍କୀୟ ଏକ ଘଟଣାର ବର୍ଣ୍ଣନା ଏଠାରେ ଦିଆଯାଇଛି । ଶ୍ରୀଚୈତନ୍ୟ ଓ ପଞ୍ଚସଖା ପୁରୀରେ ପ୍ରତିଦିନ ପ୍ରଭାତରୁ ନଗରକୀର୍ତ୍ତନ କରନ୍ତି । ସେ ସମୟଟି ଘରେ ଘରେ ମା ଭଉଣୀଙ୍କ ପାଇଁ ବାସିକାମ କରିବାର ସମୟ । ଛୋଟ ଛୋଟ ଶିଶୁମାନେ ଝାଞ୍ଜ ମୃଦଙ୍ଗ ଶବ୍ଦରେ ଶେଯରୁ ଉଠିପଡ଼ନ୍ତି ଓ ମା'ମାନଙ୍କୁ ବାସିକାମ କରିବା ଦିଅନ୍ତିନାହିଁ । ଥରେ ଏହିପରି ଗୋଟିଏ ଶିଶୁ ଶେଯରୁ ଉଠି କୀର୍ତ୍ତନ ଦେଖିବାକୁ ଗଲାବେଳେ ଝୁଣ୍ଟି ପଡ଼ି ପିଣ୍ଡା ତଳକୁ ଗଡ଼ିପଡ଼ିଲା ଓ ତା ମସ୍ତକରୁ ରୁଧିର ଝରିଥିଲା । ମାଆ ଏଥିରେ ବିଚଳିତ ହୋଇ ପିଲାର ମଳମୂତ୍ର କନା ସବୁ କୀର୍ତ୍ତନିଆଙ୍କ ଉପରକୁ କ୍ରୋଧ ଓ ବିରକ୍ତିରେ ଫୋପାଡ଼ି ଦେଇ-ଥିଲେ । ଚୈତନ୍ୟ ଶିଶୁର ମଳମୂତ୍ରକୁ କୀର୍ତ୍ତନ ପାଇଁ ପୁରସ୍କାର ବୋଲି ମନେକଲେ ଓ ଶିଶୁର ମଳକୁ ଚନ୍ଦନ ବୋଲି କହିଲେ । ମଳମୂତ୍ର

କୋପ କରନ୍ତି ଘୃଣାବଶେ || ତାହା ଯେ ଦେଖିଲେକ ଅଶେଷେ | ୨୦ |
ପ୍ରଭୁ ଯେ କନାକୁ ଧଇଲ || ମୃଦଙ୍ଗ ଉପରେ ଥୋଇଲ | ୨୧ |
ପୁଲକେ ଅଙ୍ଗ ଜର ଜର || ଭାଷଇ ଗଦ ଗଦ ସ୍ୱର | ୨୨ |
ବୋଇଲ ପାଇଲୁ ସମ୍ପଦ || କୀର୍ତ୍ତନ ରସର ଆନନ୍ଦ | ୨୩ |
ଶିଶୁର ମଳ ଏହୁ ନୋହେ || ସାକ୍ଷାତ ଚନ୍ଦନ ବୋଲାଏ | ୨୪ |
ମସ୍ତକେ ବୋଳ ଏ ଚନ୍ଦନ || କୀର୍ତ୍ତନ ରସର ବନ୍ଦନ | ୨୫ |
ମଳମୂତ୍ର କନା ଗୋଟାଇ || ମୃଦଙ୍ଗ ଉପର ପକାଇ | ୨୬ |
ବୋଲେ ଆଜନ୍ତୁଁ ଏ ହୋଇବ || ମୃଦଙ୍ଗେ ଏହୁ ଘୋଡ଼ାଇବ | ୨୭ |
ସ୍ମରଣେ ମାତା କୁମିଳର || ତାଳୁତ କନା ଖୋଳକର | ୨୮ |
ମୃଦଙ୍ଗ ଉପର ଏ ଖୋଳେ || ନ ଥିଲେ କୀର୍ତ୍ତନ ନ ଚଳେ | ୨୯ |
ଯେ ଦିନୁ କନା ଘୋଡ଼ାଇଲ || ମୃଦଙ୍ଗ ଖୋଳ ବୋଲାଇଲ | ୩୦ |
ଶୁଣ ସୁଜନେ ମନତୋଷ || କୀର୍ତ୍ତନ ରସର ବିଶେଷ | ୩୧ |
ଦିନେକ ପ୍ରଭୁ ହକାରିଲେ || ପଞ୍ଚସଖାଙ୍କୁ ଆସ ବୋଲେ | ୩୨ |
ଆସ ହୋ ସ୍ୱାମୀ ବଳରାମ || ଆସ ଅଚ୍ୟୁତ ଅନନ୍ତେଣ | ୩୩ |
ଯଶୋବନ୍ତ ହୋ ତୁମେ ଆସ || ସ୍ୱାମୀ ହୋ ମୋର ପାଶେ ବସ | ୩୪ |
ଭଣିବା କୀର୍ତ୍ତନ ପ୍ରଚୁର || ଭ୍ରମିବା ନଗର ନଗର | ୩୫ |
ଅନବସର ଦିବସେଣ || ପିବାଡ ଅନ୍ତର ନାଥେଣ | ୩୬ |

କନାକୁ ତନ୍ତୁ ଗୋଟାଇ ଆଣି ମୃଦଙ୍ଗ ଉପରେ ବସାଇ ଦେଲେ । କୀର୍ତ୍ତନ ଦଳ ପ୍ରତି ମାତାର କୋପକୁ ସ୍ମରଣୀୟ କରି ରଖିବା ପାଇଁ ଶିଶୁର ମଳମୂତ୍ର କନାର ଚିହ୍ନ ସ୍ୱରୂପ ମୃଦଙ୍ଗ ଉପରେ କନା ଘୋଡ଼ାଇବାର ବ୍ୟବସ୍ଥା କରାଗଲା । କନା ଖୋଳରେ ଆବୃତ ହୋଇ ନ ଥିବା ମୃଦଙ୍ଗ କୀର୍ତ୍ତନ ବେଳେ ବ୍ୟବହାର କରାଗଲାନାହିଁ । କନାର ଖୋଳ ମୃଦଙ୍ଗ ଉପରେ ଆବରଣ ସ୍ୱରୂପ ବ୍ୟବହୃତ ହେବାରୁ ମୃଦଙ୍ଗର ନାମ ଖୋଳ ହେଲା ।

୩୧-୩୫ ଖ୍ରୀ: ୧୫୨୦ ପରବର୍ତ୍ତୀ ସମୟରେ ଶ୍ରୀଚୈତନ୍ୟ, ପଞ୍ଚସଖା ଅନ୍ତର୍ଗତ ପ୍ରତ୍ୟେକଙ୍କୁ ପାଖକୁ ଡାକି କୀର୍ତ୍ତନ ରସ ପ୍ରସାରଣ ଲଗି ବର୍ଷର ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନକୁ ଯାଇ କୀର୍ତ୍ତନ କରିବାର ପ୍ରସ୍ତାବ ଦେଲେ । ପଞ୍ଚସଖା ଏଥିରେ ସମ୍ମତ ହେଲେ । ଫଳରେ ବର୍ଷବ୍ୟାପୀ ଏମାନେ ଓଡ଼ିଶାର ବିଭିନ୍ନ ସ୍ଥାନରେ କୀର୍ତ୍ତନ କରିବାକୁ ଯାଉଥିଲେ । ଶ୍ରୀଚୈତନ୍ୟଙ୍କ ଶେଷ ବାର/ତେର ବର୍ଷ ଜୀବନକାଳ ଏପରି ଭାବରେ ଅତିବାହିତ ହୋଇଥିଲା ।

୩୬-୪୧ ଆଷାଢ଼ କୃଷ୍ଣ ପ୍ରତିପାଦରୁ ବଡ଼ ଦେଉଳରେ ତିନି ଠାକୁର ଅନବସର ଭାବରେ ରହନ୍ତି । ଯାତ୍ରୀମାନେ ଠାକୁର ଦର୍ଶନର ସୁଯୋଗ ଏ ପନ୍ଦର ଦିନ (ନେତ୍ରୋତ୍ସବ ପର୍ଯ୍ୟନ୍ତ) ପାଆନ୍ତି ନାହିଁ । ଅନବସର ଦିନ ବୁଝିକରେ ଭକ୍ତ

ଆଷାଢ଼ ପ୍ରତିପଦା ତିଥି ॥ ଅମାବାସ୍ୟାକୁ ସେ ଫେରନ୍ତି । ୩୭ ।
କୀର୍ତ୍ତନ ଅଲରନାଥେଣ ॥ କ୍ଷିରିଭୋଗ ସେ ଆସ୍ୱାଦନ । ୩୮ ।
ରାମରାୟ ସେ ତୋଷ ହୋଇ ॥ ବୈଷ୍ଣବେ ବନ୍ଧୁ ଚରଚଇ । ୩୯ ।
ପଞ୍ଚପାଣ୍ଡବ ମୂର୍ତ୍ତି ପାଶେ ॥ କୀର୍ତ୍ତନ କରନ୍ତି ଅଶେଷେ । ୪୦ ।
ପ୍ରତ୍ୟେକ ବରଷ ଏ ମତେ ॥ ଚଳନ୍ତି ସେ ଅଲରନାଥେ । ୪୧ ।
ପଉଷ ପୂର୍ଣ୍ଣିମୀ ତିଥିରେ ॥ ମିଳନ୍ତି ଏକାମ୍ର କ୍ଷେତ୍ରରେ । ୪୨ ।
ଅନନ୍ତ ବାସୁଦେବଠାଇଁ ॥ କୀର୍ତ୍ତନ ରସ ପ୍ରକାଶଇ । ୪୩ ।
କୃତ୍ତିବାସ ସେ ଲିଙ୍ଗରାଜ ॥ ହରିହର ରୂପ ପ୍ରକାଶ । ୪୪ ।
ତୁଳସୀ ବିଲ୍ୱଦଳ ଦେଇ ॥ ପୂଜନ୍ତି ଲିଙ୍ଗରାଜ ତହିଁ । ୪୫ ।
ଗଉରୀ କୁଣ୍ଡେଣ ସ୍ନାହାନ ॥ କେଦାର ଈଶ୍ୱର ପୂଜନ । ୪୬ ।
ଅନନ୍ତ ବାସୁଦେବ ଭୋଗ ॥ ବିନ୍ଦୁସାଗରେ ଅନୁରାଗ । ୪୭ ।
କୀର୍ତ୍ତନ କରନ୍ତି ଅଶେଷେ ॥ ବୈଷ୍ଣବ ଭକତ ପାରୁଶେ । ୪୮ ।
ନୀଆଳି ମାଧବେ ଗମନ ॥ ପ୍ରାଚୀରେ ଅଙ୍ଗ ପଖାଳନ । ୪୯ ।
ମାଧବେ ଭକତି ଅର୍ପଣ ॥ କୀର୍ତ୍ତନ ରସ ପ୍ରସାରଣ । ୫୦ ।
ବହୁତ ଲୋକ ମେଳହୋନ୍ତି ॥ ମକରମେଳା ସେ କରନ୍ତି । ୫୧ ।
ଗୀତ ଗୋବିନ୍ଦ ନୃତ୍ୟରସେ ॥ ଜୟଦେବର ପରଶଂସେ । ୫୨ ।
କେଁନ୍ଦୁଲି ଗ୍ରାମର ମଧ୍ୟେଣ ॥ କୀର୍ତ୍ତନ ରସ ପ୍ରସାରଣ । ୫୩ ।
ତହୁଁ ଗମନ୍ତି ଚନ୍ଦ୍ରଭାଗା ॥ ସତ୍ତଇ ମୁହଁ ତହିଁ ରଙ୍ଗା । ୫୪ ।
ରଥ ସପ୍ତମୀ ବ୍ରତପାଳି ॥ କୀର୍ତ୍ତନ କରନ୍ତି ଉଚ୍ଚାର । ୫୫ ।
ଆଦିତ୍ୟ ଶକ୍ତିର ଅର୍ଚ୍ଚନା ॥ କରନ୍ତି ସୂର୍ଯ୍ୟ ଉପାସନା । ୫୬ ।
ଅରୁଣ ସୂର୍ଯ୍ୟର ଉଦୟେ ॥ ତ୍ରିଭୁର ମଧ ଖେଳ ହୋଏ । ୫୭ ।

---

ଅଲରନାଥଙ୍କୁ ଯାଇ ଦର୍ଶନ ଓ ପୂଜା ଅର୍ଚ୍ଚନା କରନ୍ତି । ଅନନ୍ତର ସେମାନେ ପଞ୍ଚସଖାଙ୍କ ସହିତ ଅଲରନାଥ (ବେଣ୍ଟପୁର ନିକଟବର୍ତ୍ତୀ ସ୍ଥାନ) ଯାଇ କୀର୍ତ୍ତନ କରନ୍ତି । ପଞ୍ଚପାଣ୍ଡବ ମୂର୍ତ୍ତିମାନ ଅଲରନାଥ ମନ୍ଦିର ପାର୍ଶ୍ୱବର୍ତ୍ତୀ । ସେଠି କୀର୍ତ୍ତନ କରି ଏମାନେ ଅଲରନାଥଙ୍କ କ୍ଷିରିଭୋଗ ଆସ୍ୱାଦନ କରନ୍ତି । ରାୟ ରାମାନନ୍ଦ ଆପଣା ଗ୍ରାମରେ (ବେଣ୍ଟପୁରରେ) ଶ୍ରୀଚୈତନ୍ୟ ଓ ପଞ୍ଚସଖାଙ୍କୁ ଅତିଥି ରୂପେ ପାଇ ଆନନ୍ଦ ସହକାରେ ସେମାନଙ୍କର ଚର୍ଚ୍ଚା ପ୍ରତିବର୍ଷ କରନ୍ତି । ବୈଷ୍ଣବଗୋଷ୍ଠୀ ପୁଣି ଆଷାଢ଼ ଅମାବାସ୍ୟାକୁ ପୁରୀ ଫେରିଆସୁଥିଲେ । ଠିକ୍ ତା' ପରେ ପରେ ରଥଯାତ୍ରା । ପ୍ରତିବର୍ଷ ରଥ ଆଗରେ କୀର୍ତ୍ତନ କରୁଥିଲେ ।

୪୨-୫୩ ପୌଷ ପୂର୍ଣ୍ଣିମା ତିଥିରେ ଏହି ବୈଷ୍ଣବଗୋଷ୍ଠୀ ଏକାମ୍ର କ୍ଷେତ୍ର ଭୁବନେଶ୍ୱରକୁ ପ୍ରତିବର୍ଷ ଯାଉଥିଲେ । କୃତ୍ତିବାସ ଲିଙ୍ଗରାଜଙ୍କୁ ଏମାନେ ଉଭୟ ତୁଳସୀ

ମହାଭାବ ସେ ପ୍ରକାଶଇ || ନୃତ୍ୟ କରେ ସେ ଅନେକାଇ | ୫୮ |
ପଞ୍ଚସଖାଙ୍କ ସଙ୍ଗ ମେଳେ || କୀର୍ତ୍ତନେ ଭକତ ମଣ୍ଡଳେ | ୫୯ |
କ୍ଷିପ୍ର ଲଡ଼ୁ ଭୋଗ ଆସ୍ୱାଦନ || କରନ୍ତି ବିଷ୍ଣୁର ଅର୍ଚ୍ଚନ | ୬୦ |
ବାଟରେ ମଙ୍ଗଳା ପୂଜନ || ପ୍ରଭୁର ହୋଏ ରାଧାଭ୍ରମ | ୬୧ |
କାକଟପୁର ଗ୍ରାମବାଟେ || ପ୍ରବେଶ ହୋନ୍ତି କ୍ଷେତ୍ର ତଟେ | ୬୨ |
କଟକେ ଗମନ୍ତି ଦୋଳକୁ || ରାଜାଙ୍କ ନଅର ମେଳାକୁ | ୬୩ |

---

ଓ ବିନ୍ଦୁଦଳରେ ପୂଜାକରି କୀର୍ତ୍ତନ କରୁଥିଲେ । ଅନନ୍ତ ବାସୁଦେବ ମନ୍ଦିରରେ କୀର୍ତ୍ତନ କରି ପ୍ରସାଦସେବନ କରୁଥିଲେ । ଗୌରୀକୁଣ୍ଡରେ ସ୍ନାନକରି କେଦାରେଶ୍ୱରଙ୍କୁ ପୂଜା କରୁଥିଲେ । ବିନ୍ଦୁସାଗରରେ ଅବଗାହନ କରି ଆନନ୍ଦିତ ହେଉଥିଲେ ।

ଏକାମ୍ର କ୍ଷେତ୍ରରୁ ଏମାନେ ପ୍ରତିବର୍ଷ ମକରମେଳାରେ ଯୋଗଦେବା ପାଇଁ ନିଆଳି ମାଧବ ମନ୍ଦିରକୁ ଯାଉଥିଲେ । ପ୍ରାଚୀ ନଦୀରେ ସ୍ନାନକରି ନିଆଳି ମାଧବଙ୍କ ମନ୍ଦିରରେ କୀର୍ତ୍ତନ କରୁଥିଲେ । ଏହି ମନ୍ଦିରର ଅଦୂରରେ କେନ୍ଦୁଲି ଶାସନ—ଶ୍ରୀ ଗୀତଗୋବିନ୍ଦକାର ଜୟଦେବଙ୍କ ଜନ୍ମସ୍ଥାନ । ଶ୍ରୀଚୈତନ୍ୟ ଓ ପଞ୍ଚସଖାଙ୍କ ପାଇଁ ଏହା ଥିଲା ଏକ ତୀର୍ଥସ୍ଥାନ । ସେମାନେ କେନ୍ଦୁଲି ଗ୍ରାମ ମଧ୍ୟରେ ଗୀତଗୋବିନ୍ଦର ପଦ ଗାନକରି କୀର୍ତ୍ତନ କରୁଥିଲେ ଓ ଭାବରସରେ ବିହ୍ୱଳ ହେଉଥିଲେ । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ କେନ୍ଦୁଲି ଗ୍ରାମ ଓ ତତ୍ ସମ୍ପୃକ୍ତ ଜୟଦେବଙ୍କ ସ୍ମୃତି ଅକ୍ଷୁଣ୍ଣ ଥିବା ଏଥିରୁ ଜଣାଯାଏ ।

୫୪-୬୦ କେନ୍ଦୁଲିର ମକରମେଳାରେ କୀର୍ତ୍ତନ କରିସାରି ଏହି ବୈଷ୍ଣବଗୋଷ୍ଠୀ ରଥସପ୍ତମୀକୁ ଚନ୍ଦ୍ରଭାଗାରେ ଆଦିତ୍ୟ ବିଷ୍ଣୁଙ୍କର କ୍ଷେତ୍ରରେ କୀର୍ତ୍ତନ କରିବାକୁ ଯାଉଥିଲେ । ଆଦିତ୍ୟ ବିଷ୍ଣୁଙ୍କର ଅର୍ଚ୍ଚନା କରି ଏମାନେ କୋଣାର୍କ ମନ୍ଦିରରେ ପୂଜା ପାଉଥିବା ସୂର୍ଯ୍ୟ ଦେବତାଙ୍କର କ୍ଷିପ୍ର ଲଡ଼ୁ ଭୋଗ ଆସ୍ୱାଦନ କରୁଥିଲେ; ସମୁଦ୍ରରେ ସ୍ନାନକରି ଅରୁଣ ସୂର୍ଯ୍ୟ ଦର୍ଶନରେ ଚୈତନ୍ୟଙ୍କର ମହାଭାବକାନ୍ତ ହେଉଥିଲା । ଏଥିରୁ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ ଯେ 'ବୈଷ୍ଣବ ଲୀଳାମୃତ' କାବ୍ୟର ରଚନାକାଳ ପର୍ଯ୍ୟନ୍ତ (ଖ୍ରୀ: ୧୫୩୫) କୋଣାର୍କରେ ସୂର୍ଯ୍ୟଦେବତାଙ୍କର ପୂଜାଅର୍ଚ୍ଚନା ଅବ୍ୟାହତ ଥିଲା ଏବଂ ପ୍ରତିଦିନ ଠାକୁରଙ୍କ ନିକଟରେ କ୍ଷିପ୍ର ଲଡ଼ୁ ଭୋଗ ଦିଆଯାଉଥିଲା । ଖ୍ରୀ: ୧୫୩୫ ପର୍ଯ୍ୟନ୍ତ କୋଣାର୍କ ମନ୍ଦିର ଅକ୍ଷୁଣ୍ଣ ଥିବା ଏଥିରୁ ପ୍ରମାଣିତ ହୁଏ ।

ଏହି ପ୍ରସିଦ୍ଧ ବୈଷ୍ଣବଗୋଷ୍ଠୀ ଚନ୍ଦ୍ରଭାଗାରୁ କାକଟପୁର ମଙ୍ଗଳାଙ୍କ ଦର୍ଶନକରି ଓ ସେଠାରେ କୀର୍ତ୍ତନ କରି ପୁରୀକୁ ଫେରୁଥିଲେ ।

୬୩-୬୭ ପ୍ରତିବର୍ଷ ଦୋଳପୂର୍ଣ୍ଣିମୀକୁ ଏହି ବୈଷ୍ଣବଗୋଷ୍ଠୀ କଟକ ନଗରରେ ଗଜପତିଙ୍କର ନଅର ମେଳାରେ ଯୋଗଦେଇ କୀର୍ତ୍ତନ କରୁଥିଲେ ।

ରୁଦ୍ରଦେବ ଯେ ଗଜପତି || ବୈଷ୍ଣବେ ଅର୍ଚ୍ଚନା କରନ୍ତି | ୬୪ |
ରାଣୀମାନଙ୍କ ସମ୍ଭାଷଣ || କରନ୍ତି ବୈଷ୍ଣବ ପୂଜନ | ୬୫ |
କୀର୍ତ୍ତନ ରସ ପ୍ରକାଶନ୍ତି || ପ୍ରଭୁର ମହାଭାବ ଦେଖି | ୬୬ |
ନୃପ ଯେ ବିହ୍ୱଳ ହୁଅନ୍ତି || କୃଷ୍ଣ ରସରେ ମଜ୍ଜନ୍ତି | ୬୭ |
ତହୁଁ ଚଳନ୍ତି ଭକ୍ତଗଣ || ବୈତରଣୀରେ ଅବଗାହ | ୬୮ |
ଦଶାଶ୍ୱମେଧ ଘାଟେ ସ୍ନାନ || କରନ୍ତି ବୈଷ୍ଣବେ କୀର୍ତ୍ତନ | ୬୯ |
ପ୍ରଭୁର ପିତୃସ୍ଥାନ ଏହି || ଯାଜନଗର ଟିଏ ବୋଲାଇ | ୭୦ |
ଉପେନ୍ଦ୍ର ପିତାମହ ନାମ || ବସ୍ତିସ ସାମନ୍ତ କୁଳୀନ | ୭୧ |
ଅଟଇ ମିଶ୍ର ସଜ୍ଜଧାରୀ || ବୈଦିକ ଶାସନାଧିକାରୀ | ୭୨ |
ଛଡ଼ ଦର୍ଶନରେ ପଣ୍ଡିତ || ନ୍ୟାୟ ବେଦାନ୍ତେ ସାମର୍ଥ | ୭୩ |
କପିଳେଶ୍ୱର ମହାରାଜା || ଅନେକ କଲେ ତରଜା | ୭୪ |
ରାଜ ଭୟରେ ପଳାଇଲେ || ଶ୍ରୀହଟେ ଯାଇ ବାସକଲେ | ୭୫ |
ତାହାର ପୁତ୍ର ଜଗନ୍ନାଥ || ତା ଗର୍ଭୁଁ ପ୍ରଭୁ ହୋଏ ଜାତ | ୭୬ |
ଯାଜପୁରକୁ ଆସି ହେଲେ || ପ୍ରମୋଦେ କୀର୍ତ୍ତନ ମଣ୍ଡଳେ | ୭୭ |
ପ୍ରଭୁର ପରିଚୟ ଜାଣି || କରନ୍ତି ପାଦ ସେ ବନ୍ଦଣି | ୭୮ |
ଗୋମସ୍ତେ କପି ଦ୍ୱାର ଭରି || ଆପଣ ଦାସ ପୂର୍ଣ୍ଣକୁମ୍ଭ | ୭୯ |
ପ୍ରଭୁଙ୍କୁ ସବରେ ବନ୍ଦିଲେ || ମହାଭାବ ଯେ ପ୍ରକାଶିଲେ | ୮୦ |
ସେଠେ କଣ୍ଟୁଦନ ରହଣି || ତୁଳସୀ କ୍ଷେତ୍ରେ ବନେ ପୁଣି | ୮୧ |
ତହିଁ ବଳଦେବ ଦର୍ଶନ || କରନ୍ତି ପ୍ରସାଦ ସେବନ | ୮୨ |
ଲେଉଟି ଆସନ୍ତି କ୍ଷେତ୍ରକୁ || ଦେବତା ସ୍ନାନ ବେଳକୁ | ୮୩ |
ଏ ମତେ ପଞ୍ଚସଖା ସଙ୍ଗ || ପ୍ରଭୁ ଯେ ଚଲେ ନୃତ୍ୟରଙ୍ଗେ | ୮୪ |
ବରଷ ବରଷ ଏ ମତେ || ସଙ୍ଗ ପଞ୍ଚସଖା କରନ୍ତି | ୮୫ |
ପ୍ରଭୁ କନକଗୌରାଙ୍ଗ କାନ୍ତି || ଦୁଃଖ ପାଶୋର ଅଟଇଟି | ୮୬ |
ଅଚ୍ୟୁତ ଭରାଇ ଅଥାଇ || ସ୍ୱପ୍ନଲୀଳାର ପ୍ରକରଣ | ୮୭ |
ସ୍ୱାମୀ ଯେ ଅଟଇଟି ଲୁହୁ || କୀର୍ତ୍ତନ ରସ ମହାମେରୁ | ୮୮ |

---

ଗଜପତି ଜଣେ ଓ ତାଙ୍କର ରାଣୀମାନେ ଭକ୍ତି ସହକାରେ ବୈଷ୍ଣବମାନଙ୍କର ଯଥୋଚିତ ଅର୍ଚ୍ଚନା କରୁଥିଲେ ।

୬୮-୮୦ କଟକରୁ ପ୍ରଭୁ ଏହି ଗୋଷ୍ଠୀ ଚୈତ୍ର ମାସରେ ବିରଜାକ୍ଷେତ୍ର ଯାଜପୁରକୁ ଯାଇଥିଲେ କୀର୍ତ୍ତନ କରିବା ପାଇଁ । ସେଠାରେ ବୈତରଣୀ ନଦୀରେ ସ୍ନାନ କରି ଦଶାଶ୍ୱମେଧ ଘାଟରେ ବିଶ୍ରାମ କରି କୀର୍ତ୍ତନ କରୁଥିଲେ । ଚୈତନ୍ୟଙ୍କର ପୂର୍ବପୁରୁଷ ଯାଜପୁରର ଅଧିବାସୀ ଥିଲେ । ତାଙ୍କ ପିତାମହ ଉପେନ୍ଦ୍ର ମିଶ୍ର ଜଣେ ବିରାଟ ପଣ୍ଡିତ ଓ ଶାସନାଧିକାରୀ ଥିଲେ । ବସ୍ତିସ

ବଳରାମ ଅଛେ ସାତ୍ତ୍ୱିକ ॥ ସବୁରସର ପ୍ରବର୍ତ୍ତକ ।୮୯।
ଅନନ୍ତ ଯଶୋବନ୍ତ ଜାଣ ॥ କୀର୍ତ୍ତନ ରସର ସୁଜାଣ ।୯୦।
ସ୍ୱବୁ ଗଦାଧର ପୂଜନ୍ତ ॥ ଟୋଟା ଗୋପୀନାଥ ବସତ ।୯୧।
ତାହିଁ ସେ ଯାଇ ନ ପାରନ୍ତ ॥ କୃଷ୍ଣର ଲୀଳା ସେ ଶୁଣନ୍ତ ।୯୨।
ସ୍ୱରୂପ ଅଛେ କ୍ଷୀଣକାୟା ॥ ନ ଥାଇ ହୃଦସ୍ନେହ ମାୟା ।୯୩।
ତାହିଁ ସେ ଯାଇ ନ ପାରଇ ॥ ନିରତେ ଭକ୍ତ ସେବୁଥାଇ ।୯୪।
କୀର୍ତ୍ତନ କରେ ପଞ୍ଚସଖା ॥ ଅପୂର୍ବ ଭକ୍ତ ପୂତ ଦେବା ।୯୫।
ହଂସ ଜନ୍ମର ଭବଳରୁ ॥ କୀର୍ତ୍ତନ ପ୍ରାଣୀଙ୍କୁ ହଙ୍କରୁ ।୯୬।
ପ୍ରକୃତ ବାମ ହେଲେ ତାହିଁ ॥ କେବଳ ସେ ଗଡ଼ଟି ଭୂଆଇ ।୯୭।

---

ଗୋଷ୍ଠୀସ୍ଥ ଏହି କୁଳୀନ ବ୍ରାହ୍ମଣ ବଂଶ ସାମନ୍ତ ପଦରେ ଅଧିଷ୍ଠିତ ଥିଲେ। ଶାସନୀ ବ୍ରାହ୍ମଣଙ୍କ ମଧ୍ୟରେ କୌଳୀନ୍ୟ ଓ ପାଣ୍ଡିତ୍ୟ ହେତୁର ନେଇ ବୋଧହୁଏ ଗଜପତିଙ୍କ ଦ୍ୱାରା ସାମନ୍ତ ପଦବୀ ସୃଷ୍ଟି ହୋଇଥିଲା। ଉପେନ୍ଦ୍ର ମିଶ୍ର ଗଜପତି କପିଳେନ୍ଦ୍ର ଦେବଙ୍କ କୋପ ଦୃଷ୍ଟିରେ କୌଣସି କାରଣରୁ ପଡ଼ିଥିଲେ ଏବଂ ରାଜଦଣ୍ଡ ଭୟରେ ସେ ଯାଜପୁରରୁ ଗୌଡ଼ର ଶ୍ରୀହଟ୍ଟ ପର୍ଯ୍ୟନ୍ତ ଚାଲିଗଲେ। ଉପେନ୍ଦ୍ରଙ୍କ ପୁତ୍ର ଜଗନ୍ନାଥ ମିଶ୍ର ଏବଂ ଜଗନ୍ନାଥଙ୍କ ଔରସରୁ ଶ୍ରୀଚୈତନ୍ୟଙ୍କର ଜନ୍ମ ନବଦ୍ୱୀପରେ। ଚୈତନ୍ୟ, ପଞ୍ଚସଖାଙ୍କ ମେଳରେ କୀର୍ତ୍ତନରସ ପ୍ରସାରଣ ପାଇଁ ପ୍ରତିବର୍ଷ ଯାଜପୁର ବିରଜାକ୍ଷେତ୍ରକୁ ଯାଉଥିଲେ। ଯାଜପୁରରେ ତାଙ୍କ ଜ୍ଞାତି-ଗୋଷ୍ଠୀର ଲୋକେ ଚୈତନ୍ୟଙ୍କ ପରିଚୟ ପାଇଲା ପରେ ତାଙ୍କର ଯଥୋପଯୁକ୍ତ ଅର୍ଚ୍ଚନା କଲେ। ଜଣେ ଗୃହତ୍ୟାଗୀ ସନ୍ନ୍ୟାସୀ କାର୍ଯ୍ୟବଶତଃ ନିଜ ପିତୃ ସ୍ଥାନରେ ଆସି ଉପସ୍ଥିତ ହେଲେ ତାହାର ଅର୍ଚ୍ଚନା କରିବାର ପରମ୍ପରା ସେ କାଳରେ ଓଡ଼ିଶାର ସାମାଜିକ ପରମ୍ପରାରେ ପ୍ରତିଷ୍ଠିତ ଥିଲା—ଏବେ ମଧ୍ୟ ଏହା ଅଛି। ଦାଣ୍ଡଦୁଆର ଗୋମୟରେ ଲିପି ଦୀପଜାଳି ପୂର୍ଣ୍ଣକୁମ୍ଭ ବାନ୍ଧି ଜ୍ଞାତିଗୋଷ୍ଠୀର ଲୋକେ ଆଗନ୍ତୁକ ଗୃହତ୍ୟାଗୀ ସନ୍ନ୍ୟାସୀର ପଦବନ୍ଦନା କରିବା ଯାଜପୁରର ଚୈତନ୍ୟଙ୍କ ବଂଶର ଲୋକଙ୍କ ପାଇଁ କିଛି ନୂଆକଥା ନ ଥିଲା। ଏ ବିଧି ଓଡ଼ିଶାର ସମାଜ ଚଳଣୀ ଓ ପରମ୍ପରା ସମର୍ଥିତ ଥିଲା। ଚୈତନ୍ୟଙ୍କୁ ଦେବତା ଜ୍ଞାନରେ ତାଙ୍କ ଜ୍ଞାତିଗୋଷ୍ଠୀର ଲୋକେ ଏପରି ଅର୍ଚ୍ଚନା କରୁ-ନ ଥିଲେ ମାତ୍ର ବଂଶର ଜଣେ ଗୃହତ୍ୟାଗୀ ସନ୍ନ୍ୟାସୀର ଦର୍ଶନ ଏପରି ବନ୍ଦାପନା ଅର୍ଚ୍ଚନାର କାରଣ ଥିଲା—ଏହା ଏଥିରୁ ସ୍ପଷ୍ଟ ହୁଏ।

୮୧-୮୭ ଯାଜପୁରରୁ ପୁରୀ ଆସିବା ବାଟରେ ଏମାନେ ଶୁଲଗୀ କ୍ଷେତ୍ରକୁ ଯାଇ କୀର୍ତ୍ତନ କରୁଥିଲେ ଓ ବଳଦେବଙ୍କର ଦର୍ଶନ କରି ପ୍ରସାଦ ପାଉଥିଲେ। ସ୍ନାନ ପୂର୍ଣ୍ଣିମା ପୂର୍ବରୁ ଏମାନେ ପୁରୀକୁ ଫେରିଆସୁଥିଲେ। ପ୍ରତ୍ୟେକ ବର୍ଷ

ସ୍ୱାମୀଙ୍କ ଭାଗବତ ପୋଥି ॥ ଦେବତା ଭୁଆଣେ ପୂଜନ୍ତି । ୯୮ ।
ଶ୍ରୀ ଭାଗବତ ପୋଥି ଯେତେ ॥ ଲେଖାଇ ନଅଇ ଅନେକେ । ୯୯ ।
ଭାଗବତ ଗ୍ରାମେ ପଢ଼ଇ ॥ ପୂଜନ୍ତି ଆସନେ ବସାଇ । ୧୦୦ ।
କରନ୍ତି ଛନ୍ଦି ରାସଲୀଳା ॥ ନୃତ୍ୟନ୍ତି ସବ ରସ ଖେଳା । ୧୦୧ ।
ସ୍ୱାମୀଙ୍କ ପଦ ଗୀତ ଗାଇ ॥ ନୃତ୍ୟନ୍ତି ଖୋଳ ତାଳ ବାଇ । ୧୦୨ ।

ତୋର ଚରଣେ ମନ ଲାଗଇରେ ।
ଗିରିଧର ! ତୋର ଚରଣେ ମନ ଲାଗଇରେ ॥
ନଟବର ନାଗର ଗୋପୀଙ୍କ ବାସ ଚୋର
ତୋର ଚରଣେ ମନ ଲାଗଇରେ ॥
ପଦ୍ମଜ ତୋର ଛନ୍ଦା ଭକତ ଭାବେ ବନ୍ଧା
ତୋର ଚରଣେ ମନ ଲାଗଇରେ ॥
ଗୋପୀଙ୍କ ମନ ହର ରାଧାର ଚିତ୍ତ ଚୋର
ତୋର ଚରଣେ ମନ ଲାଗଇରେ ॥
ଜଗା ଦାସ ବୋଲଇ ଦାସ ଭାବରେ ରହି
ପ୍ରେମଧନକୁ ମନ ଆସଇରେ ॥
ତୋର ଚରଣେ ମନ ଲାଗଇରେ ॥

---

ଏହିପରି ଶ୍ରୀଚୈତନ୍ୟ ଓ ପଞ୍ଚସଖା କୀର୍ତ୍ତନ କରିବା ପାଇଁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନ ଭ୍ରମଣ କରୁଥିଲେ ।

୮୭-୯୪ ଶ୍ରୀଚୈତନ୍ୟଙ୍କର କନକଗୌରକାନ୍ତି ଦର୍ଶନରେ ଲୋକଙ୍କର ମନର ଦୁଃଖ ସବୁ ଦୂର ହୋଇଯାଉଥିଲା । କୀର୍ତ୍ତନ ଆସରରେ ଶ୍ରୀଚୈତନ୍ୟଙ୍କର ଅଙ୍ଗକାନ୍ତି ଦର୍ଶକମାନଙ୍କର ପ୍ରଧାନ ଆକର୍ଷଣ ଥିଲା । କୀର୍ତ୍ତନ ଆସରରେ ଅଚ୍ୟୁତାନନ୍ଦ ରାସଲୀଳାର ପ୍ରକରଣ ରଚନା କରୁଥିଲେ । କୀର୍ତ୍ତନ ଉପର ମହାମେରୁ ଥିଲେ ସ୍ୱାମୀ ଜଗନ୍ନାଥ ଦାସ । ସେ କୀର୍ତ୍ତନର ଏକ ପ୍ରକାର ଗୁରୁ ଥିଲେ କହିଲେ ଚଳେ । କେଉଁଠି କିପରି ଭାବରେ କୀର୍ତ୍ତନ କରିବାକୁ ହେବ ଏବଂ କେଉଁ ଗୀତ କେତେବେଳେ କିପରି ଗାଇବାକୁ ହେବ ଏବଂ କିପରି କେତେବେଳେ ପଦଚାଳନା ଓ ତାଳ ଦେବାକୁ ହେବ—ଏ ଦିଗରେ ନିର୍ଦ୍ଦେଶ ଦେଉଥିଲେ ସ୍ୱାମୀ ଜଗନ୍ନାଥ ଦାସ । କୀର୍ତ୍ତନ ଆସରରେ ସାତ୍ତ୍ୱିକ ଭାବରସର ପ୍ରବର୍ତ୍ତନ କରୁଥିଲେ ବଳରାମ ଦାସ । କୀର୍ତ୍ତନ ଉପର ମର୍ମଜ୍ଞ ଥିଲେ ଅନନ୍ତ ଓ ଯଶୋବନ୍ତ । ଏହିପରି ଭାବରେ ପଞ୍ଚସଖା ଓ ଶ୍ରୀଚୈତନ୍ୟ ପୁରୀରେ ଓ ଅନ୍ୟ ସ୍ଥାନରେ କୀର୍ତ୍ତନ କରୁଥିଲେ ।

ଗୁରୁ ଅଚ୍ୟୁତ ଉପଦେଶିଲେ ॥ ଶିଷ୍ୟ ରାମଚନ୍ଦ୍ର ଅଭୟ । ୧୦୩ ।
ସ୍ୱାମୀଙ୍କୁ ବୋଲନ୍ତେ ଆସ ରୁହ ॥ କଙ୍କରପୁର ପାଟଣାହିଁ । ୧୦୪ ।
ରାସ ରଚିବ ସେହୁ ଥାନ ॥ ସାକ୍ଷାତ ଅଟଇଟି ଧାମ । ୧୦୫ ।
ସଖୀଗଣ ଯେ ମେଳ ହୋଇ ॥ ପ୍ରଭୁ ଯେ ସଙ୍ଗତରେ ଆଗ । ୧୦୬ ।
ରାସ ଯେ ରଚିଲେ ସେ ଠାନେ ॥ କୀର୍ତ୍ତନ ରସ ପରମାଣେ । ୧୦୭ ।
ସାରୋଳ ଚଣ୍ଡି ଏନ୍ତୁ ନୋହେ ॥ ସାକ୍ଷାତ ରାଧାର କଣ୍ଠହେ । ୧୦୮ ।
ମହାକ୍ଷବର ଅଟେ ସୀମା ॥ ସାକ୍ଷାତ ରାଧାର ପ୍ରତିମା । ୧୦୯ ।
ପ୍ରଭୁ ଯେ ରାସଲୀଳା କଲେ ॥ ସ୍ୱଦେଶ ମଣ୍ଡି ନୃତ୍ୟକରେ । ୧୧୦ ।
ବଡ଼ ପୂରଯା ଏନ୍ତୁ ଥାନ ॥ ମହାଭାବ ଉତ୍ପନ୍ନ ପୁଣ । ୧୧୧ ।
ଏମନ୍ତ କେତେ କାଳ ଯାଇ ॥ କୀର୍ତ୍ତନ ରସେ ମନଦେଇ । ୧୧୨ ।
ଭ୍ରମନ୍ତ ବହୁ ନଗ୍ର ଗ୍ରାମେ ॥ କୀର୍ତ୍ତନ ରସ ପ୍ରଚାରଣେ । ୧୧୩ ।
କହଇ ମାଧବ ଗୁଆଳ ॥ କୀର୍ତ୍ତନ ରସେ ମତ୍ତ ଢାଳ । ୧୧୪ ।

---

ଗୁରୁ ପଣ୍ଡିତ ଗଦାଧର ପୁରୀରେ ଟୋଟା ଗୋପୀନାଥଙ୍କର ପୂଜକ ଥିଲେ । ତେଣୁ କୀର୍ତ୍ତନ ଆସରରେ ସେ ପୁରୀ ଛାଡ଼ି କୌଣସିଆଡ଼େ ଶ୍ରୀଚୈତନ୍ୟଙ୍କ ସହିତ ଯାଇପାରୁ ନ ଥିଲେ । ସ୍ୱରୂପ ଦାମୋଦର ପୁରୀରେ ଥିଲେ ମଧ୍ୟ ଚୈତନ୍ୟଙ୍କ ସହିତ ସେ କୌଣସି ସ୍ଥାନକୁ ଯାଇପାରୁ ନ ଥିଲେ । କାରଣ ତାଙ୍କ ଶରୀର ସର୍ବଦା ଅସୁସ୍ଥ ରହୁଥିଲା; ସେ ଯନ୍ତ୍ରଣା ଭୋଗ କରୁଥିଲେ । ସେ ଶ୍ୱାସ ରୋଗରେ କଷ୍ଟ ଭୋଗୁଥିବା କଥା ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଏ ।

କୀର୍ତ୍ତନ ଆସରରେ ପଞ୍ଚସଖାଙ୍କ ସହଯୋଗ ସମ୍ପର୍କରେ ପ୍ରାମାଣିକ ବିବରଣୀ ଏଥିରୁ ମିଳେ । ଅପୂର୍ବିକ ପୁଣ୍ୟଲାଭ କରିବା ପାଇଁ, ହିଂସ୍ରଜନ୍ତୁ ଭୟରୁ ଓ ପ୍ରାକୃତିକ ଉତ୍ପାତରୁ ରକ୍ଷା ପାଇବା ପାଇଁ ଲୋକେ ଗ୍ରାମେ ଗ୍ରାମେ କୀର୍ତ୍ତନର ଆୟୋଜନ କରୁଥିଲେ । ପଞ୍ଚସଖା ଓ ଶ୍ରୀଚୈତନ୍ୟଙ୍କୁ ସେମାନେ ପୁରୀରୁ ନିମନ୍ତ୍ରଣ କରି ନେଉଥିଲେ ।

ଶ୍ରୀଚୈତନ୍ୟ ଓ ପଞ୍ଚସଖା ଯେଉଁ ସ୍ଥାନକୁ ଯାଇ କୀର୍ତ୍ତନ କରୁଥିଲେ, ସେଠାରେ ପ୍ରଥମେ ସ୍ୱାମୀ ଜଗନ୍ନାଥ ଦାସଙ୍କ ଭାଗବତ ପୋଥିମାନ ଆସନ ଉପରେ ସ୍ଥାପନ କରି ଦେବତା ଭଳି ପୂଜା କରାଯାଉଥିଲା । ଗ୍ରାମେ ଗ୍ରାମେ ଭାଗବତପାଠ କରାଯାଉଥିଲା ଏବଂ ଭାଗବତ ପୋଥିମାନ ଆସନ ଉପରେ ରଖି ପୂଜା କରିବା ସଙ୍ଗେ ସଙ୍ଗେ ତା ଚାରିପଟେ ଏହି ବୈଷ୍ଣବଗୋଷ୍ଠୀ କୀର୍ତ୍ତନ କରୁଥିଲେ ଓ ନୃତ୍ୟ କରୁଥିଲେ । କୀର୍ତ୍ତନ ବେଳେ ଗୀତଗୋବିନ୍ଦ ଓ କର୍ଣ୍ଣାମୃତ ପଦ ଗାନକରି ନୃତ୍ୟ କରାଯାଉଥିଲା; ତା ସହିତ କେତେକ ଓଡ଼ିଆ କୀର୍ତ୍ତନ ଗୀତ ମଧ୍ୟ ଗାନ କରାଯାଉଥିଲା । କାରଣ ସାଧାରଣ

# ନବମ ଅଧ୍ୟାୟ

ନୀଳାଚଳର ଇଷ୍ଟଗୋଷ୍ଠୀ ॥ ଛଅ ପାର୍ଶ୍ୱେଣ ବସନ୍ତି । ୧ ।
ରାମ ରାୟ ଯେ ମୁଖ୍ୟ ଏଥି ॥ ପ୍ରଭୁ ସ୍ୱାମୀ ମଧ୍ୟେ ବସନ୍ତି । ୨ ।
ବଳରାମ ଯେ ସ୍ୱାମୀ ପାର୍ଶ୍ୱେ ॥ ଅନନ୍ତ ଅଚ୍ୟୁତ ଯଶୋବନ୍ତେ । ୩ ।
ସ୍ୱରୂପ ରଘୁନାଥ ଦାସ ॥ ଅନନ୍ତ ପଣ୍ଡିତ ବିଶେଷ । ୪ ।
ସାର୍ବଭୌମ ମଧ୍ୟେ ବସନ୍ତି ॥ ଶାସ୍ତ୍ର ବିଚାର ଯେ କରନ୍ତି । ୫ ।
ବୃନ୍ଦାବନରୁ ରୂପ ଆସେ ॥ ରାଜାର ଅଙ୍କ ନାଟକଲେଖେ । ୬ ।
ରୂପ ଦେଖାଇଲେ ନାଟକ ॥ ପ୍ରଭୁ ବୋଲନ୍ତି ପଢ଼ିବାକ । ୭ ।
ଇଷ୍ଟଗୋଷ୍ଠୀରେ ଆସି ହେଲେ ॥ ନାଟକ ରୂପ ଦେଖାଇଲେ । ୮ ।
ପ୍ରଭୁ ଯେ ରାମ ରାୟେ ଦେଲେ ॥ ପରୀକ୍ଷା କରନ୍ତୁ ବୋଇଲେ । ୯ ।

---

ଜନତା ସମ୍ପୃକ୍ତ ନ ଥିଲେ । ଏହିଭଳି ଏକ ଓଡ଼ିଆ କୀର୍ତ୍ତନ ଗୀତ ଏଠାରେ ଉଦ୍ଧାର କରାଯାଇଛି । ଏହାର ଲେଖକ ସ୍ୱାମୀ ଜଗନ୍ନାଥ ଦାସ ।

ଥରେ ଅଚ୍ୟୁତାନନ୍ଦଙ୍କ ଜଣେକ ଶିଷ୍ୟ ରାମଚନ୍ଦ୍ର ପୂଜାରୀ ଏହି ଗୋଷ୍ଠୀକୁ ନିମନ୍ତ୍ରଣ କରିନେଇଥିଲେ ଝଙ୍କଡ଼ପୁରପାଟଣାକୁ (ଆଧୁନିକ ସାରଳା ଚଣ୍ଡୀ ପୀଠ ଝଙ୍କଡ଼କୁ) ସେଠାରେ କୀର୍ତ୍ତନ କରିବା ପାଇଁ । ସାରଳା ଚଣ୍ଡୀଙ୍କ କ୍ଷେତ୍ରରେ ପଞ୍ଚସଖା ଓ ଶ୍ରୀଚୈତନ୍ୟ କୀର୍ତ୍ତନ କରିଥିଲେ । ସାରଳା ଚଣ୍ଡୀଙ୍କ ଦର୍ଶନରେ ଏମାନଙ୍କର ରାଧାଭାବ ଜାତ ହୋଇଥିଲା । ଏହି ସ୍ଥାନଟି ବଡ଼ ସୁରମ୍ୟ ଓ ଅନ୍ୟତମ ପ୍ରଧାନ କ୍ଷେତ୍ରରୂପେ ସ୍ୱୀକୃତ ହୋଇଥିଲା ।



୧-୧୭ ନୀଳାଚଳର ଇଷ୍ଟଗୋଷ୍ଠୀ ସମ୍ପର୍କରେ ବିବରଣୀ ଏଠାରେ ପ୍ରଦତ୍ତ । ଇଷ୍ଟଗୋଷ୍ଠୀ ମନ୍ଦିର ଉତ୍ତର ପାର୍ଶ୍ୱରେ ନିର୍ମିତ ମଣ୍ଡପରେ ପ୍ରତ୍ୟହ ବସୁଥିଲେ । ରାୟ ରାମାନନ୍ଦ ଏଥିର ମୁଖ୍ୟ ଥିଲେ । ଶ୍ରୀଚୈତନ୍ୟ ଓ ସ୍ୱାମୀ ଜଗନ୍ନାଥ ଦାସ ଏହି ଗୋଷ୍ଠୀର ମଧ୍ୟ ଭାଗରେ ଆସନ ଗ୍ରହଣ କରୁଥିଲେ । ବଳରାମ ଦାସ, ସ୍ୱାମୀ ଜଗନ୍ନାଥ ଦାସଙ୍କ ପାର୍ଶ୍ୱରେ ବସୁଥିଲେ । ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ସ୍ୱରୂପ ଦାମୋଦର, ରଘୁନାଥ ଦାସ ପ୍ରମୁଖ ବିଶିଷ୍ଟ ବୈଷ୍ଣବମାନେ ଇଷ୍ଟଗୋଷ୍ଠୀରେ ପ୍ରତ୍ୟହ ବସୁଥିଲେ । ରଘୁନାଥ ଦାସ ଗୋସ୍ୱାମୀ ଶେଷ ପର୍ଯ୍ୟନ୍ତ ନୀଳାଚଳରେ ଥିବା ଏଥିରୁ ଜଣାଯାଏ । ବାସୁଦେବ ସାର୍ବଭୌମ ଇଷ୍ଟଗୋଷ୍ଠୀର ମଧ୍ୟ ଭାଗରେ ବସି ଆବଶ୍ୟକତାନୁସାରେ ଶାସ୍ତ୍ରୀୟ

ରାୟ ବୋଇଲେ ପଢ଼ ଶ୍ଳୋକ ॥ କବିତ୍ୱ ପରମାଣିବାକ ।୧୦।
ରୂପ ପଢ଼ଇ ଶ୍ଳୋକ ଯେତେ ॥ ନାହିଁଟି ସୁଧା ମାନ ପଟନ୍ତେ ।୧୧।
ରାୟ ବୋଇଲେ ରୂପେ ସୁଧି ॥ କବିତ୍ୱ ତୋର ଅମୃତ ନିଧି ।୧୨।
ଏତେକ ରସ ନାଟ କଲୁ ॥ ଭକତା ରସ ଆସ୍ୱାଦିଲୁ ।୧୩।
ତୋର ନାଟକ ଯେ ବିଶେଷ ॥ ପ୍ରକାଶ ହେଉ ସର୍ବଦେଶ ।୧୪।
ବିଦଗ୍ଧ ମାଧବ ଏ ନାଟ ॥ ଲୋକରେ ହେଲାଟି ପ୍ରକଟ ।୧୫।
ରୂପ ରହିଲେ ଚାରିମାସେ ॥ ଗମନ୍ତି କାର୍ତ୍ତିକ ପ୍ରବେଶେ ।୧୬।
ରଘୁନାଥ ରୂପ ସଙ୍ଗତେ ॥ ଗଲେକ ବୃନ୍ଦାବନ ପଥେ ।୧୭।
ସ୍ୱରୂପ ସେହୁ ଏଥେ ରହି ॥ ଅନେକ କଷ୍ଟ ସେ ଭୋଗଇ ।୧୮।

---

ସିଦ୍ଧାନ୍ତ ପ୍ରକାଶ କରୁଥିଲେ । ରାଜାଙ୍କ ଚତୁରାଙ୍କସ ଅଙ୍କ = ଖ୍ରୀ: ୧୫୩୨ । ବୋଧହୁଏ ଜୁଲାଇ ମାସର ରଥଯାତ୍ରା ବେଳେ ରୂପ ଗୋସ୍ୱାମୀ ବୃନ୍ଦାବନରୁ ଆସି ନୀଳାଚଳରେ ପହଞ୍ଚିଲେ । ରୂପ ତାଙ୍କ ରଚିତ ନାଟକ ପୋଥି ଚୈତନ୍ୟଙ୍କୁ ଦେଖାଇଲେ । ଚୈତନ୍ୟଙ୍କ ନିର୍ଦ୍ଦେଶରେ ରୂପ ତାଙ୍କ ନାଟକକୁ ଇଷ୍ଟଗୋଷ୍ଠୀରେ ଉପସ୍ଥାପିତ କଲେ ଏବଂ ରାୟ ରାମାନନ୍ଦ ରୂପଙ୍କୁ ଶ୍ଳୋକ ଆବୃତ୍ତି କରିବା ପାଇଁ ନିର୍ଦ୍ଦେଶ ଦେଲେ ଓ ଅନେକ ପ୍ରଶ୍ନ ପଚାରିଲେ । ରୂପ ସେ ସବୁ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଲାପରେ ରାୟ ରାମାନନ୍ଦ ଏହି ନାଟକର ବିଶେଷତ୍ୱ ପ୍ରକାଶ କଲେ ଏବଂ ରୂପଙ୍କ କବିତ୍ୱ ବାସ୍ତବରେ ଅମୃତର ଧାରା ବୋଲି ଘୋଷଣା କଲେ । ତା'ପରେ ଏ ନାଟକର ପ୍ରଚାର ଓ ପ୍ରସାର ଘଟିଲା । ନୀଳାଚଳର ପଣ୍ଡିତମାନଙ୍କ ଦ୍ୱାରା ପରୀକ୍ଷିତ ନ ହେଲେ କୌଣସି କାବ୍ୟକୃତି ଲୋକରେ ପ୍ରସାରର ସୁଯୋଗ ପାଉ ନ ଥିଲା । ରୂପ ଗୋସ୍ୱାମୀଙ୍କ ରଚିତ 'ବିଦଗ୍ଧ ମାଧବ' ନାଟକ ପୂର୍ବର ଇଷ୍ଟଗୋଷ୍ଠୀ ଦ୍ୱାରା ପରୀକ୍ଷିତ ହେଲାପରେ ଏବଂ ରାୟ ରାମାନନ୍ଦ ରୂପଙ୍କ କବିତ୍ୱକୁ ଉଚ୍ଛ୍ୱସିତ ପ୍ରଶଂସା କଲାପରେ ଏହା ଲୋକରେ ପ୍ରଚଳିତ ହେଲା । ରୂପ ଗୋସ୍ୱାମୀ ଖ୍ରୀ: ୧୫୩୨ର ରଥଯାତ୍ରାକୁ ଆସି ଏଠାରେ ଚାରିମାସ ରହିଲେ ଏବଂ କାର୍ତ୍ତିକ ପ୍ରବେଶରେ ସେ ଏଠାରୁ ବୃନ୍ଦାବନକୁ ପ୍ରତ୍ୟାବର୍ତ୍ତନ କଲେ । ରଘୁନାଥ ଦାସ ଗୋସ୍ୱାମୀ ରୂପଙ୍କ ସହିତ ବୃନ୍ଦାବନ ଗଲେ ।

୧୮-୨୭ ନୀଳାଚଳରେ ସ୍ୱରୂପ ଦାମୋଦର ବରାବର ଶ୍ରୀଚୈତନ୍ୟଙ୍କ ସହିତ କାଶୀ-ମିଶ୍ରଙ୍କ ଗମ୍ଭୀରାରେ ରହୁଥିଲେ । ସେ ଅନେକ କଷ୍ଟ ଭୋଗ କରୁଥିଲେ । ସେ ସର୍ବଦା ଶ୍ୱାସ ରୋଗରେ ପୀଡ଼ିତଥାଇ ଯନ୍ତ୍ରଣା ଭୋଗୁଥିଲେ । ମାଘ ଶୁକ୍ଳ ଏକାଦଶୀରେ କାଶୀ ମିଶ୍ରଙ୍କ ଗମ୍ଭୀରାରେ ତାଙ୍କର କାଳ ହେଲା । ଏହା ବୋଧହୁଏ ଖ୍ରୀ: ୧୫୩୩ର ଫେବୃଆରୀ ମାସ ହେବ । ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ଓ ଭକ୍ତ ମାଧବ ପଞ୍ଚନାୟକ ମିଳିତ ହୋଇ ସନ୍ଧ୍ୟାରେ ତାଙ୍କ

ଶ୍ରାମବେଗର ଏ ବେଷ୍ଟର ॥ କରଇ ସେହୁ କଳବଳ । ୧୯ ।
ମାଘ ଶୁକ୍ଳ ଏକାଦଶୀରେ ॥ ଦେହରକ୍ଷା ତା ରାତ୍ରିରେ । ୨୦ ।
ଅନନ୍ତ ଅଚ୍ୟୁତ ମିଳିଲ୍ ॥ ଯଶୋବନ୍ତକୁ ହକାରିଲ୍ । ୨୧ ।
ନେଲ୍ ସେ ଶବ ସମୁଦ୍ରକୁ ॥ ଭସାଇଦେଲ୍ ସେ ସନ୍ତଙ୍କୁ । ୨୨ ।
ପ୍ରଭୁ ମୁଖ୍ କଥା ନଷ୍ଟ କରେ ॥ ଗ୍ରସ୍ତ ସେ ଅମ୍ଭିତ ହୋଇଲେ । ୨୩ ।
ସ୍ୱାମୀ ବଳରାମ ସମେତେ ॥ ଦୁଃଖ ସେ ଚିନ୍ତି କଲେ କେତେ । ୨୪ ।
ଗଦାଧରେ ପ୍ରଭୁ ହକାରେ ॥ ଚାଲ ରୁ ଏଥୁଁଟି ଗୌଡ଼ରେ । ୨୫ ।
ସ୍ୱରୂପ ଏଥେ ମାରଗଲ ॥ ଜଣାଅ ଭକତଙ୍କୁ ଭଲ । ୨୬ ।
ଗଦାଧର ସେ ଗଲେ ଗୌଡ଼େ ॥ ଫଗୁଣ ମାସ ପଶନ୍ତରେ । ୨୭ ।
ବଳରାମ ସେ ସୁପଣ୍ଡିତ ॥ ବେଦାନ୍ତ ଶାସ୍ତ୍ରେ ମତରତ । ୨୮ ।
ରଚିଲ ସେହୁ ରାମାୟଣ ॥ ଭଗବତ ଗୀତା ବଖାଣ । ୨୯ ।
ବ୍ରହ୍ମଜ୍ଞାନେଣ ମତ ଦୃଢ଼ ॥ ଭଗତ ଯାହାଙ୍କୁ ନବାଡ଼ । ୩୦ ।
ସଦା କୀର୍ତ୍ତନ ସେ କରଇ ॥ କାହୁ ନ କହ କାହାକଇ । ୩୧ ।
ଭଜଇ ନାମ ଅନର୍ଗଳା ॥ ମରଣ କାଳ ଆସି ହେଲ । ୩୨ ।
ବୋଇଲ ଅନ୍ନ ଛାଡ଼ିବଇଁ ॥ ଧର୍ମ ଉପବାସ କହ । ୩୩ ।
ବସଇ ନିଭୃତ ମଣ୍ଡପେ ॥ ଫଗୁଣ ଶୁକ୍ଳ ଦଶଦିନେ । ୩୪ ।
ପିଣ୍ଡ ପରାଣ ଛାଡ଼ିଯାଇ ॥ ବୃଦ୍ଧଙ୍କ ଝୁଲ୍ଲା ପଡ଼ଇ । ୩୫ ।
ପ୍ରଭୁ ସ୍ୱାମୀ ସେ ଯଶୋବନ୍ତ ॥ କହୁଛ ଅଚ୍ୟୁତ ଅନନ୍ତ । ୩୬ ।
ରାମ ରାୟ ସେ ଆସି ହେଲେ ॥ ସରବେ ଗୁଣ ସୁମରିଲେ । ୩୭ ।
ଜଗନ୍ନାଥର ପ୍ରିୟ ସେହୁ ॥ ଜଗନ୍ନାଥ ଅଙ୍ଗେ ମିଶଇ । ୩୮ ।
ଯୋଗମୋଦ୍ର ଉଚ୍ଚେଣ ବାଳକ ॥ ପୋତାଇଲେ ଶବ ରାସର । ୩୯ ।
ଭଗତେ ଶୁଣିଲେ ବାରତା ॥ ଅଶ୍ରୁ ଝରାଇ ଅଧୋମଥା । ୪୦ ।
ପ୍ରଭୁ ସ୍ୱାମୀ ସେ ନ ଉଠିଲେ ॥ ତାହାରେ କଥା ନ ବୋଇଲେ । ୪୧ ।

---

ଶବକୁ ସମୁଦ୍ରରେ ନେଇ ପୋତାଇ ଦେଇ ଆସିଲେ । ଏହା ବୋଧହୁଏ ସ୍ୱରୂପ ଦାମୋଦରଙ୍କର ଶେଷ ଇଚ୍ଛା ଥିଲା । ଏହି ମୃତ୍ୟୁରେ ଶ୍ରୀଚୈତନ୍ୟ, ରାୟ ରାମାନନ୍ଦ, ଜଗନ୍ନାଥ ଦାସ ଓ ବଳରାମ ଦାସ ବହୁତ ଦୁଃଖ କଲେ । ଟୋଟା ଗୋପୀନାଥ ପୂଜକ ଗଦାଧର ପଣ୍ଡିତଙ୍କୁ ଡାକିଲ ଶ୍ରୀଚୈତନ୍ୟ ତାଙ୍କୁ ଗୌଡ଼ରେ ଯାଇ ଏ ବାର୍ତ୍ତା ଜଣାଇବାକୁ ପଠାଇଦେଲେ । ଫଗୁଣ ମାସ ଆରମ୍ଭରେ ଗଦାଧର ପଣ୍ଡିତ ଗୌଡ଼କୁ ଗଲେ । ସେ ଆଉ ନୀଳାଚଳକୁ ଫେରିଆସିବାର ବର୍ଣ୍ଣନା ନାହିଁ ।

୨୮-୪୧ ପଞ୍ଚସଖା ଅନ୍ତର୍ଗତ ବଳରାମ ଦାସ ସୁପଣ୍ଡିତ ଥିଲେ । ବେଦାନ୍ତ ଶାସ୍ତ୍ର ଚର୍ଚ୍ଚାରେ ତାଙ୍କର ମତ ଦୃଢ଼ ଥିଲା । ସେ 'ବେଦାନ୍ତସାର ଗୁପ୍ତଗୀତା'

| | | |
|---|---|---|
| ଶୁଣ ସୁଜନେ ମନଦେଇ ॥ | ପ୍ରଭୁ ଯେ ଅଟେ ପୂର୍ଣ୍ଣଦେହୀ | ।୪୨। |
| ପ୍ରଭୁର ଅଟେ ଶୁଦ୍ଧ ଦେହ ॥ | କାଳେ ଯେପରି ଗଲା କ୍ଷୟ | ।୪୩। |
| ଏକ ଦିନକେ ନୃତ୍ୟ କଲା ॥ | ଉଦ୍ଦାମ ଭାବ ନ ଛାଡ଼ିଲା | ।୪୪। |
| ଖୋଲ କରତାଳ ସହିତ ॥ | ପାଦ ପକାଇ ଅବିରତ | ।୪୫। |
| ବାଟେ ଇଟାଏ ପଡ଼ିଥିଲା ॥ | ତାହିଁକି ଦୃଷ୍ଟି ତା ନ ଥିଲା | ।୪୬। |
| ବାଜିଲା ବାମ ବୃଦ୍ଧାଙ୍ଗୁଷ୍ଠି ॥ | ରୁଧିର ଝରଇ ନିକଟି | ।୪୭। |
| ପାଦ ଖଞ୍ଜାଇ ମୋଡ଼ିହେଲା ॥ | ଧଳଗାଜ ତଳେ ପଡ଼ିଲା | ।୪୮। |
| ସ୍ୱାମୀ ଯେ କାଶୀଶ୍ୱର ମିଶ୍ର ॥ | ଯଶୋବନ୍ତ ଶ୍ରୀବତ୍ସ ଅନନ୍ତ | ।୪୯। |
| ସର୍ବେ ହୋଇଣ ଏକମେଳ ॥ | ପ୍ରଭୁଙ୍କୁ ସମ୍ଭାଳେ ଭୂତଳ | ।୫୦। |
| ପ୍ରଭୁ ଯେ ହତଜ୍ଞାନ ହୋଇ ॥ | ତଳେ ପଡ଼ିଛୁ ଚେତା ନାହିଁ | ।୫୧। |
| ପ୍ରଭୁଙ୍କୁ କାନ୍ଧେ ଟେକିଦେଲେ ॥ | ରୁକ୍ମିଣୀ ଅମାବାସ୍ୟା ସାୟଂକାଳେ | ।୫୨। |
| ଉତ୍ତର ପାର୍ଶ୍ୱ ମଣ୍ଡପେ ॥ | ଶୁଆଇ ଦେଲେ ଚଟାଟୋପେ | ।୫୩। |
| ନାସାରୁ ଅନିଳ ବୋହଇ ॥ | ଚକ୍ଷୁ ମୁଦିଣ ପଡ଼ିଥାଇ | ।୫୪। |
| ମୁଖେଣ ସକଳ ପିଞ୍ଜନ ॥ | କେତେବେଳେକେ ଉଦେଜନ | ।୫୫। |
| ଚକ୍ଷୁ ମେଲାଇଣ ଚାହିଁଲା ॥ | ପିଣ୍ଡେ ପରାଣ ପ୍ରବେଶିଲା | ।୫୬। |
| ସକଳେ ହୋଇଲେ ହରଷ ॥ | ସ୍ୱାମୀ ହେରଇ ପ୍ରଭୁ ମୁଖ | ।୫୭। |
| ବୋଲଇ ପ୍ରଭୁ କଥା କହ ॥ | ପିଣ୍ଡେ ମୋହର ପ୍ରାଣ ଦଅ | ।୫୮। |

---

ରଚନା କରିଥିବା ଏହାର ପ୍ରମାଣ । ସେ ରାମାୟଣ ରଚନା କରି ଆପଣାର ଭକ୍ତିନିଷ୍ଠା ପ୍ରକାଶ କରିଥିଲେ । ଭଗବତ ଗୀତା ବ୍ୟାଖ୍ୟା କରି ସେ ଓଡ଼ିଆ ଭାଷାରେ ତାହା ପ୍ରକାଶ କରିଥିଲେ । ଭକ୍ତି ଶାସ୍ତ୍ରରେ ତାଙ୍କର ପାରଦର୍ଶିତା ଥିଲା । ବ୍ରହ୍ମଜ୍ଞାନରେ ତାଙ୍କର ଜ୍ଞାନଗାମ୍ଭୀର୍ଯ୍ୟ ପ୍ରକଟିତ ଥିଲା । ସର୍ବଦା ନାମ କୀର୍ତ୍ତନରେ ତାଙ୍କର ସମୟ କଟୁଥିଲା । ମୃତ୍ୟୁକାଳ ଉପସ୍ଥିତ ହେବାର ଜାଣି ସେ ନିଶ୍ଚଳ ରହିଲେ; କାହା ସହିତ ବିଶେଷ କଥାବାର୍ତ୍ତା କଲେନାହିଁ । ସେ ଅନ୍ନ ଛାଡ଼ିଦେଲେ । ଆତ୍ମତୃପ୍ତିରେ ମୌନବ୍ରତ ଅବଲମ୍ବନ କରି ଦେହ-ତ୍ୟାଗର ସଙ୍କଳ୍ପ ନେଇ ସେ ନିର୍ବେଦ ଭାବରେ ବସି ରହିଲେ । ଫାଲ୍‌ଗୁନ ଶୁକ୍ଳ ଦଶମୀ ଦିନ ତାଙ୍କ ପିଣ୍ଡରୁ ପ୍ରାଣବାୟୁ ଉଡ଼ିଗଲା । ଏହା ଖ୍ରୀ: ୧୫୩୩ ମାର୍ଚ୍ଚ ମାସ (ବୋଧହୁଏ ୨୭ ତାରିଖ) । ସମୁଦ୍ରତଟ ବାଲିରେ ତାଙ୍କ ଶବକୁ ପୋତି ଦିଆଗଲା ।

୪୨-୬୭ ଶ୍ରୀଚୈତନ୍ୟ ଥିଲେ ପୂର୍ଣ୍ଣଦେହୀ । ତାଙ୍କ ଶରୀର, ଶୁଦ୍ଧ ଶରୀର । ତାହା ଯେପରି କ୍ଷୟ ହେଲା, ତାହାର ବିବରଣୀ ଏଠାରେ ପ୍ରଦତ୍ତ । ସେ ଦିନେ ଉଦ୍ଦାମ ଭାବରେ ନୃତ୍ୟ କଲାବେଳେ ବାଟରେ ପଡ଼ିଥିବା ଖଣ୍ଡେ ଇଟା ଉପରେ ତାଙ୍କ ବାମ ପାଦ ପଡ଼ିଗଲା । ବାମ ବୃଦ୍ଧାଙ୍ଗୁଷ୍ଠରେ କ୍ଷତ ହୋଇ

| | | |
|---|---|---|
| ଭାଳେ ସାଷ୍ଟାଙ୍ଗ ହୋଇ ପ୍ରଭୁ | ଗଲେ ନମ ଆନୁ ଲୋକ ସବୁ | । ୫୯ । |
| ରଜନୀ ପହରକ ବେଳେ | ସମ ସମସ୍ତେ ତଳେ ହେଲେ | । ୬୦ । |
| ମନ୍ଦିରେ ବାଜେ ଖୋଳ ତାଳ | ଶୁଣୁ ଗମ୍ଭୀର ନାଦରୋଳ | । ୬୧ । |
| ପ୍ରଭୁ ବୋଲଇ ମୋତେ ନିଅ | ଦେଖିବ ନୃତ୍ୟ କ୍ଷଣ ରହ | । ୬୨ । |
| ମାତ୍ର ପାଦ ନ ପଡ଼ଇ | ସ୍ୱାମୀ ବସାଇ କରି ଦେଇ | । ୬୩ । |
| ବୋଇଲେ ପ୍ରଭୁ ତୁ ନ ଚଳ | ଏ ଥାନେ ବସ ରୁ ନିଶ୍ଚଳ | । ୬୪ । |
| ପାଦେ ତୋ ବ୍ୟଥା ଉପୁଜାତ | ନ ଚଳ ଏଥୁ ଏକହାତ | । ୬୫ । |
| ତୋହରେ ପାନ ଭୋଜନାଇ | ମୁଁ ଥିବ ତୋରେ ନିଯୋଗାଇ | । ୬୬ । |
| ଏମନ୍ତ ଗଲା ସନ୍ଧିକାଳ | ପ୍ରଭାତ ଆସି ହେଲା ଠାଳ | । ୬୭ । |

ଲକ୍ତ ହେଲା । ବାମ ପାଦର ଗଣ୍ଠି ମୋଡ଼ି ହୋଇଗଲା । ସେ ଗଳାରେ ଗର୍ଜନ କରି ତଳେ ପଡ଼ିଗଲେ । ଏହା ରୁକ୍ମିଣୀ ଅମାବାସ୍ୟା ବା ବୈଶାଖ ଅମାବାସ୍ୟାର ସନ୍ଧ୍ୟା ସମୟ । ଏହି ସନ୍ଧ୍ୟାର କୀର୍ତ୍ତନରେ ଜଗନ୍ନାଥ ଦାସ, କାଶୀଶ୍ୱର ମିଶ୍ର, ଯଶୋବନ୍ତ ଦାସ, ଶ୍ରୀବତ୍ସ, ଅନନ୍ତ ପ୍ରମୁଖ ଉପସ୍ଥିତ ଥିଲେ । ଶ୍ରୀଚୈତନ୍ୟ ତଳେ ପଡ଼ି ଅଚେତ ହୋଇଗଲେ । ଉପସ୍ଥିତ ବୈଷ୍ଣବମାନେ ତାଙ୍କୁ ଟେକିନେଇ ମନ୍ଦିର ଉତ୍ତରପାର୍ଶ୍ୱ ମଣ୍ଡପରେ ଶୁଶ୍ରୂଷା ଦେଲେ । ମୁହଁରେ ଜଳ ସିଞ୍ଚିବାରୁ କେତେ ସମୟ ପରେ ତାଙ୍କର ଚେତା ଫେରିଲା । ଉପସ୍ଥିତ ସମସ୍ତେ ଆଶ୍ୱସ୍ତ ହେଲେ । କିଛି ସମୟ ପରେ ସେ କଥାବାର୍ତ୍ତା କଲେ । ଲୋକେ ସେଠାରୁ ଧୀରେ ଧୀରେ ଚାଲିଗଲେ । ମନ୍ଦିରରେ ସନ୍ଧ୍ୟାର କୀର୍ତ୍ତନ ଖୋଳ କରତାଳନାଦ ଶୁଣିବାରୁ ଚୈତନ୍ୟ ମନ୍ଦିରକୁ ଯିବାକୁ ଚାହିଁଲେ । ମାତ୍ର ସେ ସେହି ସ୍ଥାନରୁ ଉଠି ଠିଆ ହୋଇପାରୁ ନ ଥିଲେ । ଜଗନ୍ନାଥ ଦାସ ତାଙ୍କୁ କହିଲେ—ତୁମେ ନିଶ୍ଚଳ ହୋଇ ଏଠାରେ ରୁହ । ତୁମ ପାଦରେ ବ୍ୟାଘାତ ହୋଇଛି—ମୁଁ ତୁମକୁ ଏଠାରେ ଖାଦ୍ୟପାନୀୟ ସବୁ ଯୋଗାଇ ତୁମର ଶୁଶ୍ରୂଷା କରିବି ।

୬୭-୯୦ ତା' ଆରଦିନ ସକାଳେ (ବୈଶାଖ ଶୁକ୍ଳ ପ୍ରତିପଦା) ଦେଖାଗଲା, ପ୍ରଭୁଙ୍କ ଶରୀରରେ ଖୁବ୍ ଉତ୍ତାପ ଅଛି । ସଖାରେ ଦେଖିଲା ବେଳକୁ ପାଦ ଫୁଲି-ଯାଇଛି ଓ ବାମ ପାଦର ଆଙ୍ଗୁଠି ପୀଡ଼ା ଦେଉଛି । ଶେଷରେ ଜଗନ୍ନାଥ ଦାସ ପାଣି ଗରମ କରି ସେଥିରେ କନିଆ ବୁଡ଼ାଇ ପ୍ରଭୁଙ୍କ ପାଦରେ (ସେକ) ଦେଲେ । ପୀଡ଼ା ସାମୟିକ ଭାବରେ ଲାଘବ ହେବାର ଜଣାଗଲେ ମଧ୍ୟ ରାତିକୁ ଶରୀରର ଉତ୍ତାପ ନ ଛାଡ଼ିଲାନାହିଁ ବରଂ ସମୁଦାୟ ଶରୀରରେ ଜ୍ୱରଜାତ ହେଲା । ସ୍ୱାମୀଙ୍କୁ ପ୍ରଭୁ କହିଲେ—ତୁ ଥିଲେ ମୋର ଭାଲ ହେବନାହିଁ । ତୋ ସଙ୍ଗ ମୁଁ ଛାଡ଼ିପାରିବି ନାହିଁ । ଈଶ୍ୱରଙ୍କ ଇଚ୍ଛା ହିଁ ମନୁଷ୍ୟ ଜୀବନରେ ପୂର୍ଣ୍ଣତାପ୍ରାପ୍ତ ହୁଏ । ସଂସାରରେ ଯେଉଁମାନେ ବିଷ୍ଣୁଭକ୍ତ ବା ହରି ସେବକ,

ପ୍ରଭୁର ଶରୀର କପଟ ॥ ସେଦିନ ଯାକ ଝାଳ ଫୁଟି । ୬୮ ।
ପଣ୍ଡାଙ୍କୁ ପାଦ ଫୁଲିଗଲା ॥ ବାମ ଅଙ୍ଗୁଷ୍ଠି ପୀଡ଼ା ଦେଲା । ୬୯ ।
ସ୍ୱାମୀ ସେ ଜଳ ତପତାଇ ॥ ତାହିଁ କଣଆ ବୁଡ଼ାଇ । ୭୦ ।
ପ୍ରଭୁର ବାମପାଦେ ଦେଲା ॥ ଉତ୍ତମ ହେଲା କି ବୋଇଲା । ୭୧ ।
ତାହାଙ୍କ କଣଆ ଉତ୍ତମ ॥ ପାଇଣ ଶାନ୍ତ କଲ ମନ । ୭୨ ।
ତେବେହେଁ ତାପ ନ ଛାଡ଼ିଲା ॥ ସ୍ୱପନେ ଅଙ୍ଗ କମ୍ପ ଦେଲା । ୭୩ ।
ସ୍ୱାମୀଙ୍କୁ ବୋଇଲା ସମ୍ଭାଳି ॥ ତୁ ଥିଲେ ମୋର ନାହିଁ କାଳ । ୭୪ ।
ତୋ ସଙ୍ଗ ମୁଁ କି ଛାଡ଼ିବଇଁ ॥ ହରିର ଇଚ୍ଛା ପୂର୍ଣ୍ଣ ହୋଇ । ୭୫ ।
ହରି ସେବକେ ଯେତେ ଭବେ ॥ ତାଙ୍କର ମୃତ୍ୟୁ ନୋହେ କବେ । ୭୬ ।
ତୁ ଜଗନ୍ନାଥର ସେବକ ॥ ସେବକ ମୁଁ ତୋ ଅବିବେକ । ୭୭ ।
ସେବା ପାଇଲି ତୋର ହାତୁଁ ॥ ଜାଣଇ ସବୁ ଜଗବନ୍ଧୁ । ୭୮ ।
ତା ବିନା ଗତି ଆଉ ନାହିଁ ॥ ପ୍ରାଣୀର ଅର୍ଥ ନିବାରଇ । ୭୯ ।
ରଖାଇ ଆପଣା ଚରଣେ ॥ ମୋତେ କି ନେବ ନିଜଧାମେ । ୮୦ ।
ତୁ ସ୍ୱାମୀ ମୋହର ସଖାଣ ॥ ସୁଜ୍ଞାନୀ ପଣ୍ଡିତ ସୁଜାଣ । ୮୧ ।
ଭକତ ବାଟ ବତାଇଲୁ ॥ ସଖ୍ୟରେ ମୋତେ ବନ୍ଧାଇଲୁ । ୮୨ ।
ତୋତେ ଛାଡ଼ି ମୁଁ ଯିବି ନାହିଁ ॥ ମୋ ପିତା ବାଟ ଥିବ ଚାହିଁ । ୮୩ ।
ପ୍ରଭୁର ନୟନେ ଲୋତକ ॥ ସ୍ୱାମୀ ହେରଇ ଚନ୍ଦ୍ରମୁଖ । ୮୪ ।
ଲୋତକେ ଲୋତକ ମିଶିଲା ॥ ଉପତ ପ୍ରବାହ ବୋହିଲା । ୮୫ ।
ସ୍ୱାମୀ ଅଛନ୍ତି ପାଖେ ପାଖେ ॥ ସେବଇ ପ୍ରଭୁଙ୍କୁ ନିରେଖେ । ୮୬ ।

---

'ସେମାନଙ୍କର କାଳ ହୁଏ ନାହିଁ । ତୁ ଜଗନ୍ନାଥର ସେବକ, ମୁଁ ତୋର ସେବା କରିବା କଥା । ମାତ୍ର ବିପରୀତ କଥା ଯେ ମୁଁ ତୋ ହାତରୁ ସେବା ପାଇଲି । ଈଶ୍ୱର ହିଁ ମଙ୍ଗଳ ବିଷୟର ସର୍ବମୟ କର୍ତ୍ତା । ମୋତେ ତାଙ୍କ ଚରଣରେ ଆଶ୍ରୟ ଦେବାପାଇଁ ସେ ସ୍ୱର୍ଗପୁରକୁ ନେବେ କି ଅବା ! ହେ ସ୍ୱାମୀ— ତୁମେ ମୋର ପ୍ରାଣ ସ୍ୱରୂପ, ତୁମେ ଜ୍ଞାନୀ, ପଣ୍ଡିତ, ତତ୍ତ୍ୱବେତ୍ତା । ତୁମେ ମୋତେ କେବଳ ଭକ୍ତି ମାର୍ଗ ଶିଖାଇଲ ନୁହେଁ, ନିବିଡ଼ ସଖ୍ୟରେ ମୋତେ ବାନ୍ଧିରଖିଲ । ମୁଁ ଆଗେ ଚାଲିଗଲେ ମଧ୍ୟ ତୁମ ପିତାମାତାଙ୍କୁ ଅନାଇଁ ରହିଥିବ । ପ୍ରଭୁ ଓ ସ୍ୱାମୀ ଉଭୟଙ୍କ ଚକ୍ଷୁରେ ଲୋତକ । ସ୍ୱାମୀ ବରାବର ପାଖେ ପାଖେ ରହି ପ୍ରଭୁଙ୍କର ସେବା କରୁଥିଲେ । ସାଧ୍ୱୀ ନାରୀ ଯେପରି ଆପଣାର ପ୍ରାଣପ୍ରିୟ ପତିଙ୍କ ସେବା କରୁଥାଏ, ଜଗନ୍ନାଥ ଦାସ ମଧ୍ୟ ସେହିପରି ମନପ୍ରାଣ ଢାଳି ଶ୍ରୀଚୈତନ୍ୟଙ୍କର ସେବା କରୁଥିଲେ । ଅକ୍ଷୟ ତୃତୀୟା (ବୈଶାଖ ଶୁକ୍ଳ ତୃତୀୟା) ବ୍ରାହ୍ମ ମୁହୂର୍ତ୍ତରେ ପ୍ରଭୁଙ୍କ ପିଣ୍ଡରୁ ପ୍ରାଣବାୟୁ ଉଡ଼ିଗଲା ।

ସାଧ୍ୱୀ ନାରୀର ସ୍ୱବ ବନ୍ଧ ॥ ଯେବେ ତେଜନ୍ତି ପ୍ରାଣ ଦେହ । ୮୭ ।
ଦେହ ତପତ ନ ଶୀତଳ ॥ ସରବ ଅଙ୍ଗ ଫିକାଯାଇ । ୮୮ ।
ଅକ୍ଷୟ ତୃତୀୟା ପ୍ରବେଶ ॥ ଚନ୍ଦନ ଯାତ୍ର ଅବକାଶ । ୮୯ ।
ବ୍ରାହ୍ମ ମୁହୂର୍ତ୍ତି ଆସି ହେଲ ॥ ପ୍ରଭୁର ପିଣ୍ଡୁ ପ୍ରାଣ ଗଲ । ୯୦ ।
ଏକା ସେ ଜଗନ୍ନାଥ ଦାସ ॥ ମନ୍ଦିରେ ଅଛୁ ତାର ପାଶ । ୯୧ ।
ଉଚ୍ଚ ସ୍ୱରରେ କାନ୍ଦୁଥାଇ ॥ ହେ ପ୍ରଭୁ କେଣେ ଗଲ ରହି । ୯୨ ।
ନୟନୁ ଝରଇ ଲୋତକ ॥ ଚନ୍ଦ୍ରାଭ ପ୍ରଭୁର ଶ୍ରୀଅଙ୍ଗ । ୯୩ ।
ଶବଟି କଲେ ଶୁଆଇଛୁ ॥ କାନ୍ଦୁଛି ହୋଇଣ କର୍ମାଖି । ୯୪ ।
ଡାକ ଶୁଣିଣ ଶବ ଦେଲା ॥ ଚନ୍ଦନ ସେ ଉକଲା । ୯୫ ।
ପ୍ରଭାତ ଅବକାଶ ବେଳ ॥ ମନ୍ଦିର ଅଛଇ ଜଣ୍ଡଳ । ୯୬ ।
ସେବକ ଜଣ ଦୁଇ ଏକ ॥ ମନ୍ଦିରେ ହେଲେ ଉପଗତ । ୯୭ ।
ସ୍ୱାମୀ ବୋଇଲା ବେଗେ ଯାଅ ॥ ରାମ ରାୟରେ ଜଣାଅ । ୯୮ ।
ଆସୁ ସେ ଏଥେ ଅଚଳମ୍ଭେ ॥ ଝପଟ ଯାଅ ଏବେ ତୁମ୍ଭେ । ୯୯ ।
ସନ୍ଦେଶ ପାଇ ରାମ ରାୟ ॥ ତକ୍ଷଣେ ମିଳ ଦେବାଳୟ । ୧୦୦ ।

---

୯୧-୧୧୧ ଶ୍ରୀମନ୍ଦିର ଭିତରେ ଶ୍ରୀଚୈତନ୍ୟ ଶେଷ ନିଶ୍ୱାସ ତ୍ୟାଗକଲେ । ମନ୍ଦିର ଭିତରେ ଜଗନ୍ନାଥ ଦାସ, ଶ୍ରୀଚୈତନ୍ୟ ମଲା ପର୍ଯ୍ୟନ୍ତ ତାଙ୍କ ପାଖରେ ଥିଲେ । ଶ୍ରୀଚୈତନ୍ୟଙ୍କ ପ୍ରାଣବାୟୁ ଉଡ଼ିଯିବା ପରେ ଜଗନ୍ନାଥ ଦାସ ମନ୍ଦିର ଭିତରେ ଶବକୁ ଧରି ଉଚ୍ଚ ସ୍ୱରରେ କାନ୍ଦୁଥିଲେ । ବୈଶାଖ ଅକ୍ଷୟ ତୃତୀୟାର ବ୍ରାହ୍ମ ମୁହୂର୍ତ୍ତ ଅର୍ଥ ଶେଷର ଘଣ୍ଟା ହେଲ ହେବ । ପ୍ରାୟ ପାଞ୍ଚଟା ବେଳେ ଘଣ୍ଟାଘଣ୍ଟେ ଉତ୍କୂଳ ବାଜିଲ ଓ ଡାକ ଶବ ଶୁଣାଗଲା । ଜଣେ ଦୁଇଜଣ ସେବକ ମନ୍ଦିରରେ ଉପସ୍ଥିତ ହେବାରୁ ଜଗନ୍ନାଥ ଦାସ ସେମାନଙ୍କୁ ପଠାଇଲେ ଶୀଘ୍ର ଯାଇ ରାୟ ରାମାନନ୍ଦଙ୍କୁ ଡାକିବା ପାଇଁ । ସଙ୍ଗେ ସଙ୍ଗେ ରାମ ରାୟ ମନ୍ଦିରରେ ପହଞ୍ଚିଲେ । ପ୍ରଭୁର ମୃତ୍ୟୁ ହୋଇଥିବା ଜାଣି ସେ ସ୍ତମ୍ଭୀଭୂତ ହେଲେ । ଚକ୍ଷୁର ଲୋତକ ରୋକିଲେ । ପ୍ରଭୁର ଶରୀର ଆଉଁସିଲେ ପିଣ୍ଡରେ ପ୍ରାଣ ନ ଥିଲା । ପ୍ରକୃତରେ ପ୍ରଭୁର ମୃତ୍ୟୁ ହୋଇଥିବା ଜାଣି ସେ ସଙ୍ଗେ ସଙ୍ଗେ ସେବକଙ୍କୁ ଡକାଇ ଆଦେଶ ଦେଲେ—ଆଜି ମନ୍ଦିର ଦ୍ୱାରମାନ ବନ୍ଦ ରହିବ; ଦେବଦର୍ଶନ ସମ୍ପନ୍ନ ହେବନାହିଁ । ସେହି ଆଦେଶ ବଳରେ ମନ୍ଦିର ଦୁଆର ସବୁ ସଙ୍ଗେ ସଙ୍ଗେ ବନ୍ଦ କରାଦିଆଗଲା । ଯାତ୍ରୀ ତ ଦୂରର କଥା ସେବକମାନେ ମଧ୍ୟ ମନ୍ଦିର ଭିତରକୁ ପ୍ରବେଶ କରିବାର ସୁବିଧା ପାଇଲେନାହିଁ । ରାମ ରାୟ ଜଣେ ଅଶ୍ୱାରୋହୀଙ୍କୁ ଡକାଇ ତା ଦ୍ୱାରା ଗଜପତିଙ୍କ ନିକଟକୁ ବାର୍ତ୍ତା ପ୍ରେରଣ କଲେ । ଦୈବରେ ଗଜପତି ପୂର୍ବ ଅଭିମୁଖେ ଚନ୍ଦନ ଯାତ୍ରା ଲାଗି କଟକରୁ ବାହାରି ଆସୁଥିଲେ । ବାଟରେ

ଦୁର୍ଦ୍ଦଶା ଦେଖିଣ ପ୍ରଭୁର ॥ ଷଣେ ହୋଇଲ ସୁଗମ୍ଭୀର ।୧୦୧।
ନୟନୁ ଝରଇ ଲୋତକ ॥ ଶବକୁ କଲ କୋଳାଗତ ।୧୦୨।
ପ୍ରଭୁର ମୁଖ ଅଉଷିଲ ॥ ସର୍ବାଙ୍ଗେ କର ବୁଲାଇଲ ।୧୦୩।
ନାହିଁକି ଆଉ ପ୍ରଭୁ ବୋଲ ॥ ଶବ ଗ୍ରୁଞ୍ଜଣ ଧଠିପଡ଼ା ।୧୦୪।
କଣ୍ଠେ ଯେବକେ ହୁକାର ॥ ଆଦେଶ ଦେଲଟି ଈଶ୍ୱର ।୧୦୫।
ଅଜ ଦୁଆର କଲା ହେବ ॥ ଦେବତା ଜାଣ ନ ଚଳିବ ।୧୦୬।
ହୁକାର ଅଶ୍ୱାରୋହୀ ଜଣେ ॥ ଚିଠାଉ ପ୍ରେଣିଲ ତକ୍ଷଣେ ।୧୦୭।
ଯୋଗରେ ଅକ୍ଷୟ ତୃତୀୟା ॥ ଚନ୍ଦନ ଯାତ୍ରା ଚଳୁଥିଆ ।୧୦୮।
ଗଜପତି ସେ ରୁଦ୍ରଦେବ ॥ ଥିଲେ ଦର୍ଶନକୁ ସମ୍ମତ ।୧୦୯।
ବାଟରେ ଭେଟି ଅଶ୍ୱାରୋହୀ ॥ ଚିଠାଉ ପଢ଼ିଲ ଫିଟାଇ ।୧୧୦।
ଦୁଃଖେଣ ମୁଖ ବିଷାଦିତ ॥ ଗୁଣପ୍ରହର ବେଳ ହେବ ।୧୧୧।
ରାମ ରାୟ ସେ ଜଣାଇଲେ ॥ ପ୍ରଭୁଙ୍କୁ କି କରିବା ବୋଲେ ।୧୧୨।
ଗଜପତି ସେ ଦୁଃଖୀଭୂତ ॥ କଥା ନ ଫୁରେ ମୁଖୁ ସତ ।୧୧୩।
ରାମ ରାୟ ସେ ବୋଲେ ଶୁଣ ॥ ଏ ଶବ ନେଲେ ଅକାରଣ ।୧୧୪।
ଗୌଡ଼ୀୟା କଦର୍ଥ କରିବେ ॥ ମ୍ଲେଚ୍ଛ ରାଜାରେ ଖତ ବୋଲିବେ ୧୧୫ ।
ଲାଗିବ କନ୍ଦୋଳ ବହୁତ , ॥ ଶୂନ୍ୟ କଥାକୁ ମିଛ ସତ ।୧୧୬।
ଯୋଡ଼ିବେ ଅନେକ ବାରତା ॥ ଶେଷେ ପାଇବୁ ଅପଯଶା ।୧୧୭।

---

ଅଶ୍ୱାରୋହୀଠାରୁ ଚିଠି ପାଇ ଗୁଣପ୍ରହର ସମୟକୁ ପୁରୀରେ ଆସି ଉପସ୍ଥିତ ହେଲେ । ଚୈତନ୍ୟଙ୍କ ମୃତ୍ୟୁ ବିଷୟ ଜାଣିଲା ପରେ ଗଜପତି ଘୋର ଦୁଃଖିତ ହେଲେ—ରାମ ରାୟ ତାଙ୍କୁ ସବୁକଥା କହିଲେ । ମାତ୍ର ଅସଲ ସମସ୍ୟା ହେଲା, ପ୍ରଭୁ ତ ମନ୍ଦିର ଭିତରେ ମଲେ, ତାଙ୍କ ଶବକୁ ବର୍ତ୍ତମାନ କିପରି ବାହାର କରାଯିବ ? ରାମରାୟ ଗଜପତିଙ୍କ ସହିତ ଏ ବିଷୟରେ ପରାମର୍ଶ କଲେ । ମାତ୍ର ଗଜପତି ସ୍ତମ୍ଭୀଭୂତ, ବିଷାଦରେ କ୍ଳାନ୍ତ ହୋଇ ନିର୍ବାକ୍ ଅବସ୍ଥାରେ ରହିଲେ । ରାମ ରାୟ ପରାମର୍ଶ ଦେଲେ—ଏ ଶବ ମନ୍ଦିର ବାହାରକୁ ନେବା ଦ୍ୱାରା କିଛି ଭଲ ଫଳ ହେବନାହିଁ—ତେଣୁ ଦେଉଳ ବାହାରକୁ ନେବାର ଆବଶ୍ୟକତା ନାହିଁ । ଏହାର କାରଣ ହେଲା—ଗୌଡ଼ୀୟ ଭକ୍ତମାନେ କଦର୍ଥ କରିବେ ଏବଂ ଗୌଡ଼ର ମ୍ଲେଚ୍ଛ ରାଜା ଆଗରେ ନାନା ଧରଣର ମିଥ୍ୟା ଅପବାଦ ଦେବେ । ଏଥିରୁ ବହୁତ କନ୍ଦଳ ବା ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହୋଇପାରେ । ସତ ଭଲ ଅନେକ ଖତ ମିଛ କଥା ସେମାନେ ଯୋଡ଼ିତୋଡ଼ି କହିବେ । ଶେଷରେ ଗଜପତି ରାଜାଙ୍କର ନିନ୍ଦା ହେବ । ମନ୍ଦିରରେ ପ୍ରଭୁଙ୍କର ମୃତ୍ୟୁ ହୋଇଛି—ତେଣୁ ମନ୍ଦିର ଭିତରେ ଶବକୁ ପୋତାଇଦେବା ଯଥାର୍ଥ ହେବ ।

ମନ୍ଦିରେ ମାଗିଗଲେ ପ୍ରଭୁ ॥ ଏହାଙ୍କୁ ଏଥେ ପୋତାଇବୁ । ୧୧୮ ।
ମହିମା ରଥ ଯାତ ବେଳେ ॥ ପ୍ରଭୁ ବୋଲିଛ ଯାତ୍ରୀ ମେଳେ । ୧୧୯ ।
ଏ ପ୍ରଭୁ ସେ ପ୍ରଭୁରେ ଲୀନ ॥ ହେଲେ ବୋଲିବାଟି କାରଣ । ୧୨୦ ।
ଶବ ପୋତାଇବା ଗୁପତେ ॥ କୋଇଲି ବୈକୁଣ୍ଠ ପୁରତେ । ୧୨୧ ।
ଜଗନ୍ନାଥ ଜୀର୍ଣ୍ଣ ବିଗ୍ରହ ॥ ପୋତାହେଲଠାକୁ ଏ ନଅ । ୧୨୨ ।
ଗଜପତି ସେ ଅଧୋମୁଖେ ॥ ସମ୍ମତ ହେଲେକ ଗୁପତେ । ୧୨୩ ।
କୋଇଲି ବୈକୁଣ୍ଠେ ଶବ ନେଇ ॥ ପୋତାଇଲେ ଗାତ ଖୋଳାଇ । ୧୨୪ ।
ରାମ ରାୟ ସେ ସ୍ୱାମୀ ପାଦ ॥ ଆଉ ସେବକ ଦୁଇ ଏତ । ୧୨୫ ।
ଏହା ନ ଜାଣେ ଆନ କେହୁ ॥ ପଡ଼ିଲା ଦୁଆର ଫିଟଇ । ୧୨୬ ।
ସଫାର ପାଇଁ ଅଦେଶିଲା ॥ ମନ୍ଦିର ସବୁ ଧୂଆଇଲା । ୧୨୭ ।
କର୍ପୂର ଚନ୍ଦନ ଅଗୁରୁ ॥ ସେବକେ ସିଞ୍ଚିଲେ ଭିତରୁ । ୧୨୮ ।

---

ହେ ମହିମା ! ତୁମେ ଆଗରୁ ରଥଯାତ୍ରା ବେଳେ ଯାତ୍ରୀମାନଙ୍କ ସମ୍ମୁଖରେ ଶ୍ରୀଚୈତନ୍ୟଙ୍କୁ 'ପ୍ରଭୁ' ବୋଲି ଘୋଷଣା କରିଅଛ । ସେ ଦିନରୁ ଲୋକେ ଶ୍ରୀଚୈତନ୍ୟଙ୍କୁ ସାମାନ୍ୟ ମନୁଷ୍ୟ ଜ୍ଞାନ କରନ୍ତିନାହିଁ— ଲୋକ ଦୃଷ୍ଟିରେ ସେ ଦେବତା ବା 'ପ୍ରଭୁ' । ଅତଏବ ଏ ପ୍ରଭୁ (ଶ୍ରୀଚୈତନ୍ୟ) ସେ ପ୍ରଭୁରେ (ଶ୍ରୀ ଜଗନ୍ନାଥଙ୍କ ବିଗ୍ରହରେ) ଲୀନ ହୋଇଗଲେ ବୋଲି କହିବା ଉଚିତ ଏବଂ ଯଥାର୍ଥ ହେବ ।

ନବକଳେବର ବେଳେ ଜଗନ୍ନାଥଙ୍କ ଜୀର୍ଣ୍ଣ ବିଗ୍ରହମାନ କୋଇଲି ବୈକୁଣ୍ଠରେ ଗାତଖୋଳି ପୋତାଯାଏ । ଶ୍ରୀଚୈତନ୍ୟଙ୍କ ମରଶରୀରକୁ ମଧ୍ୟ କୋଇଲି ବୈକୁଣ୍ଠରେ ପୋତାଇବାକୁ ହେବ । ଗଜପତି ଏ ପ୍ରସ୍ତାବରେ ସମ୍ମତ ହେବାରୁ ସଙ୍ଗେ ସଙ୍ଗେ ତତ୍ପର କାର୍ଯ୍ୟାନୁଷ୍ଠାନ କରାଗଲା । ରାମ ରାୟ ସ୍ୱାମୀ ଜଗନ୍ନାଥ ଦାସ, ସ୍ୱୟଂ ଗଜପତି ଓ ଆଉ ଜଣେ ଦୁଇଜଣ ସେବକ ବ୍ୟତୀତ ଏ ଘଟଣା ଆଉ କେହି ଜାଣିଲେନାହିଁ (ଏହି ଜଣେ ଦୁଇଜଣ ଭିତରେ ମାଧବ ପଟ୍ଟନାୟକ ଅନ୍ତର୍ଭୁକ୍ତ ଥାଇପାରନ୍ତି) । ପ୍ରକୃତ ଘଟଣାକୁ ଗୋପନୀୟ ରଖାଗଲା ଏବଂ ଶବ ପୋତାଇ ଦିଆଯିବା ପରେ ପ୍ରଭୁ ଶ୍ରୀଚୈତନ୍ୟ ଅନ୍ତର୍ଦ୍ଧାନ ହେଲେ— ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଲୀନ ହେଲେ ବୋଲି କହିବାର ସୁବିଧା ହେଲା । ଏହାର ମଧ୍ୟ ସେତେବେଳେ ଆବଶ୍ୟକତା ଥିଲା । ଏ ଘଟଣା କେହି ଜାଣିଲେନାହିଁ— ବନ୍ଦ ହୋଇଥିବା କବାଟମାନ ପୁଣି ଫିଟିଲା । ସେବକମାନେ ବ୍ୟସ୍ତ ହୋଇ ମନ୍ଦିର ଚଟାଣ ଧୂଆଇଲେ— ଭିତରେ କର୍ପୂର-ଚନ୍ଦନ-ଅଗୁରୁ ମିଶ୍ରିତ ଜଳ ସିଞ୍ଚିଲେ । ଏହାପରେ ମନ୍ଦିର ସଫାର କରାଗଲା ଓ ଚନ୍ଦନ ଯାତ୍ରା ପାଇଁ ଆୟୋଜନ କରାଗଲା ।

ତେତେବେଳେ ଚନ୍ଦନ ଲଗି || ଯାତ୍ରା ଆରମ୍ଭ ହେବାଦେଖି | ୧୨୯ |
ଭକତେ ଆସି ଠୁଳ ହେଲେ || ମାର୍କଣ୍ଡ ବୋଲି ଚଳିଗଲେ | ୧୩୦ |
ଯାତ୍ରା ଉତ୍ସବେଣ ବିଷାଦ || କାହା ମୁଖେ ନାହିଁ ହରଷ | ୧୩୧ |
ପ୍ରଭୁର ଅନ୍ତର୍ଦ୍ଧାନ ବାର୍ତ୍ତା || ପାଇଣ ସର୍ବେ କାତରତା | ୧୩୨ |
ଜଗନ୍ନାଥ ଅଙ୍ଗେ ମିଶିଲେ || ବିଜୁଳି ମେଘେ ଲୁଚିଗଲା | ୧୩୩ |
ଏକୁ ଅତିରେକ ମୂର୍ଖ ହେଲ || ପ୍ରଭୁ କଥାକୁ ହେଲେ ଭୁଲ | ୧୩୪ |
ସକଳେ ହେଲେ ଦୁଃଖମନା || ପ୍ରଭୁର ଗୁଣ ସୁମରଣା | ୧୩୫ |
ପ୍ରଭୁ ସାକ୍ଷାତେ ଭଗବାନ || ନୃତ୍ୟ କଳାକୁ ହେଲ ଜନ୍ମ | ୧୩୬ |
ଏବେ ହୋ ଶ୍ରୀଅଙ୍ଗେ ମିଶିଲେ || ଶୁଣ ସରବେ ଭାବଲୀଳା | ୧୩୭ |
କାନ୍ଦିଲେ ଅଚ୍ୟୁତ କହ୍ନାଇ || ଯଶୋବନ୍ତ ସେ ଅନନ୍ତାଇ | ୧୩୮ |
ସରବ ଶୁଣି ହେଲେ ଦୁଃଖୀ || ସ୍ୱାମୀଙ୍କୁ କୋଳାଇ କାନ୍ଦଇ | ୧୩୯ |
ଅଚ୍ୟୁତ ବୋଲଇ ସ୍ୱାମୀଙ୍କୁ || ତୁ କପାଁ ପ୍ରଭୁଙ୍କୁ ଛାଡ଼ିଲୁ | ୧୪୦ |
ଆମ୍ଭନ୍ତ ଦେଖି ନ ପାଇଲୁ || ତୁ କପାଁ ବାନ୍ଧି ନ ରଖିଲୁ | ୧୪୧ |
ଯଶୋବନ୍ତ ବୋଲେ ଏ କଥା || ବାଳୁତ ବୋଲେ କିବା କଥା | ୧୪୨ |

---

୧୩୦-୧୩୭ ଚନ୍ଦନ ଯାତ୍ରା ଲଗି ଭକ୍ତମାନେ ଜୁଟି ହେଲେ । ମାର୍କଣ୍ଡ ପର୍ଯ୍ୟନ୍ତ ଯାତ୍ରୀମାନେ ଗଲେ । ମାତ୍ର ଯାତ୍ରାର ସେ ଆନନ୍ଦ ଉତ୍ସବ ଉଲ୍ଲାସ ଦେଖାଗଲା ନାହିଁ । ସମସ୍ତଙ୍କ ମନରେ ବିଷାଦ ଭାବ । ପ୍ରଭୁର ଅନ୍ତର୍ଦ୍ଧାନ ବାର୍ତ୍ତାରେ ସମସ୍ତେ ଦୁଃଖିତ—ବିଜୁଳି ମେଘରେ ଲୁଚିଗଲା ପରି ଶ୍ରୀଚୈତନ୍ୟ ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ମିଶିଗଲେ ବୋଲି ସମସ୍ତେ କୁହାକୁହି ହେଉଥାନ୍ତି । ପ୍ରଭୁର ହାବଭାବ, ନୃତ୍ୟ ଓ ସକଳ ସଦ୍‌ଗୁଣ ଲୋକେ ସ୍ମରଣ କରୁଥାନ୍ତି । ପ୍ରଭୁ ଶ୍ରୀଚୈତନ୍ୟ ଏକାଦିକ୍ରମେ ଦୀର୍ଘ ଅଠର ବର୍ଷକାଳ ପୁରୀରେ ଥିଲେ । ଲୋକେ ତାଙ୍କୁ ଅତି ଆନ୍ତରିକ ଭାବରେ ଖୁବ୍ ପାଖରୁ ଜାଣିଥିଲେ । ତେଣୁ ଏପରି ଶୋକୋଚ୍ଛ୍ୱାସ ଓ ବିଷାଦଭାବ ପୁରୀରେ ସୃଷ୍ଟି ହୋଇଥିବା ସ୍ୱାଭାବିକ ।

୧୩୮ ୧୪୩ ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, କହ୍ନାଇ ଖୁଣ୍ଟିଆ ପ୍ରମୁଖ ଚୈତନ୍ୟଙ୍କ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କଲେ । ସ୍ୱାମୀ ଜଗନ୍ନାଥ ଦାସଙ୍କୁ କୁଣ୍ଢାଇ ସେମାନେ କାନ୍ଦିଲେ । ଅଚ୍ୟୁତ କହିଲେ—ତୁମେ କାହିଁକି ପ୍ରଭୁଙ୍କୁ ଛାଡ଼ିଦେଲ । କାହିଁକି ବାନ୍ଧି ନ ରଖିଲ । ଆମ୍ଭେ କେହି ଦେଖିବାକୁ ପାଇଲୁନାହିଁ । ଯଶୋବନ୍ତ ବିଜ୍ଞତା ପ୍ରକାଶ କରି ଅଚ୍ୟୁତଙ୍କ ଆଚରଣକୁ ବାଳୋଚିତ ବୋଲି କହିଲେ । ଅନନ୍ତ ସର୍ବଦା ଶିଶୁ ସୁଲଭ ହାବଭାବମାନ ପ୍ରକାଶ କରୁଥିଲେ । ତେଣୁ ଶିଶୁଭଳି ସେ କେବଳ କାନ୍ଦିବାରେ ଲାଗିଲେ । ସମସ୍ତେ ପ୍ରଭୁଙ୍କ ଗୁଣାବଳୀକୁ ରାତି ଦିବସ ସ୍ମରଣ କଲେ ।

ଶିଶୁ ଅନନ୍ତ ନ ଜାଣଇ ॥ ବାଳୁତ ସଙ୍ଗ ଏ କାରଣ ।୧୪୩।
ସରବେ ପ୍ରଭୁର ଚରିତ ॥ ଶୁଣିଲେ ହବାଗ୍ରହ ସତ ।୧୪୪।
ଗୌଡ଼ିଆ ଭକ୍ତେ ଆସି ହେଲେ ॥ ରଥରେ ନୃପ ସଂଘୋଷିଲେ ।୧୪୫।
ଗୌଡ଼ିଆ ସର୍ବେ ଚଳିଗଲେ ॥ ନଗ୍ରକୁ ଯାଇ ସେ କହିଲେ ।୧୪୬।
ପ୍ରଭୁ ର ପ୍ରୟାଣ ବାରତା ॥ ରଥକୁ ଜାଣିଲେ ସମେତା ।୧୪୭।
ପ୍ରଭୁଙ୍କୁ ନ ପାଇ ରଥରେ ॥ ରଜା ସେ ବହୁ ଦୁଃଖ କଲେ ।୧୪୮।
ସ୍ୱର୍ଣ୍ଣ ସମାର୍ଜନୀ ପଡ଼ିଲା ॥ ରଜାର ହାଥୁଁ ଏ ନ ଥିଲା ।୧୪୯।
ରଥଯାତ୍ରାର ଅବକାଶେ ॥ ଜାଣିଲେ ଏ ବାର୍ତ୍ତା ଲୋକେ ।୧୫୦।
ଭାଦ୍ରବ ମାସ କୃଷ୍ଣାଷ୍ଟମୀ ॥ କୃଷ୍ଣ ଜନ୍ମ ଉତ୍ସବ ଜାଣି ।୧୫୧।

---

୧୪୪-୧୪୯ ଆଷାଢ଼ ଶୁକ୍ଳ ଦ୍ୱିତୀୟାର ରଥଯାତ୍ରା ଆସି ପହଞ୍ଚିଲା । ରଥକୁ ଗୌଡ଼ୀୟ ଭକ୍ତମାନେ ପ୍ରତିବର୍ଷ ଆସି ପହଞ୍ଚନ୍ତି – ଏ ବର୍ଷ ମଧ୍ୟ ଉପସ୍ଥିତ ହେଲେ । ଗୌଡ଼ୀୟ ଭକ୍ତମାନଙ୍କ ଉଦ୍ଦେଶ୍ୟରେ ଗଜପତି ରଥ ଉପରୁ ଚୈତନ୍ୟଙ୍କ ପ୍ରୟାଣ ବାର୍ତ୍ତା ଘୋଷଣା କଲେ । ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଶ୍ରୀଚୈତନ୍ୟ ଲୀନ ହେବା ବିଷୟ ଘୋଷିତ ହେଲା । ଏହି ରାଜକୀୟ ଘୋଷଣା ରଥଯାତ୍ରା ବେଳେ ପ୍ରଚାରିତ ହେବାରୁ ବାହାରୁ ଆସିଥିବା ଗୌଡ଼ୀୟ ଭକ୍ତମାନେ ରଥଯାତ୍ରା ବେଳେ ଆଷାଢ଼ ଶୁକ୍ଳ ସପ୍ତମୀ ତିଥିରେ ଚୈତନ୍ୟ ଅନ୍ତର୍ଦ୍ଧାନ ହୋଇଥିବା ବିଷୟ ଗୌଡ଼ରେ ପ୍ରଚାର କରିଥିବା ଅସମ୍ଭବ ନୁହେଁ । ମାତ୍ର ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଶ୍ରୀଚୈତନ୍ୟ ବୈଶାଖ ଶୁକ୍ଳ ଅକ୍ଷୟତୃତୀୟାର ବ୍ରାହ୍ମ ମୂହୂର୍ତ୍ତରେ ଶ୍ରୀମନ୍ଦିର ଭିତରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ତାଙ୍କ ଶବକୁ କୋଇଲି ବୈକୁଣ୍ଠରେ ପୋତାଗଲା ଓ ଭକ୍ତଙ୍କ ଉଦ୍ଦେଶ୍ୟରେ ପ୍ରଚାର କରାଗଲା ଯେ ଚୈତନ୍ୟ 'ଜଗନ୍ନାଥଙ୍କ ଅଙ୍ଗରେ ଲୀନ ହୋଇଗଲେ । ଚୈତନ୍ୟଙ୍କ ମୃତ୍ୟୁ ସମ୍ପର୍କରେ ଏପରି ଅଲୌକିକ ବିଷୟ ପ୍ରକାଶ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ରାୟ ରାମାନନ୍ଦ । ଏହା ଦ୍ୱାରା ଚୈତନ୍ୟଙ୍କ ଭଗବତ୍ତା ସ୍ୱୀକୃତି ପାଇବା ସମ୍ଭବ ହେଲା ଓ ରାମାନନ୍ଦ ପ୍ରତିପାଦିତ ରାଗାନୁଗା ପ୍ରେମଭକ୍ତି ପ୍ରତି ଜନସମର୍ଥନକୁ ଦୃଢ଼ କରାଯାଇପାରିଲା । ରାଗାନୁଗା ପ୍ରେମମାର୍ଗୀ ଭକ୍ତ ଗୋଷ୍ଠୀର ନୈତିକ ଶକ୍ତିକୁ ଏହାଦ୍ୱାରା ସୁଦୃଢ଼ କରାଯାଇପାରିଲା । ରାମ ରାୟ ହିଁ ଏହାର ସୂତ୍ରଧାର ।

୧୫୧-୧୬୪ ରଥଯାତ୍ରାର ଅଲ୍ପଦିନ ପରେ ଭାଦ୍ରବ କୃଷ୍ଣାଷ୍ଟମୀ । ରାୟ ରାମାନନ୍ଦ ଓ ଅନ୍ୟମାନେ ହରିବାସର ଉପବାସୀ । ଯେହେତୁ ଚୈତନ୍ୟ ନ ଥିଲେ, କୀର୍ତ୍ତନ ନୃତ୍ୟ ନ ଥିଲା । ସନ୍ଧ୍ୟାରେ ରାୟ ଉତ୍ତର ପାର୍ଶ୍ୱ ମଣ୍ଡପରେ ଇଷ୍ଟଗୋଷ୍ଠୀ ବସୁଥିବା ସ୍ଥାନରେ ବସିଲେ । ଚୈତନ୍ୟଙ୍କ ଅନୁପସ୍ଥିତି ଯେ

| | | |
|---|---|---|
| ନ ହେଲା କୀର୍ତ୍ତନ ଉଲ୍ଲାସ ‖ | ସକଳ ମନରେ ବିରସ । | ୧୫୨ । |
| ମଣ୍ଡପ ଉତ୍ତର ପାର୍ଶ୍ୱରେ ‖ | ରାମ ରାୟ ଯେ ଆସି ବସେ । | ୧୫୩ । |
| ପ୍ରଭୁଙ୍କ ଭାବ ଯେ ସୁମରି ‖ | ନୟନୁ ଲୋତକ ଝରଇ । | ୧୫୪ । |
| ସ୍ୱାମୀ ସଙ୍ଗତେ କଥା ରଙ୍ଗେ ‖ | ସୁମରି କୀର୍ତ୍ତନ ପ୍ରସଙ୍ଗେ । | ୧୫୫ । |
| ସ୍ୱାମୀ ବୋଇଲେ ନ ଆସିବ ‖ | ସମୁଦ୍ର କୂଳେଣ ରହିବ । | ୧୫୬ । |
| ଅଚ୍ୟୁତ ଗଲେ ନେମ୍ପାଳକୁ ‖ | ଅନନ୍ତ ଗଲେ ସ୍ୱସ୍ଥାନକୁ । | ୧୫୭ । |
| ସେହିଦିନ ସାୟଂକାଳ ବେଳେ ‖ | ରାମ ରାୟ ଯେ ସ୍ୱର୍ଗ ଗଲେ । | ୧୫୮ । |
| ପିଣ୍ଡରୁ ପ୍ରାଣ ଗଲାବେଳେ ‖ | ହା କୃଷ୍ଣ ସେହୁ ଉଚ୍ଚାରିଲେ । | ୧୫୯ । |
| ଶେଷେ ସେ ପଡ଼ିଲା ଚହଳ ‖ | ମିଳିଲେ ଲୋକ ଯେ ସକଳ । | ୧୬୦ । |
| ସକଳ ମୁଖେ ହରିନାମ ‖ | ସତ୍ୟ ବୋଲଇ ରାମ ନାମ । | ୧୬୧ । |
| ପ୍ରାଣୀର ଭଲ ମନ୍ଦ ବାଣୀ ‖ | ମନ୍ତ୍ରେ ବୋଲେ ତାହା ଜାଣି । | ୧୬୨ । |
| କହନ୍ତି ଜଗନ୍ନାଥ ଦାସ ‖ | ଅଟଇ ସେ ସିଦ୍ଧ ପୁରୁଷ । | ୧୬୩ । |
| ଏ ଉତ୍ତୁଁ ଆନ ନ ହେବାର ‖ | କହଇ ମାଧବ ଯେ ଛାର । | ୧୬୪ । |

ଇତି ବୈଷ୍ଣବ ଲୀଳାମୃତ ସମ୍ପୂର୍ଣ୍ଣ ।
ଏଥେ ବାକିତା ଅଛଇ ବିଶେଷ ।
ଲେଖକକାରର ନ ଧରିବ ଦୋଷ ।

---

ବିଶେଷ ଅନୁଭବ କଲେ; ଆଖିରୁ ତାଙ୍କର ଲୋତକ ଝରିଗଲା । ହା କୃଷ୍ଣ ଉଚ୍ଚାରଣ କରୁ କରୁ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ଏହାପରେ ସ୍ୱାମୀ ଜଗନ୍ନାଥ ଦାସ ଆଉ ମନ୍ଦିରକୁ ଆସିଲେନାହିଁ—ସମୁଦ୍ରକୂଳରେ ପୀଠ କରି ରହିଲେ । ଅଚ୍ୟୁତ ନେମ୍ପାଳକୁ ଚାଲିଗଲେ । ଅନନ୍ତ ସ୍ୱସ୍ଥାନକୁ ଚାଲିଗଲେ । ଶ୍ରୀଚୈତନ୍ୟ ଓ ପଞ୍ଚସଖାଗୋଷ୍ଠୀ ଏହିଭଳି ଭାବରେ ଭାଙ୍ଗିଗଲା ।





'କ' ପୋଥିର ପ୍ରଥମ ଦୁଇ ପତ୍ର । ଗ୍ରନ୍ଥାରମ୍ଭ—ଶ୍ରୀଜଗନ୍ନାଥ ସ୍ତୁତି ।



'ଜ' ପୋଥି— ନବମ ଅଧ୍ୟାୟ । ଏଠାରେ ଶ୍ରୀଚୈତନ୍ୟଙ୍କ ତିରୋଧାନ ପ୍ରସଙ୍ଗ ବର୍ଣ୍ଣିତ ।



**'ଖ'** ପୋଥିର ଦୁଇଟି **ପତ୍ର** । ସ୍ୱାମୀ ଜଗନ୍ନାଥ ଦାସଙ୍କ ରଚନା ବୋଲି ଦାବୀ କରୁଥିବା **'ଶିକ୍ଷାଷ୍ଟକ'**ର କିୟଦଂଶ ଏଠାରେ ଲିପିବଦ୍ଧ ।



**'ଗ'** ପୋଥିର ଦୁଇଟି ପତ୍ର । ଗୀତ ଗୋବିନ୍ଦର କବି ଶ୍ରୀ ଜୟଦେବଙ୍କ ସମ୍ପର୍କୀୟ ବିବରଣୀ । କବିଙ୍କ ଜନ୍ମସ୍ଥାନ ଓ ଶ୍ରୀ ଜଗନ୍ନାଥଙ୍କ ସମ୍ମୁଖରେ ଗୀତ ଗୋବିନ୍ଦ ରଚନା ଓ ଗାନ, ଶ୍ରୀ ମନ୍ଦିରରେ ଗୀତ ଗୋବିନ୍ଦଗାନକୁ ଏକ ସେବା ରୂପେ ପ୍ରଚଳନ କରିବା ଓ ଏଥିପାଇଁ ନାଚୁଣୀ ମାହାରୀମାନଙ୍କୁ ନିଯୁକ୍ତ ଦେବ ବୋଧହୁଏ ରାଜରାଜ ଦେବା ବା ଚୋଡଗଙ୍ଗ ଦେବଙ୍କ କୀର୍ତ୍ତି । ତାହା ଏଠାରେ ସ୍ପଷ୍ଟ ନୁହେଁ । ତେବେ କେନ୍ଦୁଲି ଗାଡ଼ୀ ଯୋଗାଇବା ପର୍ଯ୍ୟନ୍ତ ଏଠାରେ ବର୍ଣ୍ଣିତ ।